# ଭାରତରେ ଜାତିପ୍ରଥା

## ଉତ୍ପତ୍ତି ଓ ସ୍ୱରୂପ



ମୂଳ ଲେଖା

ଡ. ଭୀମରାଓ ଆମ୍ବେଦକର

ଅନୁବାଦ

ଧନେଶ୍ୱର ସାହୁ

# ଭାରତରେ ଜାତିପ୍ରଥା : ଉତ୍ପତ୍ତି ଓ ସ୍ୱରୂପ

*ମୂଳଲେଖା :*
ଡକ୍ଟର ବାବାସାହେବ ଭୀମରାଓ ଆମ୍ବେଦକର

*ଅନୁବାଦ :*
ଧନେଶ୍ୱର ସାହୁ



ଚର୍ଚ୍ଚା ପ୍ରକାଶନ

# ଭାରତର ଜାତିପ୍ରଥା : ଉତ୍ପତ୍ତି ଓ ସ୍ୱରୂପ

ମୂଳଲେଖା : ଡକ୍ଟର ବାବାସାହେବ ଭୀମରାଓ ଆମ୍ବେଦକର
ଲେଖକ : ଧନେଶ୍ୱର ସାହୁ
ପ୍ରକାଶକ : ଦେବେନ୍ଦ୍ର ସୁତାର
ଚର୍ଚ୍ଚା ପ୍ରକାଶନ, ୨୫୧, ଖାରବେଳ ନଗର, ୟୁନିଟ୍ - ୩,
ଭୁବନେଶ୍ୱର -୧, ଓଡ଼ିଶା
ମୁଦ୍ରଣ : ଲକ୍ଷ୍ମୀ ଅଫ୍‌ସେଟ୍, ମଧୁପାଟଣା, କଟକ
ପ୍ରଥମ ସଂସ୍କରଣ : ୨୦୧୩
ମୂଲ୍ୟ : ଟ୧୫୦/-

---

**BHARATARE JATIPRATHA : UTPATTI O SWARUPA**

Author : **Dr. B.R. Ambedkar**
Translation By : **Dhaneswar Sahoo**
Publisher : **Debendra Sutar**
**Charcha Prakasan**
251, Kharavel Nagar, Unit - 3, Bhubaneswar -1
Printed By : Laxmi Offset, Madhupatana, Ctc
First Edition : 2013
Price : **150/-**
ISBN : 978-81-908500-4-9

# ସୂଚିପତ୍ର





# ଅନୁବାଦକଙ୍କ କଲମରୁ...

ଭାରତରତ୍ନ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର (୧୮୯୧-୧୯୫୬) ବାବା ସାହେବ ଭାବେ ପରିଚିତ । ଜଣେ ବିଖ୍ୟାତ ବୁଦ୍ଧିଜୀବୀ, ସମ୍ବିଧାନବିତ୍, ସମାଜସେବୀ, ମାନବିକ ଅଧିକାରର ପ୍ରବକ୍ତା ଓ ସାମାଜିକ ନ୍ୟାୟ ଆନ୍ଦୋଳନର ପୁରୋଧା ଭାବେ ସେ ବହୁ କ୍ଷେତ୍ରରେ ତାଙ୍କର ସ୍ୱାକ୍ଷର ରଖି ଯାଇଛନ୍ତି । ଭାରତରେ ନିଷ୍ପେଷିତ, ଦଳିତ ଓ ଶୂଦ୍ର ଜନଗଣଙ୍କର ମାନବିକ ଅଧିକାର, ଆତ୍ମ ମର୍ଯ୍ୟାଦା ଓ ସାମାଜିକ ନ୍ୟାୟ ପାଇଁ ସେ ଯେଉଁ ସଂଗ୍ରାମ କରିଛନ୍ତି ତାହା ଅନନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶ୍ୱ ଇତିହାସରେ ମାନବିକ ଅଧିକାର ପାଇଁ ସଂଗ୍ରାମ କରିଥିବା ଯଶସ୍ୱୀ କ୍ରାନ୍ତିକାରୀଙ୍କ ଭିତରେ ବାବାସାହେବ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ତାଙ୍କ ସଂଗ୍ରାମୀ ବ୍ୟକ୍ତିତ୍ୱ ସହିତ ସେ ଥିଲେ ଜଣେ ପ୍ରଜ୍ଞାଦୀପ୍ତ, ଜ୍ଞାନପିପାସୁ ସୃଜନଶୀଳ ସ୍ରଷ୍ଟା ।

ଏହି ପୁସ୍ତକଟିରେ ବାବାସାହେବଙ୍କର ଚାରୋଟି ଇଂରାଜୀ ପ୍ରବନ୍ଧର ଅନୁବାଦ ସ୍ଥାନିତ ହୋଇଛି । ଯେଉଁ ଚାରୋଟି ପ୍ରବନ୍ଧର ଏହା ସଂକଳନ ତାହା ହେଲା -

(୧) Castes in India (ଭାରତରେ ଜାତିପ୍ରଥା)

(୨) Annihilation of Caste (ଜାତିପ୍ରଥାର ବିଲୋପ)

(୩) Caste and Conversion (ଜାତି ଓ ଧର୍ମ ପରିବର୍ତ୍ତନ)

(୪) Majorities and Minorities(ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ)

ଏହି ଚାରୋଟି ପ୍ରବନ୍ଧ ମଧ୍ୟରୁ ଭାରତରେ ଜାତିପ୍ରଥା ପ୍ରବନ୍ଧଟି ୧୯୧୬ ମସିହାରେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟ ଦ୍ୱାରା ଆୟୋଜିତ ନୃତତ୍ତ୍ୱ ଆଲୋଚନା ଚକ୍ରରେ ବାବାସାହେବ ଉପସ୍ଥାପନ କରିଥିଲେ । ଜାତିବ୍ୟବସ୍ଥା କ'ଣ ଓ ଭାରତୀୟ ସମାଜରେ ଏହାର କିପରି ଉତ୍ପତ୍ତି ହେଲା ସେ ବିଷୟରେ ଏହା ଏକ ଗବେଷଣାମୂଳକ ନିବନ୍ଧ । ବାବାସାହେବ ଜାତିପ୍ରଥାର ଉତ୍ପତ୍ତି ସମ୍ବନ୍ଧରେ ନୃତତ୍ତ୍ୱବିତମାନଙ୍କ ପ୍ରକଳ୍ପର ଦୁର୍ବଳତା ଦର୍ଶାଇ ଯେଉଁ ସିଦ୍ଧାନ୍ତର ଅବତାରଣା କରିଛନ୍ତି ତାହା ବେଶ୍ ଭାବଗର୍ଭକ ଓ ଭାରତୀୟ ସମାଜରେ ପ୍ରଚଳିତ ବିଭିନ୍ନ ପ୍ରଥାକୁ ବ୍ୟାଖ୍ୟା କରିବାରେ ସମର୍ଥ । ଜାତିପ୍ରଥାର ଉତ୍ପତ୍ତି ସଂପର୍କରେ ଏହା ଏକ ସମାଜଶାସ୍ତ୍ରିକ ଗଭୀର ଅନୁଶୀଳନ ।

ତେବେ ବାବାସାହେବଙ୍କ ଲିଖିତ ଜାତିପ୍ରଥାର ବିଲୋପ ଏକ ଗଭୀର ପାଣ୍ଡିତ୍ୟପୂର୍ଣ୍ଣ କୃତି ଯାହା ସେ ୧୯୩୫-୩୬ ରେ ଲେଖିଥିଲେ । ପଞ୍ଜାବସ୍ଥିତ ଜାତ-ପାତ- ତୋଡ଼କ ମଣ୍ଡଳରେ ଦୀକ୍ଷାନ୍ତ ଭାଷଣ ଦେବାକୁ ସେ ଏହି ସନ୍ଦର୍ଭଟି ପ୍ରସ୍ତୁତ କରିଥିଲେ, ଯଦିବା ସେ ଏହା ଉପସ୍ଥାପନ

କରିପାରିଲେ ନାହିଁ । ତେବେ ଏହା ପୁସ୍ତକ ଭାବେ ୧୯୩୬ରେ ପ୍ରକାଶିତ ହେବା ପରେ ଏହା ସେ ସମୟର ବିଶିଷ୍ଟ ବ୍ୟକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏପରିକି ମହାତ୍ମା ଗାନ୍ଧୀ ଏହି ପୁସ୍ତକ ସଂପର୍କରେ ତିନୋଟି ସମୀକ୍ଷାମୂଳକ ସମାଲୋଚନା ତାଙ୍କ ପତ୍ରିକା "ହରିଜନ"ରେ ପ୍ରକାଶ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ସମୀକ୍ଷା ଉପରେ ବାବାସାହେବ ମଧ୍ୟ ନିଜର ବିଶ୍ଳେଷଣାତ୍ମକ ଅଭିମତ ରଖିଥିଲେ । ଜାତିପ୍ରଥାର ବିଲୋପ ପୁସ୍ତକଟିରେ ଭାରତୀୟ ହିନ୍ଦୁ ସମାଜର ପ୍ରଚଳିତ ନୀତି, ପରମ୍ପରା, ବର୍ଣ୍ଣବ୍ୟବସ୍ଥା, ସଂସ୍କାରବାଦୀ ଆନ୍ଦୋଳନ ଇତ୍ୟାଦି ପ୍ରସଙ୍ଗ ଉପରେ ଏକ ଗଭୀର ବିଶ୍ଳେଷଣାତ୍ମକ ଅନୁଶୀଳନ ରହିଛି । ଜାତିପ୍ରଥା ଉପରେ ଏବେ ବହୁ ସନ୍ଦର୍ଭ ଲେଖା ଯାଇଥିଲେ ମଧ୍ୟ ବାବା ସାହେବଙ୍କ ଏହି କୃତିଟି ବେଶ୍ ମୌଳିକ, ଭାବଗର୍ଭକ ଓ ଚିନ୍ତା ଉଦ୍ରେକକାରୀ ନିବନ୍ଧ ।

'ଜାତି ଓ ଧର୍ମ ପରିବର୍ତ୍ତନ' ଏବଂ 'ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ' ବାବାସାହେବଙ୍କ ଦୁଇଟି କ୍ଷୁଦ୍ର ପ୍ରବନ୍ଧ । ଜାତିପ୍ରଥା ସଂପର୍କୀୟ ପ୍ରସଙ୍ଗ ଉପରେ ଏହା ସେପରି ଗୁରୁତ୍ୱପୂର୍ଣ୍ଣ ନୁହେଁ । ତେବେ ସୂଚିତ ପ୍ରସଙ୍ଗ ଉପରେ ତାଙ୍କର ନିଜସ୍ୱ ମତର ଏକ ଆପାତିକ ପ୍ରତିଫଳନ ଏଥିରେ ଦେଖିବାକୁ ମିଳେ ।

ପ୍ରଥମ ଦୁଇଟି ପ୍ରବନ୍ଧକୁ ନେଇ ମୋର ଅନୁବାଦ ପୁସ୍ତକ "ଭାରତରେ ଜାତିପ୍ରଥା ଓ ତାହାର ବିଲୋପ" ବରଗଡସ୍ଥିତ ବିକଳ୍ପ ପ୍ରକାଶନ ତରଫରୁ ୧୯୯୮ ମସିହାରେ ପ୍ରକାଶିତ ହୋଇଥିଲା । ପରେ ଭଦ୍ରକସ୍ଥିତ ଜେନିଥ ପ୍ରକାଶନ ଦ୍ୱାରା ଏହାକୁ ୨୦୦୪ରେ ପ୍ରକାଶ କରାଯାଇଥିଲା । ତେବେ କିଛି ବର୍ଷ ହେଲା ବହିଟି ଆଉ ଉପଲବ୍ଧ ହେଉନାହିଁ ଓ ଏହି ପ୍ରକାଶକମାନେ ଏହା ଭିତରେ ପ୍ରକାଶନ କାର୍ଯ୍ୟ ବନ୍ଦ କରିଦେଇଛନ୍ତି । ଏହି ସ୍ଥିତିରେ ଓଡିଶାର ବହୁ ପାଠକ ବହିଟି ଚାହୁଁ ଥିବାରୁ 'ଚର୍ଚ୍ଚା ପ୍ରକାଶନ' ତରଫରୁ ବହିଟିକୁ ନୂଆ ଭାବରେ ପ୍ରକାଶ କରିବା ପାଇଁ 'ଚର୍ଚ୍ଚା'ର ସଂପାଦକ ଶ୍ରୀ ଦେବେନ୍ଦ୍ର ସୁତାର ଆଗ୍ରହ ପ୍ରକାଶ କରିଛନ୍ତି । ଏହି ଅବସରରେ ମୁଁ ତାଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ ଜ୍ଞାପନ କରୁଛି । ବହୁ ସାମାଜିକ କର୍ମୀ, ମାନବିକ ଅଧିକାର ଦିଗରେ କାର୍ଯ୍ୟକରୁଥିବା ସମାଜସେବୀ ଓ ଜାତିପ୍ରଥା ବିଷୟରେ ଜାଣିବାକୁ ଚାହୁଁଥିବା କୌତୂହଳୀ ପାଠକମାନଙ୍କର ଅନୁରୋଧ ଯୋଗୁ ଏହା ପ୍ରକାଶିତ ହେବାକୁ ଯାଉଛି । ଏହି ଅବସରରେ ଓଡିଶାର ଗୁଣଗ୍ରାହୀ ପାଠକମାନଙ୍କୁ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି । ଜାତିପ୍ରଥାକୁ ବୁଝିବାରେ ଓ ଏକ ଭେଦଭାବବିହୀନ ସମତାଭିତ୍ତିକ ସମାଜ ଗଠନ ଦିଗରେ ବାବା ସାହେବଙ୍କ ଏହି କୃତିଟି ଯେ ଯଥେଷ୍ଟ ପ୍ରେରଣାଦାୟକ ଏହା ମୁଁ ମନେକରେ।

ବହିଟିର ଡିଟିପି ପରେ ଲେଖାର ପ୍ରୁଫ ସଂଶୋଧନ ପାଇଁ ମୋର ପତ୍ନୀ ପ୍ରତିମା ଦେବୀ ସାହାଯ୍ୟ କରିଥିବାରୁ ତାଙ୍କୁ ସଶ୍ରଦ୍ଧ ଧନ୍ୟବାଦ ଜଣାଉଛି ।

ଏ୧୨, ଭାଗୀରଥି ବିହାର — ଧନେଶ୍ୱର ସାହୁ

ଢେଙ୍କାନାଳ

# ଭାରତରେ ଜାତିପ୍ରଥା

## ଜାତିମାନଙ୍କର ଗଠନ, ଉତ୍ପତ୍ତି ଓ ବିକାଶ

(ଆମେରିକାର ନିଉୟର୍କସ୍ଥିତ କଲମ୍ବିଆ ବିଶ୍ୱବିଦ୍ୟାଳୟର ନୃତତ୍ତ୍ୱ ବିଭାଗରେ ଅନୁଷ୍ଠିତ ଡ.ଏ.ଏ. ଗୋଲଡ଼େନ୍‌ୱେଜର ଆଲୋଚନା ଚକ୍ରରେ ତା୯/୫/୧୯୧୬ରେ ପଠିତ ନିବନ୍ଧ ।)

ଆମ ଭିତରୁ ଅଧିକାଂଶ ସ୍ଥାନୀୟ, ଜାତୀୟ ବା ଆନ୍ତର୍ଜାତିକ ସ୍ତରରେ ଭୌତିକ ବିକାଶକୁ ଲକ୍ଷ୍ୟ କରୁଥିବେ । ଏହି ସାମୂହିକ ବିକାଶ ହିଁ ହେଉଛି ସାମଗ୍ରିକ ଭାବରେ ମାନବିକ ସଭ୍ୟତାର ଆଧାର । କିନ୍ତୁ ଆମ ଭିତରୁ ଖୁବ୍ କ୍ୱଚିତ୍ ବ୍ୟକ୍ତି ମାନବିକ ଅନୁଷ୍ଠାନ ରୂପକ ପ୍ରତିପାଦନକୁ ଅବଧାରଣା କରିପାରିବେ । ନୃଜାତି ବିଜ୍ଞାନର ଛାତ୍ର ଭାବରେ "ମାନବିକ ଅନୁଷ୍ଠାନମାନଙ୍କର ପ୍ରତିପାଦନ" ସଂପର୍କରେ ମୋର ଏହି ବିବରଣ ଦେଖି ଆପଣମାନେ ବିଚଳିତ ହେବେନାହିଁ ବୋଲି ଆଶା କରୁଛି ।

ମୋର ବିଶ୍ୱାସ ଐତିହାସିକ ଗୁରୁତ୍ୱ ଥିବା କେତେକ ସ୍ଥାନ ଯଥା ପମ୍ପେଇର ଭଗ୍ନାବଶେଷକୁ ଆପଣମାନେ ପ୍ରାୟ ଦେଖିଥିବେ ଓ ସେଠାରେ ବାକ୍‌ପଟୁ ଗାଇଡ୍‌ମାନଙ୍କର ବାକ୍‌ଚାତୁରୀପୂର୍ଣ୍ଣ ବ୍ୟାଖ୍ୟାନକୁ କୌତୂହଳପୂର୍ବକ ଶୁଣିଥିବେ । ସେହି ବାକ୍‌ଚାତୁରୀପୂର୍ଣ୍ଣ ବିବରଣୀ ପରି ମୁଁ ଏଠାରେ କିଛି ପ୍ରକାଶ କରିବାକୁ ଯାଉନାହିଁ । ବରଂ ବସ୍ତୁନିଷ୍ଠ ଭାବରେ ଓ ଯେତେଦୂର ସମ୍ଭବ ଅତ୍ୟନ୍ତ ନିସ୍ତାର ସହ କେତେକ ସାମାଜିକ ବ୍ୟବସ୍ଥା, ତା'ର ଉତ୍ପତ୍ତି ଓ କାର୍ଯ୍ୟ ସମ୍ବନ୍ଧରେ ପ୍ରକାଶ କରିବାକୁ ଉଦ୍ୟମ କରୁଛି ।

ଏହି ଆଲୋଚନା ଚକ୍ରରେ ଗବେଷକ ବନ୍ଧୁମାନେ ଆଧୁନିକ ବନାମ ପ୍ରାଚୀନ ସମାଜ ସମ୍ବନ୍ଧରେ ନିଜ ନିଜର ଗବେଷଣା ଜନିତ କ୍ଷେତ୍ର ଉପରେ ନିଜର ସୁଚିନ୍ତିତ ବ୍ୟାଖ୍ୟାମାନ ପ୍ରକାଶ କରିଛନ୍ତି । ବର୍ତ୍ତମାନ ମୁଁ ସେହିପରି ଏକ ପ୍ରସଙ୍ଗ ଉପରେ ମୋର ଆଲୋଚନା ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପନ କରିବାକୁ ଯାଉଛି । ମୋ ନିବନ୍ଧରେ ଶୀର୍ଷକ ହେଉଛି, "ଭାରତରେ ଜାତି ବ୍ୟବସ୍ଥା – ଏହାର ଗଠନ, ଉତ୍ପତ୍ତି ଓ ବିକାଶ" ।

ମୁଁ ଯେଉଁ ବିଷୟଟି ଉପରେ ଆଲୋଚନା କରିବାକୁ ଯାଉଛି ତାହାର ଜଟିଳତା ବିଷୟରେ ମୁଁ ବେଶ୍ ସଚେତନ । ଅତ୍ୟନ୍ତ ବୁଦ୍ଧିମାନ ଗବେଷକ ଓ ଚିନ୍ତାଶୀଳ ଲେଖକମାନେ 'ଜାତି' ସମ୍ପର୍କରେ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟ ଲୋକଲୋଚନକୁ ଆଣିବାକୁ ଉଦ୍ୟମ କରିଛନ୍ତି । ତଥାପି ଏହାର ସମ୍ପୂର୍ଣ୍ଣ ବ୍ୟାଖ୍ୟା ସମ୍ଭବ ହୋଇନାହିଁ, ଯଦିବା ଏହି ବିଷୟଟିକୁ ବୁଝିବାରେ କୌଣସି ଅସୁବିଧା ନାହିଁ । ଏହି ବିଷୟଟି ଯେ ଅଜ୍ଞେୟ ମୁଁ ଏହିପରି ନୈରାଶ୍ୟଜନକ ମତ ଦେଉନାହିଁ, ଯଦିବା ଜାତି ବ୍ୟବସ୍ଥା ପରି ଏକ ପ୍ରାଚୀନ ଅନୁଷ୍ଠାନର ଜଟିଳତା ନେଇ ମୁଁ ଯଥେଷ୍ଟ ସଚେତନ । ମୋର ବିଶ୍ୱାସ ଏହା ଯେତେ ଜଟିଳ ହେଲେ ବି ଏହାକୁ ବୁଝିବା ବା ବ୍ୟାଖ୍ୟା କରିବା ଅସମ୍ଭବ ନୁହେଁ । ସୈଦ୍ଧାନ୍ତିକ ଓ ପ୍ରୟୋଗାତ୍ମକ ଉଭୟ ଦୃଷ୍ଟିରୁ ଜାତି ସମସ୍ୟାଟି ଯଥେଷ୍ଟ ବ୍ୟାପକ ଓ ଜଟିଳ । ବ୍ୟାବହାରିକ ସ୍ତରରେ ଏହି ଅନୁଷ୍ଠାନର ଭୟଙ୍କର ପରିଣାମ ରହିଛି । ଯଦିବା ଏହା ଗୋଟିଏ ଅଞ୍ଚଳର ସମସ୍ୟା ଅଟେ, ତଥାପି ଏହାର ବ୍ୟାପକ କୁପ୍ରଭାବକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଯେଉଁ ପର୍ଯ୍ୟନ୍ତ ଭାରତରେ ଏହି ବ୍ୟବସ୍ଥାର ପ୍ରଚଳନ ରହିଛି ସେ ପର୍ଯ୍ୟନ୍ତ ହିନ୍ଦୁମାନେ ପ୍ରାୟତଃ କୌଣସି ଆନ୍ତର୍ଜାତି ବିବାହ ବା ନିଜ ଜାତିର ବାହାରେ ସାମାଜିକ ବନ୍ଧନ ସୁଦୃଢ଼ କରିପାରିବେ ନାହିଁ ଏବଂ ଯଦି ହିନ୍ଦୁମାନେ ଅନ୍ୟଦେଶକୁ ଦେଶାନ୍ତର କରିଯିବେ, ତେବେ 'ଭାରତୀୟ ସମାଜର ଜାତିପ୍ରଥା ଏକ ବିଶ୍ୱ ସମସ୍ୟାରେ ପରିଣତ ହେବ । ସୈଦ୍ଧାନ୍ତିକ ଭାବରେ ଏହାର ଉତ୍ପତ୍ତି ନେଇ ନିଷ୍ଠାପର ଗବେଷଣା ସତ୍ତ୍ୱେ ଗବେଷକମାନେ ସମ୍ପୂର୍ଣ୍ଣ ଭାବରେ ବିଷୟଟିକୁ ପ୍ରକାଶ କରିବାକୁ ସମର୍ଥ ହୋଇ ନାହାନ୍ତି । ଏହି ପରିପ୍ରେକ୍ଷୀରେ ମୁଁ ଏହି ସମସ୍ୟାର ଯେ ଏକ ସାମଗ୍ରିକ ଚିତ୍ର ଦେଇପାରିବି, ଏହା କେବେ ବି ଭାବୁନାହିଁ । ସମୟ, ସ୍ଥାନ ଓ ମୋର ସୀମିତ ଅବଧାରଣା ନେଇ ମୁଁ ବେଶ୍ ସଚେତନ । ବସ୍ତୁତଃ ବିଷୟଟିର ବ୍ୟାପକତା ଦୃଷ୍ଟିରୁ ମୁଁ ଏହାର ଏକ ନିର୍ଦ୍ଦିଷ୍ଟ ଦିଗ ଯଥା ଏହାର ଉତ୍ପତ୍ତି, ଗଠନ ଓ ପ୍ରସାର ସମ୍ପର୍କରେ ଆଲୋଚନା କରିବାରେ ନିଜକୁ ସୀମିତ ରଖିବି । ଏହି ପ୍ରସଙ୍ଗ ବାହାରେ ରହୁଥିବା ଅନ୍ୟାନ୍ୟ ଦିଗ ସମ୍ବନ୍ଧରେ ମୁଁ ଆଲୋଚନା କରିବି ନାହିଁ ଏବଂ ମୋର ଆଲୋଚନାର ବିଷୟକୁ ବ୍ୟାଖ୍ୟା କରିବା ପରିପ୍ରେକ୍ଷୀରେ ଯଦି ଆବଶ୍ୟକ ହୁଏ ତେବେ ସେଗୁଡ଼ିକର କେବଳ ସୂଚନା ମାତ୍ର ଦେବି ।

---

ବିଶିଷ୍ଟ ମାନବଜାତି ବିଜ୍ଞାନୀମାନଙ୍କର ମତାନୁଯାୟୀ ଆର୍ଯ୍ୟ, ଦ୍ରାବିଡ଼, ମଙ୍ଗୋଲୀୟ ଏବଂ କକେଶୀୟମାନଙ୍କର ସମ୍ମିଶ୍ରଣରେ ଭାରତର ଜନସମୂହ ଗଢ଼ିଉଠିଛି । ଆଦିମ ଅବସ୍ଥାରେ ଭିନ୍ନ ଭିନ୍ନ ଅଞ୍ଚଳରୁ ସାଂସ୍କୃତିକ ଭିନ୍ନତା ସହ ଏହି ଜନଶାଖାଗୁଡ଼ିକ ହଜାର ହଜାର ବର୍ଷ ତଳେ ଭାରତ ଭିତରେ ପ୍ରବେଶ କରିଛନ୍ତି । ଏହି ଭୂଖଣ୍ଡରେ ପ୍ରବେଶ କଲାପରେ ସେମାନଙ୍କ ଭିତରେ ବିଦ୍ୱେଷ ଓ ଯୁଦ୍ଧ ଲାଗି ରହିଥିଲା । ପରେ ସେମାନେ ଏଠାରେ ପରସ୍ପର ସହିତ ମିଶି ଶାନ୍ତିପୂର୍ଣ୍ଣ ଭାବରେ ସହାବସ୍ଥାନ କଲେ । ପାରସ୍ପରିକ ସହଯୋଗ ଓ ସଂସର୍ଗ ଯୋଗୁଁ ସେମାନେ ନିଜ ନିଜର ସଂସ୍କୃତି ବିନିମୟରେ ଏକ ସାଧାରଣ ଓ ସମନ୍ୱିତ ସଂସ୍କୃତିର ବିକାଶ କରାଇଲେ । ଅବଶ୍ୟ ଭାରତର ଜନଗଣଙ୍କ ଭିତରେ ଗୋଟିଏ ଜନଶାଖାର ରୂପ ସ୍ପଷ୍ଟ ଭାବରେ ଦେଖିବାକୁ ମିଳେ ନାହିଁ । ପୂର୍ବ ଭୂଖଣ୍ଡର ଜନଗଣଙ୍କ ସହିତ ପଶ୍ଚିମ ଭୂଖଣ୍ଡର ଜନଗଣଙ୍କର ଶାରୀରିକ ଆକୃତି ଏବଂ ରଙ୍ଗ ଭିତରେ ସ୍ପଷ୍ଟ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ସେହିପରି ଦକ୍ଷିଣ ଭାରତୀୟ ଓ ଉତ୍ତର ଭାରତୀୟଙ୍କ ମଧ୍ୟରେ ମଧ୍ୟ ପାର୍ଥକ୍ୟ ଜଣାପଡ଼େ । ଅବଶ୍ୟ ଶତାବ୍ଦୀ ଶତାବ୍ଦୀ ଧରି ଏକତ୍ର ସହାବସ୍ଥାନ ଦ୍ୱାରା ଯେଉଁ ସମନ୍ୱିତ ସଂସ୍କୃତିର ବିକାଶ ହୋଇଛି ସେଥିରୁ ସମସ୍ତ ଜନଗଣ ଯେ ଗୋଟିଏ ଜନଶାଖାରୁ ଉଦ୍ଭବ ଏହା କୁହାଯାଇପାରିବ ନାହିଁ । ସମନ୍ୱୟ ସମଜାତୀୟତା (Homogencity)ର ଏକ ମାତ୍ର ଅବଲମ୍ବନ ହୋଇ ନପାରେ । ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ଜନଗଣଙ୍କ ମଧ୍ୟରେ ବିଷମ ଜାତୀୟତା (Heterogeneity)ହିଁ ଦେଖିବାକୁ ମିଳେ । ସାଂସ୍କୃତିକ ସମନ୍ୱୟ ଦ୍ୱାରା ହିଁ ସମଜାତୀୟତା ସୃଷ୍ଟି ହୋଇଥାଏ । ଏହି ପୃଷ୍ଠଭୂମିରେ ମୁଁ ଦମ୍ଭର ସହ କହିପାରେ ଯେ ଭାରତ ପରି ଅନ୍ୟ କୌଣସି ରାଷ୍ଟ୍ର ନାହିଁ ଯେଉଁଠି ଏତେ ଦୂର ସାଂସ୍କୃତିକ ସମନ୍ୱୟ ସମ୍ଭବ ହୋଇଛି । ଏହାକୁ ଏକ ଭୌଗୋଳିକ ସମନ୍ୱୟ ନ କହି ଏକ ମୌଳିକ ଓ ଗଭୀର ଏକତ୍ୱ କହିବା ଅଧିକ ସମୀଚୀନ ହେବ । ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଏକ ସାଂସ୍କୃତିକ ସଂହତି ଦୃଷ୍ଟିଗୋଚର ହୋଇଥାଏ । ଏହି ସମଜାତୀୟତା କାରଣରୁ ଜାତିପ୍ରଥାକୁ ବୁଝାଇବା କଷ୍ଟକର ମନେହୁଏ । ହିନ୍ଦୁ ସମାଜ ଯଦି ପରସ୍ପରଠାରୁ ବିଚ୍ଛିନ୍ନ ଗୋଷ୍ଠୀମାନଙ୍କର ଏକ ସଂଘ ହୋଇଥାନ୍ତା, ତେବେ ଏହା ବୁଝାଇବା ସହଜ ହୋଇଥାନ୍ତା । ପରନ୍ତୁ ଗୋଟିଏ ସମଜାତୀୟ ଜନଶାଖାର ଭିନ୍ନ ଭିନ୍ନ ବିଭାଜନ ଜନିତ ଜାତି ବ୍ୟବସ୍ଥାକୁ ବ୍ୟାଖ୍ୟା କରିବା ଜଟିଳ ମନେହୁଏ । କାରଣ ଏକ ସମଜାତୀୟ ଜନଗୋଷ୍ଠୀର ବିଭାଜନ ହିଁ

ହେଉଛି ଜାତି, ସୁତରାଂ ଜାତିପ୍ରଥାର ଉତ୍ପତ୍ତିର ବିଶ୍ଳେଷଣଦ୍ୱାରା ଏକ ସମଜାତୀୟ ଜନଗୋଷ୍ଠୀର ବିଭାଜନକୁ ବ୍ୟାଖ୍ୟା କରିହେବ ।

ଆମର ଆଲୋଚନା ଆରମ୍ଭ କରିବା ପୂର୍ବରୁ ଜାତିର ସ୍ୱରୂପକୁ ବୁଝିବା ଆବଶ୍ୟକ । ସେହି ପରିପ୍ରେକ୍ଷୀରେ ଜାତି ବିଷୟରେ ଅଧ୍ୟୟନ କରିଥିବା କେତେକ ବିଶିଷ୍ଟ ଗବେଷକଙ୍କର ଜାତି ସମ୍ପର୍କୀୟ ସଂଜ୍ଞାକୁ ମୁଁ ଉଦ୍ଧାର କରୁଛି ।

(୧) ବିଶିଷ୍ଟ ଫରାସୀ ଗବେଷକ ସେନାର୍ଟ (Senart)ଙ୍କ ମତାନୁଯାୟୀ ଜାତି ହେଉଛି ଏକ ରୁଦ୍ଧ ଗୋଷ୍ଠୀ ଯାହାକି ସମ୍ପୂର୍ଣ୍ଣ ଭାବରେ ବଂଶାନୁକ୍ରମିକ ଓ ଅନ୍ୟ ଗୋଷ୍ଠୀଠାରୁ ପୃଥକ । ଜାତିର ଏକ ସମିତି ରହିବା ସମ୍ଭବ ଯାହାକି ଜଣେ ମୁଖିଆଙ୍କ ଦ୍ୱାରା ନିୟନ୍ତ୍ରିତ । ଜାତିର ଲୋକମାନଙ୍କ ଭିତରେ ବା ମୁଖ୍ୟମାନଙ୍କ ମଧ୍ୟରେ ମଝିରେ ମଝିରେ ସଭାର ଆୟୋଜନ ହୋଇଥାଏ । ସେମାନେ ନିର୍ଦ୍ଦିଷ୍ଟ ସମୟରେ ବା କୌଣସି ପୂଜା ପାର୍ବଣରେ ସମ୍ମିଳିତ ହୁଅନ୍ତି । ଜାତିର ଲୋକମାନଙ୍କ ଭିତରେ ଏକ ସାଧାରଣ ବୃତ୍ତି ରହିଥାଏ । ବିବାହ ବା ସେପରି କିଛି ଉତ୍ସବବେଳେ ଜାତିର ଲୋକମାନେ ଏକତ୍ରିତ ହୁଅନ୍ତି ଓ ସହଭୋଜନରେ ଯୋଗ ଦିଅନ୍ତି । ଜାତିର ଲୋକମାନଙ୍କର କୌଣସି ସମସ୍ୟାର ବିଚାର ସେହି ସମୟରେ କରାଯାଏ । ଯଦିବା ଭିନ୍ନ ଭିନ୍ନ ଅଞ୍ଚଳରେ ଏ କ୍ଷେତ୍ରରେ ପାର୍ଥକ୍ୟ ପରିଲକ୍ଷିତ ହୁଏ, ତେବେ ଜାତିର ଲୋକମାନେ ଏକ ସାଧାରଣ ନିଷ୍ପତ୍ତି ଦ୍ୱାରା ପରିଚାଳିତ ହୁଅନ୍ତି । ଜାତି ତା'ର ସଭ୍ୟମାନଙ୍କ ଉପରେ ନିଷ୍ପତ୍ତି ନେଇ ଦଣ୍ଡ ବି ଦେଇଥାଏ । ଏପରିକି କୌଣସି ପରିବାରକୁ ସାମାଜିକ ବାସନ୍ଦ ମଧ୍ୟ କରାଯାଇପାରେ ।

(୨) ନେସଫିଲଡ୍ (Nesfield)ଙ୍କ ମତାନୁଯାୟୀ ଜାତି ହେଉଛି ଏକ ଶ୍ରେଣୀ ବା ଗୋଷ୍ଠୀ ଯାହାର ଅନ୍ୟ ଗୋଷ୍ଠୀ ସହିତ ସମ୍ବନ୍ଧ ନଥାଏ । ଗୋଟିଏ ଜାତିର ଲୋକ ନିଜ ଜାତିଛଡ଼ା ଅନ୍ୟ ଜାତିରେ ବିବାହ କରିବା କିମ୍ବା ଏକାଠି ଖିଆପିଆ କରିବା ନିଷିଦ୍ଧ ଅଟେ ।

(୩) ଏଚ୍ : ରିସ୍‌ଲେ (H. Risley)ଙ୍କ ମତାନୁଯାୟୀ କେତେଗୁଡ଼ିଏ ପରିବାରର ଏକତ୍ରିକରଣ ହିଁ ହେଉଛି ଏକ ଜାତି, ଯେଉଁମାନଙ୍କର କି ଏକ ବା କେତେଗୁଡ଼ିଏ ସାଧାରଣ ସାଙ୍ଗିଆ ଥାଏ । ଗୋଟିଏ ଜାତିର ଲୋକମାନେ ଏକ ନିର୍ଦ୍ଦିଷ୍ଟ ବୃତ୍ତି ଅବଲମ୍ବନ କରନ୍ତି । ଏକ କାଳ୍ପନିକ ପୂର୍ବପୁରୁଷ (ସେ ମାନବ ହୋଇପାରନ୍ତି ବା

ଦେବତା ହୋଇପାରନ୍ତି)ଙ୍କ ଠାରୁ ପ୍ରତ୍ୟେକ ଜାତିର ଲୋକମାନଙ୍କର ସୃଷ୍ଟି । ଜାତିର ଲୋକମାନଙ୍କର ପୂର୍ବପୁରୁଷଙ୍କ ବୃତ୍ତିକୁ ସେମାନେ ଗ୍ରହଣ କରିଥାନ୍ତି । ଏକ ପୂର୍ବପୁରୁଷଙ୍କଠାରୁ ସୃଷ୍ଟି ବୋଲି ବିଶ୍ୱାସରୁ ଜାତିର ଲୋକମାନେ ଏକ ସମଜାତୀୟ ଗୋଷ୍ଠୀ ଗଠନ କରନ୍ତି ।

(୪) ଡଃ. କେତକାର (Ketkar) ଜାତିର ସଂଜ୍ଞା ଦେବାକୁ ଯାଇ କହିଛନ୍ତି ଯେ ଏହା ହେଉଛି ଦୁଇଟି ଲକ୍ଷଣ ଥିବା ଏକ ସାମାଜିକ ଗୋଷ୍ଠୀ (କ) ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଲୋକଙ୍କଠାରୁ ଜନ୍ମ ନେଉଥିବା ଲୋକମାନେ ହିଁ ସେହି ଜାତିରେ ଅନ୍ତର୍ଭୁକ୍ତ (ଖ) ଗୋଟିଏ ଜାତିର ଲୋକମାନେ ଏକ ପ୍ରଚଳିତ ସାମାଜିକ ନିୟମ ଅନୁଯାୟୀ ଅନ୍ୟ ଜାତିରେ ବିବାହ କରିବା ସମ୍ପୂର୍ଣ୍ଣ ନିଷେଧ ।

ଉପର ସଂଜ୍ଞାଗୁଡ଼ିକର ମୂଲ୍ୟାୟନ କରିବା ଆମର ଆଲୋଚନା ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଉପରୋକ୍ତ ସଂଜ୍ଞାମାନଙ୍କ ମଧ୍ୟରୁ ତିନୋଟି କ୍ଷେତ୍ରରେ ପ୍ରତ୍ୟେକକୁ ଏକକ ଭାବରେ ବିଚାର କଲେ ତାହା ଅତ୍ୟଧିକ ବା ଅତ୍ୟଳ୍ପ ବୋଲି ପ୍ରତୀତ ହେବ । କୌଣସିଟି ପୂର୍ଣ୍ଣାଙ୍ଗ ବା ତ୍ରୁଟିଶୂନ୍ୟ ମନେହୁଏ ନାହିଁ । ସେମାନଙ୍କ କ୍ଷେତ୍ରରେ ଜାତି ବ୍ୟବସ୍ଥାର ବିନ୍ୟାସ ପରିପ୍ରେକ୍ଷୀରେ ଏକ ମୁଖ୍ୟ ଲକ୍ଷଣର ଅଭାବ ପରିଲକ୍ଷିତ ହୁଏ । ପ୍ରତ୍ୟେକ କ୍ଷେତ୍ରରେ ଜାତିକୁ ଏକ ଏକ ପୃଥକ୍ ଏକକ ଭାବରେ ଗ୍ରହଣ କରାଯାଇଛି, ଅଥଚ ଏକ ସାମଗ୍ରିକ ବ୍ୟବସ୍ଥାରେ ପରସ୍ପରର ସମ୍ବନ୍ଧକୁ ଦର୍ଶାଯାଇ ନାହିଁ, କିନ୍ତୁ ସଂଜ୍ଞାଗୁଡ଼ିକୁ ଏକତ୍ର ବିଚାର କଲେ ସେମାନେ ପରସ୍ପରର ଅନୁପୂରକ ମନେହୁଅନ୍ତି ଏବଂ ଗୋଟିଏ କ୍ଷେତ୍ରରେ ଛାଡ଼ି ଯାଇଥିବା ଲକ୍ଷଣକୁ ଅନ୍ୟ କ୍ଷେତ୍ରରେ ଗୁରୁତ୍ୱ ଦିଆଯାଇଥିବା ପରିଲକ୍ଷିତ ହୁଏ । ସୁତରାଂ ସଂଜ୍ଞାଗୁଡ଼ିକର ମୂଲ୍ୟାୟନ ପରିପ୍ରେକ୍ଷୀରେ ସେମାନଙ୍କ ମଧ୍ୟରେ ଥିବା ଜାତି ବ୍ୟବସ୍ଥାର କେତେକ ସାଧାରଣ ଓ ସ୍ୱକୀୟ ଲକ୍ଷଣକୁ ବିଚାର କରିବା ମୁଁ ଯଥାର୍ଥ ମନେକରୁଛି ।

ସେନାର୍ଟଙ୍କ ମତକୁ ବିଚାର କରାଯାଉ । ସେ ତାଙ୍କ ସଂଜ୍ଞାରେ ଅପବିତ୍ରତାକୁ ଜାତି ବ୍ୟବସ୍ଥାର ଏକ ଲକ୍ଷଣ ଭାବରେ ଦର୍ଶାଇଛନ୍ତି । ଏହି ପରିପ୍ରେକ୍ଷୀରେ ନିଃସନ୍ଦେହ ଭାବରେ ଏହା କୁହାଯାଇପାରେ ଯେ ଏହା ଜାତିପ୍ରଥାର ସେପରି କିଛି ସ୍ୱକୀୟ ଲକ୍ଷଣ ନୁହେଁ । ପୂଜକ ଗୋଷ୍ଠୀର କର୍ମକାଣ୍ଡୀୟ ବିଧି କ୍ଷେତ୍ରରେ ପବିତ୍ରତା ନେଇ ନିର୍ଦ୍ଦିଷ୍ଟ ବ୍ୟବସ୍ଥା

ଦେଖାଯାଏ । ପରିଣାମତଃ ଜାତି ବ୍ୟବସ୍ଥାର ଏହା ଯେ ଏକ ଅବଶ୍ୟମ୍ଭାବୀ ପରିଣତି ତାହା କୁହାଯାଇ ପାରିବ ନାହିଁ । ଅପବିତ୍ରତା ଜାତି ବ୍ୟବସ୍ଥା ସହିତ ସମ୍ପର୍କିତ ମନେହୁଏ । ଜାତି ଜାତି ଭିତରେ ସହଭୋଜନର ଅଭାବକୁ ଜାତିପ୍ରଥାର ଏକ ମୁଖ୍ୟ ଲକ୍ଷଣ ଭାବରେ ନେସ୍‌ଫିଲ୍‌ଡ୍ ଦେଖାଇଛନ୍ତି । ଯଦିବା ସେ ଏ କ୍ଷେତ୍ରରେ ଏକ ନୂତନ ଦିଗପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି ତଥାପି ସେ କାର୍ଯ୍ୟକୁ ଭୁଲକ୍ରମେ କାରଣ ବୋଲି ନେଇଛନ୍ତି । ଜାତିପ୍ରଥା ଏକ ରୁଦ୍ଧ ବ୍ୟବସ୍ଥା ହୋଇଥିବାରୁ ଏଥିରେ ସାମାଜିକ ସମ୍ବନ୍ଧକୁ ସଙ୍କୁଚିତ କରାଯିବା ସହ ଏକତ୍ର ଭୋଜନକୁ ବାରଣ କରାଯାଇଛି । ଗୋଟିଏ ଜାତିର ଲୋକେ ଅନ୍ୟ ଜାତିର ଲୋକମାନଙ୍କ ସହ ଭୋଜନ କରିବା ନିଷେଧର କୌଣସି ନିୟମ ନାହିଁ । ବରଂ ଜାତି ମାତ୍ରକେ ଏକ ପୃଥକ ଗୋଷ୍ଠୀ ହୋଇଥିବାରୁ ତାହାର ପରିଣାମ ସ୍ୱରୂପ ସହଭୋଜନ ସମ୍ଭବ ହୋଇ ନଥାଏ । ପରବର୍ତ୍ତୀ କାଳରେ ଏହା ଏକ ନିଷେଧାତ୍ମକ ନିୟମର ରୂପ ନେଇଛି ଏବଂ ଲୋକ ଏହାକୁ ଧର୍ମୀୟ ବୋଲି ଗ୍ରହଣ କରିଛନ୍ତି ।

ଜାତି ବ୍ୟବସ୍ଥାରେ ଏହି ଦିଗଟି ପ୍ରତି ନେସ୍‌ଲେ ଦୃଷ୍ଟି ଆକର୍ଷଣ କରିଥିଲେ ବି ଏହା ଜାତିପ୍ରଥାର କାରଣ ନୁହେଁ, ବରଂ ଏକ ପରିଣାମକୁ ସେ କାରଣ ଭାବେ ବିଚାର କରିଛନ୍ତି । ମୋଟ ଉପରେ କହିଲେ ଏଚ୍. ରିସ୍‌ଲେ ସେପରି କୌଣସି ନୂଆ ବିଷୟ ତାଙ୍କ ସଂଜ୍ଞାରେ ଅବତାରଣା କରି ନାହାନ୍ତି ।

ବର୍ତ୍ତମାନ ଡଃ କେତ୍‌କାରଙ୍କ ସଂଜ୍ଞାର ଆଲୋଚନା କରାଯାଉ । ସେ ଏ କ୍ଷେତ୍ରରେ ନୂତନ ଓ ମୌଳିକ ବିଷୟରେ ଅବତାରଣା କରିଛନ୍ତି । ସେ ବିଷୟଟିର ଗଭୀରକୁ ଯିବା ସହିତ ଏକ ମୁକ୍ତ ଦୃଷ୍ଟିଭଙ୍ଗୀ ବ୍ୟକ୍ତ କରିଛନ୍ତି । ସେ ଜାତିର ସଂଜ୍ଞା ଦେବାବେଳେ ଗୋଟିଏ ଜାତିର ସମଗ୍ର ଜାତି ବ୍ୟବସ୍ଥା ସହିତ ସମ୍ପର୍କକୁ ଦର୍ଶାଇଛନ୍ତି । ସୁତରାଂ ଗୋଟିଏ ସମଗ୍ର ବ୍ୟବସ୍ଥା ଭିତରେ ଏକ ନିର୍ଦ୍ଦିଷ୍ଟ ସମ୍ପର୍କକୁ ଦେଖାଇବା ବେଳେ ସେ ଏହାର ମୌଳିକ ଓ ଅବଶ୍ୟମ୍ଭାବୀ ଲକ୍ଷଣ ପ୍ରତି ଦୃଷ୍ଟି ଆକର୍ଷଣ କରାଇଛନ୍ତି । ଏ କ୍ଷେତ୍ରରେ ସେ ଏହାର ମୁଖ୍ୟ ଓ ଗୌଣ ଲକ୍ଷଣ ଭିତରେ ପାର୍ଥକ୍ୟ ଦର୍ଶାଇଛନ୍ତି । ତଥାପି ତାଙ୍କ ଆଲୋଚନାର ସ୍ୱଚ୍ଛତା ଓ ସାବଲୀଳତା ସତ୍ତ୍ୱେ ଗୋଟିଏ ଅସ୍ୱଚ୍ଛତା ରହିଯାଇଛି । ଜାତିପ୍ରଥାର ସେ ଦୁଇଟି ପ୍ରଧାନ ଲକ୍ଷଣର ସୂଚନା ଦେଇଛନ୍ତି । ତାହାହେଲା ଏଥିରେ ଆନ୍ତର୍ଜାତି ବିବାହକୁ ନିଷେଧ କରାଯାଇଛି ଓ 'ସ୍ୱଜନନ ବ୍ୟକ୍ତିଗଣ' (Autogeny)କୁ

ନେଇ ପ୍ରତ୍ୟେକ ଜାତି ଗଠିତ ବୋଲି ଦର୍ଶାଇଛନ୍ତି । ମୋର ମତାନୁଯାୟୀ ଏହା ଦୁଇଟି ପୃଥକ୍ ଲକ୍ଷଣ ନୁହେଁ, ବରଂ ଗୋଟିଏ ବ୍ୟବସ୍ଥାର ଦୁଇଟି ଅବଶ୍ୟମ୍ଭାବୀ ପରିଣାମ । ଯଦି ଆନ୍ତର୍ଜାତି ବିବାହକୁ ନିଷେଧ କରାଯାଏ ତେବେ ପରିଣାମ ସ୍ୱରୂପ ଜାତି 'ସ୍ୱଜନନ ସଭ୍ୟ'ମାନଙ୍କ ଭିତରେ ନିଶ୍ଚିତ ସୀମିତ ରହିବ । ଫଳରେ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ଭଳି ଏ ଦୁଇଟି ଲକ୍ଷଣ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ।

ଜାତିପ୍ରଥାର ବିଭିନ୍ନ ଲକ୍ଷଣଗୁଡ଼ିକୁ ବିଶ୍ଳେଷଣ କଲେ ଏହା ସୁସ୍ପଷ୍ଟ ହୁଏ ଯେ ଆନ୍ତର୍ଜାତି ବିବାହକୁ ବାରଣ କରି ଜାତି ଭିତରେ ବିବାହକୁ ସୀମିତ ରଖିବା ଯାହାକୁ ସଗୋତ୍ରୀୟ (Endogamy) କୁହାଯାଏ – ଜାତିପ୍ରଥାର ସାରତତ୍ତ୍ୱ ଅଟେ । ଅବଶ୍ୟ ନୃତତ୍ତ୍ୱ ବିଜ୍ଞାନର ସିଦ୍ଧାନ୍ତ ଦୃଷ୍ଟିରୁ ଏହାକୁ କେହି ଅସ୍ୱୀକାର କରିପାରନ୍ତି, କାରଣ କେତେକ ଜାଗାରେ 'ସଗୋତ୍ରୀୟ ଗୋଷ୍ଠୀ' ରହିଛନ୍ତି, ଯେଉଁମାନଙ୍କ ମଧ୍ୟରେ ବିବାହ ସୀମିତ ହୋଇରହିଛି: ଅଥଚ ସେଠାରେ କୌଣସି ଜାତି ବ୍ୟବସ୍ଥା ନାହିଁ । ଭୌଗୋଳିକ ଓ ସାଂସ୍କୃତିକ ଦୃଷ୍ଟିରୁ ଅଲଗା ଅଲଗା ରହୁଥିବା 'ସଗୋତ୍ରୀୟ ଗୋଷ୍ଠୀ'ମାନଙ୍କ ବିଷୟରେ ଏହା ସତ୍ୟ ଅଟେ । ଆମେରିକାରେ ରହୁଥିବା ନିଗ୍ରୋ, ଶ୍ୱେତକାୟ ଓ ଲୋହିତ ଭାରତୀୟ ଗୋଷ୍ଠୀମାନଙ୍କର ଉଦାହରଣ ଏ ସଂକ୍ରାନ୍ତରେ ଦିଆଯାଇପାରେ । କିନ୍ତୁ ଭାରତୀୟ ପୃଷ୍ଠଭୂମିରେ ବିଷୟଟି ଅନ୍ୟ ପ୍ରକାର ଅଟେ । ଏ କ୍ଷେତ୍ରରେ ଘଟଣାମାନଙ୍କୁ ମିଶାଗୋଳା କରିବା ଠିକ୍ ନୁହେଁ । ଭାରତୀୟ ଜନଗଣଙ୍କ ମଧ୍ୟରେ ସମଜାତୀୟତା ବିଦ୍ୟମାନ ଥିବା ପୂର୍ବରୁ କୁହାଯାଇଛି ।

ଭାରତର୍ରେ ବିଭିନ୍ନ ଅଞ୍ଚଳରେ ରହିଥିବା ପୃଥକ ଜନଶାଖାଗୁଡ଼ିକ କାଳକ୍ରମେ ପରସ୍ପର ସହିତ ସମ୍ମିଳିତ ହୋଇ ଏକ ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠା କରିଛନ୍ତି, ଯାହାକି ସେମାନଙ୍କ ସମଜାତୀୟତାର ମାନଦଣ୍ଡ ହୋଇଛି । ଏହି ସମଜାତୀୟତାର ଆଧାର ଉପରେ ଜାତିପ୍ରଥାକୁ ବୁଝାଇବା ଜଟିଳ ମନେହୁଏ । ଏକ ସଗୋତ୍ରୀୟ ଜନଜାତି ବା ଜନଗଣଙ୍କ ମଧ୍ୟରେ ସାଦୃଶ୍ୟ ପରିଲକ୍ଷିତ ହୁଏ, କିନ୍ତୁ ଜାତିଗତ ଭିନ୍ନତା ନଥାଏ । ଭାରତରେ ପ୍ରଚଳିତ ଜାତି ବ୍ୟବସ୍ଥା ଜନଗଣଙ୍କ ମଧ୍ୟରେ କୃତ୍ରିମ ବିଭାଜନକୁ ସୂଚାଏ ଏବଂ ଗୋଟିଏ ଜାତିର ଲୋକମାନଙ୍କୁ ଅନ୍ୟ ଜାତି ସହ ବୈବାହିକ ସମ୍ବନ୍ଧ ସ୍ଥାପନ କରିବାକୁ ବଞ୍ଚିତ କରେ । ସୁତରାଂ ସଗୋତ୍ରୀୟ ବିବାହ ବ୍ୟବସ୍ଥା ହିଁ ଜାତିପ୍ରଥାର

ପ୍ରଧାନ ଓ ଅବଶ୍ୟମ୍ଭାବୀ ଆଧାର ଅଟେ । ଯଦି ସଗୋତ୍ରୀୟ ବିବାହ ବ୍ୟବସ୍ଥା କିପରି ପ୍ରଚଳିତ ହୋଇଛି ତାହା ବ୍ୟାଖ୍ୟା କରାଯାଏ ତେବେ ଜାତିପ୍ରଥାର ଉତ୍ପତ୍ତି ଓ ଗଠନକୁ ବୁଝାଇବା ସମ୍ଭବ ହେବ ।

ଜାତିପ୍ରଥାର ରହସ୍ୟକୁ ବୁଝିବା ପାଇଁ ସଗୋତ୍ରୀୟ ବିବାହ ବ୍ୟବସ୍ଥାକୁ ମୁଁ କାହିଁକି ଏତେ ଗୁରୁତ୍ୱ ଦେଉଛି ତାହା ଆପଣମାନଙ୍କ ପାଇଁ ସହଜବୋଧ ହୋଇ ନପାରେ । ଆପଣମାନଙ୍କର କଳ୍ପନାକୁ ଅଧିକ ଚାପ ନଦେଇ ମୁଁ ଏ କ୍ଷେତ୍ରରେ ନିମ୍ନ କାରଣଗୁଡ଼ିକୁ ଅବତାରଣା କରୁଛି ।

ଏହି ପରିପ୍ରେକ୍ଷୀରେ ଏହା ବ୍ୟକ୍ତ କରିବା ଅପ୍ରାସଙ୍ଗିକ ହେବନାହିଁ ଯେ ସାଂପ୍ରତିକ ଭାରତୀୟ ସମାଜରେ ଯେଉଁ ପ୍ରାଚୀନ ପ୍ରଥାଗୁଡ଼ିକର ପ୍ରଚଳନ ରହିଛି ତାହା ଅନ୍ୟ କୌଣସି ସଭ୍ୟ ସମାଜରେ ଦେଖାଯାଏ ନାହିଁ । ଏହାର ଧର୍ମ ମୁଖ୍ୟତଃ ଅତି ପ୍ରାଚୀନ ଓ ଏହାର ଆଦିମ ଆଚାର ସଂହିତା ଏବେ ବି ବଳବତ୍ତର ରହିଛି । ସାମାଜିକ ବିକାଶ ପଦ୍ଧତିରେ ଯେତେ ପରିବର୍ତ୍ତନ ହେଲେ ବି ଭାରତୀୟ ସମାଜରେ ଆଦିମ ସମାଜର କେତେକ ବିଧିବିଧାନ ଏବେବି ଦୃଷ୍ଟିଗୋଚର ହେଉଛି । ଏହି ପୃଷ୍ଠଭୂମିରେ ଅସଗୋତ୍ର (Exogamy) ବିବାହ ବ୍ୟବସ୍ଥା ପ୍ରତି ମୁଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ପ୍ରାଚୀନ ସମାଜରେ ଅସଗୋତ୍ର ବିବାହ ପ୍ରଥା ଏତେ ଜଣାଶୁଣା ଯେ ତାହାର ବର୍ଣ୍ଣନା କରିବାର କୌଣସି ଆବଶ୍ୟକତା ନାହିଁ ଅବଶ୍ୟ ସଭ୍ୟତାର ବିକାଶ ସହିତ ଅସଗୋତ୍ର ବିବାହ ଗୁରୁତ୍ୱ ହରାଇଛି ଏବଂ ନିହାତି ରକ୍ତ ସମ୍ପର୍କକୁ ଛାଡ଼ିଦେଲେ ବିବାହ ସମ୍ପର୍କ ପାଇଁ ସେପରି କିଛି ସାମାଜିକ କଟକଣା ନାହିଁ । କିନ୍ତୁ ଭାରତୀୟ ସମାଜରେ ଅସଗୋତ୍ର ବିବାହକୁ ନିଷେଧ କରାଯାଇଛି । ଭାରତୀୟ ସମାଜରେ ଅଦ୍ୟାବଧି ବଂଶଗତ ବ୍ୟବସ୍ଥା ଚାଲୁରହିଛି ଯଦିବା ଏକ ନିର୍ଦ୍ଦିଷ୍ଟ ବଂଶ ଆଉ ନାହିଁ । ଅସଗୋତ୍ର ବିବାହ ନିୟମ ଆଧାର ଉପରେ ବିବାହ ପର୍ଯ୍ୟବସିତ ରହିଛି । କେବଳ ଯେ ରକ୍ତସମ୍ପର୍କ ଭିତରେ ବିବାହକୁ ବାରଣ କରାଯାଇଛି ତା'ନୁହେଁ, ଏପରିକି ଗୋଟିଏ ଶ୍ରେଣୀରେ ସପିଣ୍ଡ ବିବାହକୁ ଅପବିତ୍ର ବୋଲି ନିଆଯାଇଛି ।

ଆପଣମାନଙ୍କୁ ଏଠାରେ ଗୁରୁତ୍ୱର ସହ ସ୍ମରଣ ରଖିବାକୁ ହେବ ଯେ ସଗୋତ୍ର ବିବାହ ଭାରତୀୟ ଜନଗଣଙ୍କ ମଧ୍ୟରେ ପ୍ରଚଳିତ ନଥିଲା । ଏହାହିଁ ହେଉଛି ବଡ଼

ସମସ୍ୟା । ଭାରତରେ ରହିଥିବା ବିଭିନ୍ନ ଗୋତ୍ର ଓ ଗୋଷ୍ଠୀ ମଧ୍ୟରେ ଗୋତ୍ର ବାହାରେ ବିବାହ କରିବା ପ୍ରଥା ଚଳି ଆସିଥିଲା ଓ କେତେ ପ୍ରକାରର (Totemic) ଗୋଷ୍ଠୀମାନଙ୍କ ମଧ୍ୟରେ ଏହା ଏବେ ମଧ୍ୟ ପ୍ରଚଳିତ ରହିଛି । ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଅସଗୋତ୍ର ବିବାହ ଭାରତୀୟ ସମାଜରେ ସମ୍ପୂର୍ଣ୍ଣ ପ୍ରଚଳିତ ଥିଲା ଓ କେହି ଏହାର ଉଲ୍ଲଂଘନ କରିବା ସମ୍ଭବ ନଥିଲା । ଯଦିବା ସମସ୍ତ ବିବାହ ଜାତି ଭିତରେ ସମ୍ପନ୍ନ ହେଉଛି ତଥାପି ଅସଗୋତ୍ର ବିବାହ ଜାତିଗତ ବ୍ୟବସ୍ଥାରେ ସାର୍ବିକ ଭାବରେ ଗ୍ରହଣ କରାଯାଇଛି । ସଗୋତ୍ର ବିବାହର ଉଲ୍ଲଂଘନ କ୍ଷେତ୍ରରେ ଯେତିକି କଟକଣା ରହିଛି ଅସଗୋତ୍ର ବିବାହ ଉଲ୍ଲଂଘନ କ୍ଷେତ୍ରରେ ତା'ଅପେକ୍ଷା ଅଧିକ କଟକଣା ରହିଛି । ସମସ୍ୟା ହେଉଛି ଅସଗୋତ୍ର ବିବାହ ପ୍ରଚଳନ ଥିବା ଏକ ସମାଜରେ ଜାତିପ୍ରଥା କିପରି ରହିଛି ? କାରଣ ଅସଗୋତ୍ର ବିବାହ ଦ୍ୱାରା ଗୋତ୍ର ଗୋତ୍ର ଓ ବଂଶ ବଂଶ ମଧ୍ୟରେ ମିଶ୍ରଣ ହୋଇଥାଏ । ପରନ୍ତୁ ଆମ ଦେଶରେ ଅସଗୋତ୍ର ବିବାହ ସହିତ ଜାତିପ୍ରଥା ବଳବତ୍ତର ରହିବା ଏକ ଜଟିଳ ପ୍ରଶ୍ନ ଅଟେ । ପରିଣାମତଃ ଭାରତବର୍ଷ ପୃଷ୍ଠଭୂମିରେ ଜାତିର ଉତ୍ପତ୍ତି ଅସଗୋତ୍ର ବିବାହ ଉପରେ ସଗୋତ୍ର ବିବାହ ଆରୋପଣ ଯୋଗୁଁ ହୋଇଛି । ଅସଗୋତ୍ର ବିବାହ ପ୍ରଚଳିତ ଥିବା ଏକ ମୂଳ ସମାଜରେ ସଗୋତ୍ର ବିବାହ ବ୍ୟବସ୍ଥାର ପ୍ରଚଳନ (ଯାହାକି ଜାତି ପ୍ରଥାକୁ ଉଦ୍ରେକ କରାଇଛି) ଏକ ଜଟିଳ ପ୍ରଶ୍ନ ଅଟେ । ବସ୍ତୁତଃ ଅସଗୋତ୍ର ବିବାହ ବ୍ୟବସ୍ଥା ବିରୁଦ୍ଧରେ ସଗୋତ୍ର ବିବାହ ଜନିତ ବ୍ୟବସ୍ଥାକୁ ଲଦିଦେବା କ୍ଷେତ୍ରରେ ଯେଉଁ ପନ୍ଥା ପ୍ରୟୋଗ ହୋଇଛି ତାହାରି ବିଶ୍ଳେଷଣ ଦ୍ୱାରା ଏହି ସମସ୍ୟାର ସମାଧାନ ମିଳିପାରିବ ବୋଲି ମୁଁ ଆଶା କରୁଛି ।

ଅସଗୋତ୍ର ବିବାହ ଉପରେ ସଗୋତ୍ର ବ୍ୟବସ୍ଥାର ଆରୋପଣ ଦ୍ୱାରା ଜାତିପ୍ରଥାର ଉଦ୍ଭବ ହୋଇଛି । କିନ୍ତୁ ଏହା ଏତେ ସହଜ ନୁହେଁ । ଆଲୋଚନା ପାଇଁ ଗୋଟିଏ କାଳ୍ପନିକ ଗୋଷ୍ଠୀର ଜନଗଣଙ୍କୁ ନିଆଯାଉ ଯେଉଁମାନେ କି ଗୋଟିଏ ଜାତି ଭାବରେ ପରିଚିତ ହେବାକୁ ଚାହାନ୍ତି । ଯେଉଁ ବ୍ୟବସ୍ଥା ଦ୍ୱାରା ଏହି ପରିକଳ୍ପିତ ଗୋଷ୍ଠୀଟି ସଗୋତ୍ରୀୟ ହୋଇ ରହିବ ତାହାର ସମ୍ଭାବନାକୁ ବିଚାର କରାଯାଉ । ଯଦି ସେହି ଗୋଷ୍ଠୀଟି ସଗୋତ୍ରୀୟ ହୋଇ ରହିବାକୁ ଚାହିଁବ ତେବେ ଗୋତ୍ର ବାହାରେ ବିବାହକୁ ହୁଏତ ଏହା ନିଷେଧ କରିପାରେ, କିନ୍ତୁ ଯଦି ସେହି ଗୋଷ୍ଠୀ ଭିତରେ ଅସଗୋତ୍ର

ବିବାହ ପରମ୍ପରା ଚଳି ଆସିଥିବ ତେବେ ସେହି ନିଷେଧର କୌଣସି ଅର୍ଥ ରହିବ ନାହିଁ । ଏକତ୍ର ରହିଥିବା ଭିନ୍ନ ଭିନ୍ନ ଗୋଷ୍ଠୀ ପରସ୍ପର ମଧ୍ୟରେ ସମ୍ବନ୍ଧ ସ୍ଥାପନପୂର୍ବକ ସମୟାନୁକ୍ରମେ ଏକ ସମ୍ମିଳିତ ସମାଜର ବ୍ୟକ୍ତି ଭାବରେ ପରିଚତ ହେବାକୁ ଇଚ୍ଛା କରିବା ଏକ ସ୍ୱାଭାବିକ ପ୍ରବୃତ୍ତି ଅଟେ । ଏହି ପ୍ରବୃତ୍ତିକୁ ପ୍ରତିହତ କରି ଜାତିର ଉତ୍ପତ୍ତି ଓ ସ୍ଥିତିକୁ ସୁଦୃଢ଼ କରିବାକୁ ହେଲେ ନିଜର ଗୋଷ୍ଠୀଟିକୁ ଆବଦ୍ଧ କରିବାକୁ ହେବ ଓ ନିଜର ଆବଦ୍ଧ ଗୋଷ୍ଠୀ ବାହାରେ ବିବାହ ସମ୍ବନ୍ଧକୁ ନିଷେଧ କରିବାକୁ ପଡ଼ିବ ।

ଆବଦ୍ଧ ଗୋଷ୍ଠୀର ବ୍ୟକ୍ତିମାନଙ୍କୁ ଗୋଷ୍ଠୀ ବାହାରେ ବିବାହ କରିବାକୁ ବାରଣ କରିବା ଦ୍ୱାରା ଏପରି କେତେକ ସମସ୍ୟା ଗୋଷ୍ଠୀ ଭିତରେ ଦେଖାଯାଏ ଯାହାର ସମାଧାନ ସହଜ ମନେହୁଏ ନାହିଁ । ସାଧାରଣତଃ ଦେଖିଲେ ଗୋଟିଏ ଦଳରେ ନାରୀ ପୁରୁଷଙ୍କର ହାର ମୋଟାମୋଟି ଭାବରେ ସମାନ ଥାଏ ଏବଂ ବୟସ ଦୃଷ୍ଟିରୁ ମଧ୍ୟ ସେମାନଙ୍କ ଭିତରେ ସେହିପରି ସମାନ ହାର ରହିଥାଏ । ଏକ ବାସ୍ତବ ସମାଜରେ ଏହି ସମତା ଥାଏ ଯଦିବା ସମ୍ପୂର୍ଣ୍ଣ ସମାନ ହାର ଅସମ୍ଭବ ମନେହୁଏ । ଗୋଟିଏ ଗୋଷ୍ଠୀ ଗୋଟିଏ ଜାତିରେ ଆବଦ୍ଧ ରହିବାକୁ ଚାହିଁଲେ ଗୋଷ୍ଠୀ ଭିତରେ ନାରୀ ପୁରୁଷର ହାରକୁ ସମାନ ରଖିବା ପ୍ରଧାନ ଲକ୍ଷ୍ୟ ହୋଇପଡ଼େ, ତା ନ ହେଲେ ସଗୋତ୍ରୀୟ ବିବାହ ବ୍ୟବସ୍ଥା ସଫଳ ହୋଇପାରିବ ନାହିଁ । ଅନ୍ୟ ଭାବରେ କହିଲେ ସଗୋତ୍ର ବିବାହ ବ୍ୟବସ୍ଥାକୁ ଦୃଢ଼ କରିବାକୁ ହେଲେ ପ୍ରତ୍ୟେକ ବ୍ୟକ୍ତିକୁ ଜାତି ଭିତରେ ବିବାହର ଅବକାଶ ମିଳୁଥିବା ଆବଶ୍ୟକ, ନହେଲେ ଗୋଷ୍ଠୀର ବ୍ୟକ୍ତିଗଣ ଜାତି ବାହାରେ ଯେ କୌଣସି ଜାଗାରେ ବିବାହ କରିବାକୁ ବାଧ୍ୟ ହେବେ । ଜାତି ଭିତରେ ପ୍ରତ୍ୟେକ ବ୍ୟକ୍ତିକୁ ଦାମ୍ପତ୍ୟ ସୁଯୋଗ ଦେବା ଅର୍ଥ ଜାତି ଭିତରେ ବିବାହ ପ୍ରୟାସୀ ଯୁବକ ଯୁବତୀଙ୍କର ସଂଖ୍ୟା ସମାନୁପାତିକ ରହିବା ଆବଶ୍ୟକ, ଯଦ୍ୱାରା ଗୋଟିଏ ଜାତି ନିଜର ଆବଦ୍ଧ ସ୍ଥିତିକୁ ରକ୍ଷା କରିପାରିବ । ଏହି ଆନୁପାତିକ ସଂଖ୍ୟାକୁ ସମାନ ରଖାଯିବାଦ୍ୱାରା ହିଁ ସଗୋତ୍ରୀୟ ବିବାହକୁ ପ୍ରଚଳନ କରିବା ସମ୍ଭବ ହେବ । ଯଦି ଏହି ସମତା ନରହେ ତେବେ ଜାତି ବ୍ୟବସ୍ଥା ଓ ସଗୋତ୍ର ବିବାହ ଭୁଷୁଡ଼ି ପଡ଼ିବ ।

ବସ୍ତୁତଃ ଜାତିଗତ ବ୍ୟବସ୍ଥାଟି ଜାତିର ବିବାହ ବୟସର ଯୁବକ ଯୁବତୀଙ୍କର ହାରର ବୈଷମ୍ୟକୁ ଦୂର କରିବାକୁ ଉଦ୍ୟମ କରିଥାଏ । କୌଣସି କୃତ୍ରିମ ବିଧାନ ନ ରଖି ପ୍ରକୃତି ଉପରେ ଛାଡ଼ି ଦେଲେ ଏକ ଦମ୍ପତ୍ତି ଏକ ସମୟରେ ମୃତ୍ୟୁବରଣ କରିବା

ଦ୍ୱାରା ଏହି ହାର ସମାନ ରହିପାରିବ । କିନ୍ତୁ ଏହା ଏକ ଅସମ୍ଭବ ଓ ଅବାସ୍ତବ ପ୍ରତିପାଦନ କହିବାକୁ ହେବ । କୌଣସି ସ୍ତ୍ରୀର ସ୍ୱାମୀ ପ୍ରଥମେ ମୃତ୍ୟୁବରଣ କରିବା ଦ୍ୱାରା ସେହି ସ୍ତ୍ରୀକୁ ମଧ୍ୟ ବିଦାୟ ନେବାକୁ ହେବ ନଚେତ ସେ ହୁଏତ ଅନ୍ୟତ୍ର ବିବାହ କରି ସଗୋତ୍ର ବିବାହ ବ୍ୟବସ୍ଥାର ଉଲ୍ଲଂଘନ କରିବ । ସେହିପରି ଜଣଙ୍କର ପତ୍ନୀ ମୃତ୍ୟୁବରଣ କଲେ ସେ ଗୋଷ୍ଠୀ ଭିତରେ ବଳକା ହୋଇଥାନ୍ତି । ସେ ବିପତ୍ନୀକ ହେଇଥିବା ଯୋଗୁଁ ତାଙ୍କ ପ୍ରତି ସମବେଦନା ପ୍ରକାଶ କଲେ ମଧ୍ୟ ସେ ବିଦାୟ ନେବା ଦରକାର । ନଚେତ୍ ହୁଏତ ସେ ଜାତି ବାହାରେ ବିବାହ କରିବାଦ୍ୱାରା ସଗୋତ୍ର ବିବାହ ବ୍ୟବସ୍ଥା ପ୍ରତି ବିପଦ ଦେଖାଯିବ । ମୋଟାମୋଟି କହିଲେ ଏହିପରି ବଳକା ହେଉଥିବା ନାରୀ ବା ପୁରୁଷ ଜାତି ଭିତରେ ସମସ୍ୟା ସୃଷ୍ଟି କରିପାରନ୍ତି । କାରଣ ସେମାନେ ନିଜର ଆବଦ୍ଧ ପରିଧିଟି ଭିତରେ ବିବାହ କରିବାର ସୁଯୋଗ ନ ପାଇଲେ ଜାତି ବାହାରେ ବିବାହ କରିବାକୁ ବାଧ୍ୟ ହେବେ । ସୁତରାଂ ଯଦି ଏ କ୍ଷେତ୍ରରେ ସୁପରିକଳ୍ପିତ ବ୍ୟବସ୍ଥା ନ ରୁହେ, ତେବେ ବ୍ୟକ୍ତିଗତ ସ୍ତରରେ ଏହି ସମ୍ଭାବନା ସୃଷ୍ଟି ହେବ । ଏପରି ସମ୍ଭାବନା କ୍ଷେତ୍ରରେ ସେମାନଙ୍କ ସନ୍ତାନ ସନ୍ତତି ଜାତିର ପରିସରଭୁକ୍ତ ହୋଇପାରନ୍ତି ନାହିଁ ।

ଆମର ଏହି କାଳ୍ପିକ ଗୋଷ୍ଠୀ ସମ୍ପର୍କରେ ବିଚାର କଲାବେଳେ ବଳକା ରହିଯାଉଥିବା ନାରୀ, ପୁରୁଷମାନଙ୍କର ସ୍ଥିତି କିପରି ହେବ ତାହା ଦେଖାଯାଉ । ପ୍ରଥମେ ବଳକା ମହିଳାମାନଙ୍କ କଥା ବିଚାରକୁ ନିଆଯାଉ । ଜଣେ ବଳକା ମହିଳାଙ୍କର ସମସ୍ୟାକୁ ଦୁଇଟି ଉପାୟରେ ସମାଧାନ କରାଯାଇପାରିବ ଯଦ୍ୱାରା ଜାତିର ସଗୋତ୍ର ବିବାହକୁ ରକ୍ଷା କରାଯାଇପାରିବ ।

ପ୍ରଥମ ସମାଧାନଟି ହେଉଛି ଜଣେ ମହିଳାଙ୍କର ସ୍ୱାମୀର ମୃତ୍ୟୁ ହେଲେ ତାଙ୍କ ସ୍ୱାମୀଙ୍କର ଚିତାରେ ତାଙ୍କୁ ମଧ୍ୟ ଦାହ କରାଯାଇପାରେ । ନାରୀ ପୁରୁଷର ହାରକୁ ସମାନ ରଖିବା ପାଇଁ ଏହା ଏକ ଅବାସ୍ତବ ସମାଧାନ ହେବ । କେତେକ କ୍ଷେତ୍ରରେ ଏହା ସଫଳ ହୋଇପାରେ କିନ୍ତୁ ଅନ୍ୟ କ୍ଷେତ୍ରରେ ନୁହେଁ । ଏହି ସମାଧାନଟି ଯେତେ ସହଜ ମନେହେଲେ ବି ଏହା ବାସ୍ତବ ପକ୍ଷେ କାର୍ଯ୍ୟକାରୀ ହେବା ଅତି ଜଟିଳ ଅଟେ । ଫଳରେ ବଳକା ମହିଳାଙ୍କୁ (ବିଧବା) ବିଦାୟ ନ ଦେଲେ ସେ ଗୋଷ୍ଠୀ ଭିତରେ ରହିବେ ଓ ତାଙ୍କ ଉପସ୍ଥିତି ଦୁଇଟି ସମସ୍ୟା ସୃଷ୍ଟି କରିବ । ସେ ହୁଏତ ଜାତି ବାହାରେ ବିବାହ କରିବେ ଫଳରେ ସଗୋତ୍ର ବ୍ୟବସ୍ଥାଟିର ଲଂଘନ ହେବ ଅଥବା ସେ ଜାତି

ଭିତରେ ଜଣକୁ ବିବାହ କରିବା ଦ୍ୱାରା ଅନ୍ୟ ଜଣେ ମହିଳା ବିବାହ ପ୍ରତିଯୋଗିତାରେ ବିଫଳ ହେବ । ଏହି ପ୍ରତ୍ୟେକଟି ସ୍ଥିତିରେ ବ୍ୟବସ୍ଥାଟି ପ୍ରତି ବିପଦ ଆସିବ, ଯଦି ସେ ନିଜ ସ୍ୱାମୀର ଚିତାରେ ଆତ୍ମାହୁତି ନ ଦିଅନ୍ତି ।

ଅନ୍ୟ ସମାଧାନଟି ହେଉଛି ଜଣେ ବିଧବା ତାଙ୍କର ଅବଶିଷ୍ଟ ଜୀବନ ପାଇଁ ବୈଧବ୍ୟକୁ ନେଇ ବଞ୍ଚିରହିବା । ବସ୍ତୁନିଷ୍ଠ ପରିଣାମ ଦୃଷ୍ଟିରୁ ଦେଖିଲେ ବୈଧବ୍ୟ ଅପେକ୍ଷା ଆତ୍ମାହୁତି ଏକ ଉତ୍ତମ ସମାଧାନ ବୋଲି ମନେ ହୋଇପାରେ । ଏହାଦ୍ୱାରା ଜଣେ ବିଧବାଙ୍କ ସହିତ ଯେଉଁ ତିନୋଟି ପରିଣାମ ସମ୍ଭାବନା ରହିଛି ତାହା ଦୂର ହୋଇପାରିବ । ବିଧବା ମହିଳା ନିଜ ଜାତି ଭିତରେ ବା ବାହାରେ ବିବାହ କରି ପ୍ରତ୍ୟେକ କ୍ଷେତ୍ରରେ ଜାତିର ସ୍ଥିତି ପାଇଁ ଯେଉଁ ସମସ୍ୟା ସୃଷ୍ଟି କରିବେ ତାହା ରହିବ ନାହିଁ । କିନ୍ତୁ ଆତ୍ମାହୁତି ଅପେକ୍ଷା ବାଧ୍ୟତାମୂଳକ ବୈଧବ୍ୟକୁ ନେଇ ବଞ୍ଚିରହିବା ଅଧିକ ବାସ୍ତବ ଅଟେ । ଏ କ୍ଷେତ୍ରରେ ବିଧବା ବିବାହକୁ ବାରଣ କରିବା ଦ୍ୱାରା ବୈଧବ୍ୟକୁ ନେଇ ବଞ୍ଚି ରହିବା ଆତ୍ମାହୁତି ଦେବା ଅପେକ୍ଷା ଅଧିକ ମାନବିକ ଅଟେ । କିନ୍ତୁ ଏହାଦ୍ୱାରା ଗୋଷ୍ଠୀର ନୈତିକ ଜୀବନ ହୁଏତ ବାଧାପ୍ରାପ୍ତ ହେଇପାରେ । ଜଣେ ବିଧବା ମହିଳା ସାମାଜିକ ତାଡ଼ନାର ବଶବର୍ତ୍ତୀ ହୋଇ ପୁନଶ୍ଚ ବିବାହ କରିବାର ଆକାଙ୍‌କ୍ଷାକୁ ପରିହାର କରିବା ଦ୍ୱାରା ହୁଏତ ତାହାର ପ୍ରାକୃତିକ ଅଧିକାରକୁ ଜଳାଞ୍ଜଳି ଦେଇପାରେ, କିନ୍ତୁ ତାଦ୍ୱାରା ସମାଜରେ ଅନୈତିକ ଚରିତ୍ର ବୃଦ୍ଧିପାଏ । କିନ୍ତୁଏହା ଏକ ଅଲଂଘ୍ୟ ସସସ୍ୟା ନୁହେଁ । ହୁଏତ ଜଣେ ବିଧବା ମହିଳାଙ୍କୁ ଏପରି ସାମାଜିକ କଟକଣା ଭିତରେ ନିକ୍ଷେପ କରାଯାଏ ଯଦ୍ୱାରା ତାଙ୍କ ପ୍ରତି କୌଣସି ଆକର୍ଷଣ ରହେନାହିଁ ।

ଗୋଟିଏ ଗୋଷ୍ଠୀ ନିଜକୁ ଏକ ଜାତି ଭାବେ ସୁଦୃଢ଼ କରିବା କ୍ଷେତ୍ରରେ ବିପତ୍ନୀକ ପୁରୁଷମାନଙ୍କର ସମସ୍ୟାକୁ ସମାଧାନ କରିବା କଷ୍ଟସାଧ ମନେହୁଏ । ଗୋଷ୍ଠୀର ଜାତି ଭିତରେ ବିଧବା ମହିଳାଙ୍କ ଅପେକ୍ଷା ବିପତ୍ନୀକ ପୁରୁଷମାନଙ୍କର ସମସ୍ୟା ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ଜଟିଳ ଜଣାପଡ଼େ । ସଭ୍ୟତାର ଆଦିମ ପର୍ଯ୍ୟାୟରୁ ନାରୀମାନଙ୍କ ଅପେକ୍ଷା ପୁରୁଷମାନେ ପ୍ରାଧାନ୍ୟ ନେଇ ଆସିଛନ୍ତି । ନାରୀମାନଙ୍କ ତୁଳନାରେ ପ୍ରତ୍ୟେକ ଗୋଷ୍ଠୀରେ ପୁରୁଷମାନଙ୍କର ଆଧିପତ୍ୟ ପ୍ରାୟ ଅଧିକ । ସୁତରାଂ ପୁରୁଷମାନଙ୍କର ପ୍ରାଧାନ୍ୟତା ହେତୁ ପୁରୁଷମାନଙ୍କର ମତ ହିଁ ସର୍ବଦା ଗୁରୁତ୍ୱପୂର୍ଣ୍ଣ ହୋଇରହିଛି । ଅପର ପକ୍ଷରେ ଧର୍ମଗତ, ସାମାଜିକ ଓ ଆର୍ଥିକ ମାନଦଣ୍ଡରୁ ନାରୀମାନେ ନାନା ଅନ୍ୟାୟପୂର୍ଣ୍ଣ ନିଷେଧର ଶିକାର ହୋଇଛନ୍ତି । କିନ୍ତୁ

ପୁରୁଷମାନେ ନାନା ବିଧିବିଧାନ କରି ନାରୀମାନଙ୍କ ଅପେକ୍ଷା ପ୍ରାଧାନ୍ୟ ନେଇ ଆସିଛନ୍ତି । ଫଳରେ ଗୋଟିଏ ଜାତି ଭିତରେ ବଳକା ମହିଳାଙ୍କ ପ୍ରତି ଯେଉଁ ବ୍ୟବସ୍ଥା ରହିଛି ସେହି ବ୍ୟବସ୍ଥା ବଳକା ପୁରୁଷଙ୍କ ପାଖରେ ପ୍ରୟୋଗ ହେବା ସମ୍ଭବପର ନୁହେଁ ।

ଜଣେ ମହିଳାଙ୍କ ମୃତ୍ୟୁ ସହିତ ତାଙ୍କ ସ୍ୱାମୀଙ୍କୁ ପୋଡ଼ି ମାରିଦେବା ଦୁଇଟି କାରଣ ଯୋଗୁଁ ଅସମ୍ଭବ ଅଟେ । ଯେହେତୁ ପୁରୁଷ ପ୍ରାଧାନ୍ୟତା ରହିଛି ତେଣୁ ଏହା ସମ୍ଭବ ନୁହେଁ, ଦ୍ୱିତୀୟରେ ଯଦିବି ଏହା କରାଯାଏ ତେବେ ଜାତିର ଏକ ବଳଶାଳୀ ବ୍ୟକ୍ତିକୁ ହରାଇବାକୁ ହୁଏ । ଏହି ପରିସ୍ଥିତିରେ ଏହି ସମସ୍ୟାର ସହଜ ସମାଧାନ ଦୁଇଟି ପନ୍ଥା ମାଧ୍ୟମରେ କରାଯାଇପାରେ । 'ସହଜରେ' କହିବାର ତାତ୍ପର୍ଯ୍ୟ ହେଉଛି ଏହା ପୁରୁଷ ଗୋଷ୍ଠୀ ପ୍ରତି ଉପାଦେୟ ଅଟେ ।

ଦଳ ଭିତରେ ପୁରୁଷର ପ୍ରାଧାନ୍ୟ ଯେପରି ରହିଛି ସଗୋତ୍ର ବ୍ୟବସ୍ଥାର ଗୁରୁତ୍ୱ ତାଠାରୁ ଅଧିକ ରହିଛି । ଏହି ପରିସ୍ଥିତିରେ ଜଣେ ବିପତ୍ନୀକ ପୁରୁଷଙ୍କୁ ଜଣେ ବିଧବାଙ୍କ ଭଳି ତାଙ୍କର ଅବଶିଷ୍ଟ ଜୀବନ ପାଇଁ ଆଉ ପତ୍ନୀ ଗ୍ରହଣ ନକରି ରହିବା ପାଇଁ ବାଧ୍ୟ କରାଯାଇପାରେ । ଏହି ସମାଧାନଟି ସେପରି ଜଟିଳ ନୁହେଁ । କାରଣ କେତେକ କୌଣସି ବାଧ୍ୟ ବାଧକତା ବ୍ୟତୀତ ହିଁ ସ୍ୱେଚ୍ଛାକୃତ ଭାବରେ ବିପତ୍ନୀକ ରହିବାକୁ ନିଷ୍ପତ୍ତି କରିପାରନ୍ତି । ଏପରିକି ଆଉ ପାଦେ ଆଗକୁ ଯାଇ କିଏ କିଏ ସଂସାରର ସମସ୍ତ ସୁଖ ସମ୍ଭୋଗକୁ ପରିତ୍ୟାଗ କରି ଦେଇପାରନ୍ତି । କିନ୍ତୁ ମଣିଷ ପ୍ରକୃତିକୁ ଦେଖିଲେ ଏହି ସମାଧାନ ଯେ ବାସ୍ତବରେ ସମସ୍ତଙ୍କ ପାଇଁ ଫଳପ୍ରଦ ହେବ ତାହା କୁହାଯାଇ ପାରିବ ନାହିଁ । ଅପର ପକ୍ଷରେ, ଯାହାକି ସାଧାରଣତଃ ଦେଖାଯାଏ, ବଳକା ପୁରୁଷଟି ଯଦି ଦଳ ମଧ୍ୟରେ ରହି ସମସ୍ତ ସାମାଜିକ କାର୍ଯ୍ୟକଳାପରେ ଅଂଶୀଦାର ହୋଇ ରହେ ତେବେ ଦଳର ନୈତିକ ଆଦର୍ଶ ପ୍ରତି ସେ ହୁଏତ ବିପଦ ସୃଷ୍ଟି କରିପାରେ । ଅନ୍ୟ ଏକ ଦୃଷ୍ଟିରୁ ଦେଖିଲେ ବ୍ରହ୍ମଚର୍ଯ୍ୟ ପାଳନ ସଫଳ ହେଉଥିବା କ୍ଷେତ୍ରକୁ ଛାଡ଼ିଦେଲେ ଜାତିର ଭୌତିକ ଅଗ୍ରଗତି କ୍ଷେତ୍ରରେ ଏହା ସୁବିଧାଜନକ ମନେହୁଏ ନାହିଁ । ଯଦି ବିପତ୍ନୀକ ପୁରୁଷଟି ବ୍ରହ୍ମଚର୍ଯ୍ୟ ପାଳନ କରି ସନ୍ନ୍ୟାସ ଗ୍ରହଣ କରେ ତେବେ ଜାତିର ସଗୋତ୍ର ବିବାହ ବ୍ୟବସ୍ଥା ପ୍ରତି କିମ୍ବା ଦଳର ନୈତିକତା ପ୍ରତି କୌଣସି ବିପଦ ସୃଷ୍ଟି କରିବ ନାହିଁ । ପରନ୍ତୁ ତାହା ନକରି ଯଦି ସେ ଗୋଷ୍ଠୀ ଭିତରେ ରହି ସାଧାରଣ ଜୀବନ

ଯାପନ କରେ ତେବେ ସେ ଏହି ସମସ୍ୟା ଆଣିବାରେ ସମ୍ଭାବନା ଥାଏ । ଜାତିର ଭୌତିକ ପ୍ରଗତି ମାନଦଣ୍ଡରୁ ଦେଖିଲେ ଜଣେ ବ୍ରହ୍ମଚାରୀ ହୋଇ ସନ୍ନ୍ୟାସ ଗ୍ରହଣ କରିବା ଓ ପତ୍ନୀର ମୃତ୍ୟୁପରେ ଆତ୍ମାହୁତି ଦେବା ଭିତରେ କୌଣସି ପାର୍ଥକ୍ୟ ନାହିଁ । ଗୋଟିଏ ଜାତି ପ୍ରଚଳିତ ବ୍ୟବସ୍ଥାରେ ନିଜକୁ ଦୃଢ଼ ଓ ଶକ୍ତିଶାଳୀ କରିବାକୁ ହେଲେ ତା'ର ଜନସଂଖ୍ୟା ଅଧିକ ହେବା ଆବଶ୍ୟକ । ଏହି ସଂଖ୍ୟାକୁ ବୃଦ୍ଧି କରିବାକୁ ଚାହିଁବା ଅଥଚ ଜାତିର ବିପତ୍ନୀକ ପୁରୁଷମାନଙ୍କୁ ବ୍ରହ୍ମଚର୍ଯ୍ୟ ନେଇ ରହିବାକୁ କହିବା ଏକ ରକ୍ତଶୂନ୍ୟ ରୋଗୀର ରୋଗକୁ କ୍ଷତ କରି ଭଲ କରିବା ସଦୃଶ ପ୍ରହେଳିକାପୂର୍ଣ୍ଣ ହେବ ।

ସୁତରାଂ ସୈଦ୍ଧାନ୍ତିକ ଓ ବ୍ୟାବହାରିକ ଉଭୟ ଦୃଷ୍ଟିରୁ ବିପତ୍ନୀକ ପୁରୁଷମାନଙ୍କ ଉପରେ ବ୍ରହ୍ମଚର୍ଯ୍ୟ ଲଦିଦେବା ଅବାସ୍ତବ ଓ ଅସମ୍ଭବ । ଜାତିର ସ୍ୱାର୍ଥ ଦୃଷ୍ଟିରୁ ସେହି ବ୍ୟକ୍ତିକୁ ଏକ ଗୃହସ୍ଥ ହୋଇ ରହିବାକୁ ସ୍ୱୀକୃତି ଦେବା ବେଶି ଉପଯୋଗୀ ହେବ । କିନ୍ତୁ ସମସ୍ୟା ହେଉଛି ତାଙ୍କ ପାଇଁ ଜାତି ଭିତରୁ ଏକ ପତ୍ନୀ ଯୋଗାଡ଼ କରିବା । ହୁଏତ ଏହା ସମ୍ଭବ ହୋଇ ନପାରେ କାରଣ କୌଣସି ରୁଦ୍ଧ ଜାତି ଭିତରେ, ଯେଉଁଠି ଲୋକସଂଖ୍ୟା ଅତି ସୀମିତ, ନାରୀ ପୁରୁଷର ହାର ପ୍ରାୟତଃ ସମାନ ଥାଏ । ଫଳରେ ଜଣେ ବିବାହାକାଂକ୍ଷୀ ପୁରୁଷ ଜଣେ ବିବାହ-ପ୍ରୟାସୀ ନାରୀକୁ ବିବାହ କରିପାରେ । କିନ୍ତୁ ଏକ ରୁଦ୍ଧ ଓ ସୀମିତ ଲୋକସଂଖ୍ୟା ବିଶିଷ୍ଟ ଜାତି ବ୍ୟବସ୍ଥା ଭିତରେ ଜଣେ ବ୍ୟକ୍ତି ବିବାହ ବୟସର ଏକାଧିକ ବ୍ୟକ୍ତିକୁ ବିବାହ କରିବା ଲୋକସଂଖ୍ୟାର ହାର ଭିତରେ ସମ୍ଭବ ହେବନାହିଁ । ଏହି ପରିସ୍ଥିତିରେ ବଳକା ବିପତ୍ନୀକ ପୁରୁଷକୁ ତା'ଠାରୁ ବହୁ କମ୍ ବୟସର ଝିଅ ସହିତ ବିବାହ କରିବାକୁ ହେବ ଯଦ୍ଦ୍ୱାରା କି ସେ ଜାତି ଭିତରେ ଆବଦ୍ଧ ରହିପାରିବ । ସମ୍ଭାବ୍ୟ ସମାଧାନଗୁଡ଼ିକ ଭିତରେ ଏହା ସବୁଠାରୁ ଉତ୍ତମ ସମାଧାନ ହେବ । ଏହି ପନ୍ଥାଦ୍ୱାରା ଜାତି ଭିତରୁ ବହିର୍ଗମନକୁ ରୋକାଯିବା ସହିତ ସଗୋତ୍ର ବ୍ୟବସ୍ଥା ଓ ଏହାର ନୈତିକତାକୁ ରକ୍ଷା କରାଯାଇ ପାରିବ ।

ଜାତି ଭିତରେ ଚାରୋଟି ପ୍ରକ୍ରିୟାରେ ନାରୀ-ପୁରୁଷମାନଙ୍କ ହାରରେ ସମତା ରକ୍ଷା କରାଯାଇପାରିବ । ସେହି ପଦ୍ଧତିଗୁଡ଼ିକ ହେଲା (୧) କୌଣସି ପୁରୁଷର ମୃତ୍ୟୁରେ ତା'ର ପତ୍ନୀକୁ ଦାହ କରିଦେବା; (୨) ସ୍ୱାମୀର ମୃତ୍ୟୁପରେ କୌଣସି ମହିଳାଙ୍କୁ ପୁନଶ୍ଚ ବିବାହ କରିବାକୁ ସ୍ୱୀକୃତି ନ ଦେବା; (୩) ଏକ ବିପତ୍ନୀକ ପୁରୁଷକୁ ପୁନଶ୍ଚ ବିବାହ ନକରି ରହିବାକୁ ବାଧ୍ୟ କରିବା; ଓ (୪) ବିବାହ ବୟସ ହୋଇ ନଥିବା

ଜଣେ ଝିଅକୁ ଏକ ବିପତ୍ନୀକ ପୁରୁଷ ସହ ବିବାହ କରାଇବା । ମୁଁ ପୂର୍ବରୁ କହି ରଖିଛି ଯେ ଜଣେ ମହିଳାଙ୍କର ସ୍ୱାମୀର ମୃତ୍ୟୁରେ ତାଙ୍କୁ ପୋଡ଼ି ମାରିବା ଓ ଜଣେ ବିପତ୍ନୀକ ପୁରୁଷଙ୍କୁ ଅବିବାହିତ ରହିବାକୁ ବାଧ୍ୟ କରିବା ସଗୋତ୍ର ବିବାହ ବ୍ୟବସ୍ଥାକୁ ରକ୍ଷା କରିବାରେ ସନ୍ଦେହଜନକ ମନେହୁଏ । କିନ୍ତୁ ସେଗୁଡ଼ିକ ଏ କ୍ଷେତ୍ରରେ ଉପାୟ ଭାବରେ କାର୍ଯ୍ୟ କରିପାରେ । ଉପାୟଗୁଡ଼ିକ କାର୍ଯ୍ୟକାରୀ ହେଲେ ତାହା ଏକ ଲକ୍ଷ୍ୟ ସାଧନ କରେ । ତେବେ ପ୍ରଶ୍ନ ହେଉଛି ଏହି ସାଧନଗୁଡ଼ିକ କେଉଁ ଲକ୍ଷ୍ୟ ହାସଲ କରନ୍ତି ? ସେଗୁଡ଼ିକ ସଗୋତ୍ର ବିବାହ ବ୍ୟବସ୍ଥା ଜାରି ରଖିବା ସହିତ ତାହାକୁ ସୁଦୃଢ଼ କରନ୍ତି । ଜାତିଗୁଡ଼ିକର ଦିଆଯାଇଥିବା ସଂଜ୍ଞାଗୁଡ଼ିକର ବ୍ୟାଖ୍ୟା ପରିପ୍ରେକ୍ଷୀରେ ଜାତି ଓ ସଗୋତ୍ର ବିବାହ ପଦ୍ଧତି ଏକ ଓ ଅଭିନ୍ନ ମନେହୁଅନ୍ତି । ସୁତରାଂ ଏହି ଉପାୟଗୁଡ଼ିକର ପରିଣାମ ହେଉଛି ଜାତି ଏବଂ ଜାତିର ଅସ୍ତିତ୍ୱ ସାଙ୍ଗରେ ଏହି ଉପାୟଗୁଡ଼ିକର ପ୍ରାସଙ୍ଗିକତା ରହିଛି ।

ମୋ ମତରେ ଜାତି ବ୍ୟବସ୍ଥା ଭିତରେ ଏକ ନିର୍ଦ୍ଦିଷ୍ଟ ଜାତିର ଗଠନ ଏହି ପ୍ରକାରେ ହୋଇଥାଏ । ହିନ୍ଦୁ ସମାଜରେ ଜାତି ବ୍ୟବସ୍ଥାର ଉତ୍ପତ୍ତି ସଂକ୍ରାନ୍ତରେ ଏହି କେତେକ ସାମାନ୍ୟୀକରଣକୁ ଛାଡ଼ି ଜାତିମାନଙ୍କର ଗଠନ ସମ୍ପର୍କରେ ଆଲୋଚନା କରାଯାଉ । ଅତୀତରେ ଭାରତୀୟ ସମାଜରେ ଜାତିପ୍ରଥାର ଉତ୍ପତ୍ତି ଓ ଗଠନ ସମ୍ପର୍କରେ ଯେତେ ଆଲୋଚନା ହୋଇଛି ପ୍ରତ୍ୟେକ କ୍ଷେତ୍ରରେ କିଛି ନା କିଛି ତ୍ରୁଟି ହୁଏତ ଦୃଷ୍ଟିଗୋଚର ହୁଏ । ବିଶେଷକରି ଏହି ବ୍ୟବସ୍ଥା ଭାରତୀୟ ସମାଜରେ ଏକ ଅତି ପ୍ରାଚୀନ ବ୍ୟବସ୍ଥା ଅଟେ ଏବଂ ଗୋଟିଏ ପ୍ରାଚୀନ ବ୍ୟବସ୍ଥା ସମ୍ପର୍କରେ ସେପରି କୌଣସି ନିର୍ଭରଯୋଗ୍ୟ ବା ଲିଖିତ ବିବରଣୀ ଦେଖିବାକୁ ମିଳେନାହିଁ । ହିନ୍ଦୁମାନେ ଏପରି ଏକ ମାନସିକତା ପୋଷଣ କରନ୍ତି ଯେ କୌଣସି ଇତିହାସକୁ ଲିପିବଦ୍ଧ କରି ରଖିବା ଏକ ଅବିବେକିତାର କାର୍ଯ୍ୟ, କାରଣ ସେମାନେ ସଂସାରକୁ ମାୟା ବୋଲି ଭାବନ୍ତି । ପରନ୍ତୁ ବ୍ୟବସ୍ଥାଗୁଡ଼ିକ ପୁରୁଷାନୁକ୍ରମେ ଗଡ଼ିଚାଲିବା ଦ୍ୱାରା ଯଦିବି ସେଗୁଡ଼ିକ ଲିପିବଦ୍ଧ କରାଯାଏ ନାହିଁ, ସେଗୁଡ଼ିକ ସାମାଜିକ ପରମ୍ପରା ଭାବେ ସୁଦୃଢ଼ ହୋଇଯାଏ । ପରମ୍ପରା ଓ ନୈତିକ ଆଚରଣ ସକଳ ସମାଜରେ ଅଲିଖିତ ବ୍ୟବସ୍ଥା ଭାବରେ ଲୋକ ମାନସରେ ସୁଦୃଢ଼ ହୋଇଥିଲେ ସେଥିରୁ ସେମାନଙ୍କର ଇତିହାସ ଅନୁମାନ କରାଯାଏ । ଏହି ଆଲୋଚନା ସତ୍ୟ ହେଲେ ଆମର ଉଦ୍ଦେଶ୍ୟ ଯଥାର୍ଥରେ ସାଧିତ ହୋଇପାରିବ ।

ଅନ୍ତତଃ ବଳକା ପୁରୁଷ ଓ ମହିଳାମାନଙ୍କର ସମସ୍ୟାକୁ ହିନ୍ଦୁସମାଜରେ ଦିଆଯାଇଥିବା ସମାଧାନ ପରିପ୍ରେକ୍ଷୀରେ ବିଷୟଟିର ଯଥାର୍ଥ ଅବଧାରଣା ସମ୍ଭବ ହେବ ।

ସମସ୍ୟାଟି ଯେତେ ଜଟିଳ ମନେହେଲେ ବି ହିନ୍ଦୁ ସମାଜର ପରିଚାଳନା କ୍ଷେତ୍ରରେ ଜଣେ ସାଧାରଣ ଗବେଷକ ତିନୋଟି ଅନୈତିକ ପରମ୍ପରା ଦେଖିବ । ସେଗୁଡ଼ିକ

(୧) କୌଣସି ମୃତ ବ୍ୟକ୍ତିର ଚିତାରେ ତାଙ୍କର ପତ୍ନୀଙ୍କୁ ପୋଡ଼ି ମାରିଦେବା, ଯାହାକୁ ସତୀପ୍ରଥା ଆଖ୍ୟା ଦିଆଯାଇଛି ।

(୨) ବିଧବା ବିବାହକୁ ସମାଜରେ ନିଷେଧ କରାଯାଇଛି । (୩) ବାଲ୍ୟ ବିବାହକୁ ସମାଜରେ ସ୍ୱୀକୃତି ଦିଆଯାଇଛି । ଏତଦ୍‌ବ୍ୟତୀତ ସମାଜରେ ବିପତ୍ନୀକ ପୁରୁଷମାନଙ୍କ ମଧ୍ୟରେ ସନ୍ନ୍ୟାସ ଗ୍ରହଣ କରିବାକୁ ଶ୍ରଦ୍ଧା ସୃଷ୍ଟି ହୋଇଛି, ଯଦିବା କେତେକ କ୍ଷେତ୍ରରେ ଗଭୀର ମାନସିକ ଉଦ୍‌ବେଳନ ଯୋଗୁଁ ସେପରି କେତେକ କରିଥାନ୍ତି ।

ମୁଁ ଯେତେ ଦୂର ଜାଣେ ଉପରୋକ୍ତ ପ୍ରଥାଗୁଡ଼ିକର ଉତ୍ପତ୍ତି ସମ୍ପର୍କରେ ଅଦ୍ୟାବଧି କୌଣସି ବୈଜ୍ଞାନିକ ବିଶ୍ଳେଷଣ ହୋଇନାହିଁ । ଏହି ପ୍ରଥାଗୁଡ଼ିକୁ ଗୌରବାନ୍ୱିତ କରିବା ପାଇଁ ଆମର କେତେ କେତେ ଦର୍ଶନ ରହିଛି, କିନ୍ତୁ ସେମାନଙ୍କର ଉତ୍ପତ୍ତିର କାରଣ ସମ୍ପର୍କରେ ସେପରି କୌଣସି ବ୍ୟାଖ୍ୟା କରାଯାଇ ନାହିଁ । ବ୍ରିଟିଶ୍ ସୋସିଓଲୋଜିକାଲ ରିଭ୍ୟୁ ପତ୍ରିକାର ୧୯୧୩ ଷଷ୍ଠ ସଂଖ୍ୟାରେ ଏ. କେ. କୁମାରସ୍ୱାମୀ ସତୀପ୍ରଥା ସମ୍ପର୍କରେ ଏକ ତାତ୍ତ୍ୱିକ ପ୍ରବନ୍ଧରେ ଲେଖିଛନ୍ତି, "ସ୍ୱାମୀ-ସ୍ତ୍ରୀ ଭିତରେ ଏହା ହେଉଛି ଏକ ଆତ୍ମିକ ମିଳନ, ଯାହା ମୃତ୍ୟୁରେ ମଧ୍ୟ ଅକ୍ଷୁର୍ଣ୍ଣ ରହେ । ଏହା ହେଉଛି ଏକ ପବିତ୍ରତା ନାରୀର ଆଦର୍ଶ ଯାହା ଉମା ନିଜ ମୁଖରେ ପ୍ରକାଶ କରିଛନ୍ତି, "ଜଣେ ନାରୀ ନିଜ ପତିଙ୍କ ପ୍ରତି ସମର୍ପିତ ରହିବା ହେଉଛି ତାଙ୍କ ଜୀବନର ଲକ୍ଷ୍ୟ ଓ ପରମ ସୁଖ । ହେ ମହେଶ୍ୱର ! ତାହାହିଁ ହେଉଛି ଜଣେ ପତ୍ନୀଙ୍କର ସ୍ୱର୍ଗ ସୁଖ । ଯଦି ତୁମେ ମୋ ପ୍ରତି ସନ୍ତୁଷ୍ଟ ନୁହଁ ତେବେ ମୋ ପାଇଁ ସ୍ୱର୍ଗ ସୁଖ ଅତ୍ୟନ୍ତ ତୁଚ୍ଛ ।'' ସେହିପରି ବୈଧବ୍ୟକୁ ବାଧ୍ୟ ହୋଇ ଜୀବନର ଶେଷ ପର୍ଯ୍ୟନ୍ତ ଗ୍ରହଣ କରିବାକୁ କିପରି ଗୌରବମୟ ବୋଲି ଗ୍ରହଣ କରାଯାଏ ତାହା ମୁଁ ବୁଝିପାରେ ନାହିଁ ଯଦିବା ଅନେକ ଏହାକୁ ଗ୍ରହଣ କରିନିଅନ୍ତି । ବାଲ୍ୟ

ବିବାହକୁ ପ୍ରଶଂସା କରି ଡଃ. କେତ୍‌କାର ନିମ୍ନ ଭାବରେ ଉଲ୍ଲେଖ କରିଛନ୍ତି, "ଜଣେ ନିଷ୍ପାପର ପୁରୁଷ ବା ମହିଳା ଅନ୍ୟ ଜଣେ ମହିଳା ବା ପୁରୁଷଙ୍କୁ ଯଥାକ୍ରମେ ଭଲପାଇବା ଉଚିତ ନୁହେଁ । କେବଳ ଯାହାକୁ ବିବାହ କରି ହେବ ତାଙ୍କ ବ୍ୟତୀତ ଅନ୍ୟଙ୍କୁ ଭଲପାଇବା ଅନୁଚିତ । ଏହି ପବିତ୍ରତା କେବଳ ଯେ ବିବାହ ପରେ ନାରୀ-ପୁରୁଷ ମଧ୍ୟରେ ରହିବା ଆବଶ୍ୟକ ତା'ନୁହେଁ, ବରଂ ବିବାହ ପୂର୍ବରୁ ଏହା ରହିବା ଉଚିତ କାରଣ ତାହାହିଁ ହେଉଛି ପବିତ୍ରତାର ମାନଦଣ୍ଡ । ଜଣେ ଝିଅ ଯାହାକୁ ବିବାହ କରିବ ତା'ବ୍ୟତୀତ ଅନ୍ୟ କାହାକୁ ଭଲପାଇବା ପବିତ୍ରତା ନୁହେଁ । ଯେହେତୁ ସେ କାହାକୁ ବିବାହ କରିବ ତାହା ଜାଣେନାହିଁ, ତେଣୁ ବିବାହ ପୂର୍ବରୁ କୌଣସି ବ୍ୟକ୍ତିକୁ ଭଲପାଇବା ଏକ ଗର୍ହିତ କାର୍ଯ୍ୟ । ଯଦି ତାହା ସେ କରେ ଏହାକୁ ପାପ ବୋଲି ଧରାଯିବ । ସୁତରାଂ କୌଣସି ଝିଅର ବିବାହ ବୟସ ବା ଯୌନ ଭାବନା ଆସିବାର ବହୁ ପୂର୍ବରୁ ତା'ର ବିବାହ ହେବା ଆବଶ୍ୟକ ।" ସୁତରାଂ ବାଲ୍ୟ ବିବାହ ସମାଜରେ ସୃଷ୍ଟି ହୋଇଛି ।

ଏହି ବ୍ୟବସ୍ଥାଗୁଡ଼ିକ ସପକ୍ଷରେ ଯେତେ ଯୁକ୍ତି ଦିଆଯାଇ ସେଗୁଡ଼ିକୁ ଆଡ଼ମ୍ବରପୂର୍ଣ୍ଣ କରାଗଲେ ବି ସେଗୁଡ଼ିକ ଭ୍ରାନ୍ତିପୂର୍ଣ୍ଣ । ପ୍ରଦତ୍ତ ଯୁକ୍ତିଗୁଡ଼ିକ ସମାଜରେ ସେସବୁ କାହିଁକି ଚଳି ଆସିଛି ତାହା ବ୍ୟାଖ୍ୟା କରୁନାହିଁ । ମୋ ମତରେ ଯେହେତୁ ସେଗୁଡ଼ିକ କାର୍ଯ୍ୟକାରୀ ହେଲା ତେଣୁ ସେଗୁଡ଼ିକୁ ଗୌରବାନ୍ୱିତ କରାଗଲା । ଅଷ୍ଟାଦଶ ଶତାବ୍ଦୀରେ ପ୍ରବର୍ତ୍ତିତ ଥିବା ବ୍ୟକ୍ତିବାଦ ବିଚାର ସହିତ ଯେଉଁମାନେ ପରିଚିତ ଥିବେ ସେମାନେ ମୋର ମତାମତକୁ ଗ୍ରହଣ କରିବେ । ସବୁ ସମୟରେ କୌଣସି ଏକ ଆନ୍ଦୋଳନ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ ଏବଂ ତାକୁ ଆଧାର କରି ଯେଉଁ ବୈଚାରିକ ସିଦ୍ଧାନ୍ତଗୁଡ଼ିକ ଆସିଥାଏ ବା ପରେ ସୃଷ୍ଟି ହୋଇଥାଏ ତାହା ସେହି ଆନ୍ଦୋଳନକୁ ନୈତିକ ସମର୍ଥନ ଦେଇଥାଏ । ପରମ୍ପରାଗୁଡ଼ିକୁ ପ୍ରଶଂସା କରାଯିବାରୁ ଏହା ଅନୁମିତ ହୁଏ ଯେ ସେଗୁଡ଼ିକର ସ୍ଥାୟିତ୍ୱ ପାଇଁ ସେଗୁଡ଼ିକୁ ଆଦର କରାଯାଇଛି । ସେଗୁଡ଼ିକ କିପରି ସୃଷ୍ଟି ହେଲା ଏହି ପ୍ରଶ୍ନ ଉପରେ ମୋର ମତ ହେଉଛି ଜାତି ବ୍ୟବସ୍ଥାର ଗଠନ କ୍ଷେତ୍ରରେ ସେଗୁଡ଼ିକ ଆବଶ୍ୟକ ଥିଲା ଏବଂ ସେଗୁଡ଼ିକର ପ୍ରଶଂସା କ୍ଷେତ୍ରରେ ଯେଉଁ ଦର୍ଶନର ଅବତାରଣା କରାଯାଇଥିଲା ତାହା ସେଗୁଡ଼ିକୁ ଅଧିକ ଗ୍ରହଣଯୋଗ୍ୟ କରିବାରେ ଉଦ୍ଦିଷ୍ଟ ଥିଲା । ଏକ ଘୃଣିତ ଓ ପୀଡ଼ାଦାୟକ ବ୍ୟବସ୍ଥାକୁ ସରସ ସୁନ୍ଦର କରିବା ପାଇଁ ସେଗୁଡ଼ିକୁ ଚମତ୍କାର ଯୁକ୍ତିଦ୍ୱାରା ମଣ୍ଡିତ କରାଗଲା । ଏହି ପରମ୍ପରାଗୁଡ଼ିକ ବାସ୍ତବରେ ଏକ ଲକ୍ଷ୍ୟ ଦିଗରେ ସାଧନ

ମାତ୍ର ଥିଲା ଯଦିବା ସେଗୁଡ଼ିକୁ ଆଦର୍ଶ ଭାବରେ ଉପସ୍ଥାପନା କରାଗଲା । କିନ୍ତୁ ସେହି ସାଧନ ଗୁଡ଼ିକରୁ ଯେଉଁ ପରିଣାମ ଉତ୍ପନ୍ନ ହେଲା ସେ ସମ୍ପର୍କରେ ଆମେ ଆଖି ବୁଜିଦେବା ଠିକ୍ ନୁହେଁ । ଜଣେ ନିରାପଦରେ କହିପାରିବ ଯେ ସାଧନଗୁଡ଼ିକୁ ଆଦର୍ଶ ରୂପ ଦେବାଦ୍ୱାରା ସେଗୁଡ଼ିକୁ ଗ୍ରହଣ କରିବାରେ ଅଧିକ ପ୍ରେରଣା ମିଳିଲା ତଥା ସେଗୁଡ଼ିକ ଅଧିକ କାର୍ଯ୍ୟକ୍ଷମ ହେଲା । କୌଣସି ସାଧନକୁ ଲକ୍ଷ୍ୟ କହିବା ଦ୍ୱାରା ହୁଏତ ଅସୁବିଧା ନ ହୋଇପାରେ, କିନ୍ତୁ ଏହାଦ୍ୱାରା ଏହାର ଯଥାର୍ଥ ସ୍ୱରୂପ ସ୍ପଷ୍ଟ ହୋଇ ନ ଥାଏ । ଅର୍ଥାତ୍ ଏକ ସାଧନ ଯଥାର୍ଥରେ ସାଧନ ହୋଇ ରହେ ଓ ତାହାର ବାସ୍ତବ ସ୍ୱରୂପରୁ ବିଚ୍ୟୁତି ହୁଏନାହିଁ । ଏକ ସାଧନକୁ ଲକ୍ଷ୍ୟ ଭାବରେ ନିଆଯାଇପାରେ ଯେପରିକି ହୁଏତ ବିରାଡ଼ିମାନଙ୍କୁ କୁକୁର କହିବା ପାଇଁ ଏକ ନିୟମକୁ ସ୍ୱୀକୃତି ଦିଆଯାଇ ପାରେ । କିନ୍ତୁ ତାହାଦ୍ୱାରା ସାଧନର ସ୍ୱରୂପକୁ ପରିବର୍ତ୍ତନ କରାଯାଇପାରିବ ନାହିଁ ଯେପରିକି ବିରାଡ଼ିମାନଙ୍କୁ କୁକୁର କହିବାଦ୍ୱାରା ସେମାନଙ୍କର ସ୍ୱଭାବକୁ କୁକୁର ସ୍ୱଭାବରେ ପରିଣତ କରିହେବ ନାହିଁ । ପରିଣାମତଃ ସତୀପ୍ରଥା, ବିଧବା ବିବାହ ନିଷେଧ ଓ ବାଲ୍ୟ ବିବାହ ପ୍ରଥାଗୁଡ଼ିକୁ ସାଧନ ବା ଲକ୍ଷ୍ୟ ଯେଉଁ ଭାବରେ ନେଲେ ବି ସେଗୁଡ଼ିକ ଜାତି ଭିତରେ ବଳକା ପୁରୁଷ ବା ସ୍ତ୍ରୀ ସମସ୍ୟାକୁ ସମାଧାନ କରି ସଗୋତ୍ର ବିବାହ ବ୍ୟବସ୍ଥାକୁ ପ୍ରତିଷ୍ଠିତ କରିବା କ୍ଷେତ୍ରରେ ଉଦ୍ଦିଷ୍ଟ ଥିଲା । ଏହି ପ୍ରଥାଗୁଡ଼ିକ ବ୍ୟତୀତ ସଗୋତ୍ର ବିବାହ ବ୍ୟବସ୍ଥାକୁ ନିଷ୍ଠାର ସହ ରକ୍ଷାକରିବା ସମ୍ଭବ ହୋଇ ନପାରେ । ସଗୋତ୍ର ବିବାହ ବ୍ୟତୀତ ଜାତି ବ୍ୟବସ୍ଥା ଅସମ୍ଭବ ଅଟେ ।

ଭାରତୀୟ ଜାତି ବ୍ୟବସ୍ଥାର ଗଠନ ଓ ସ୍ଥାୟିତ୍ୱ ବିନ୍ୟାସକୁ ବ୍ୟାଖ୍ୟା କରିବା ପରେ ଅନ୍ୟ ଯେଉଁ ପ୍ରଶ୍ନଟି ଆଲୋଚନା କରିବା ଆବଶ୍ୟକ ତାହା ହେଉଛି ଜାତି ପ୍ରଥାର ଉତ୍ପତ୍ତି । ଉତ୍ପତ୍ତି ପ୍ରଶ୍ନଟି ବେଶ୍ ଜଟିଳ ଓ ବହୁ ସମୟରେ ଏହାକୁ ଏଡ଼ାଇ ଦିଆଯାଏ । କେତେକ ଏହାର ବିଶ୍ଳେଷଣକୁ କୌଶଳତାର ସହ ଫାଙ୍କି ଦେଇଥାନ୍ତି । ଏହାର ବିଶ୍ଳେଷଣ କ୍ଷେତ୍ରରେ କେତେକ ଅସ୍ପଷ୍ଟ ବ୍ୟାଖ୍ୟାମାନ ପ୍ରଦାନ କରନ୍ତି । ଏପରିକି କୁହାଯାଏ ଯେ ଜାତିପ୍ରଥାର "ଉତ୍ପତ୍ତି କହିବା ପରିବର୍ତ୍ତେ ଏହାର 'ଉତ୍ପତ୍ତି ସକଳ' କହିବା ଅଧିକ ସମୀଚୀନ । କିନ୍ତୁ ଏ କ୍ଷେତ୍ରରେ ଜାତିପ୍ରଥାର ଉତ୍ପତ୍ତି ନେଇ ମୋର କୌଣସି ଅସ୍ପଷ୍ଟତା ନାହିଁ । ମୁଁ ପୂର୍ବରୁ କହିସାରିଛି ଯେ ସଗୋତ୍ର ବିବାହ ବ୍ୟବସ୍ଥା

ହେଉଛି ଜାତି ପ୍ରଥାର ଏକ ମୌଳିକ ଲକ୍ଷଣ । ଯେତେବେଳେ ମୁଁ ଜାତିପ୍ରଥାର ଉତ୍ପତ୍ତି ସଂପର୍କରେ କହୁଛି ତଦ୍ୱାରା ସଗୋତ୍ର ବିବାହର ଉତ୍ପତ୍ତି ଓ ବିନ୍ୟାସକୁ ହିଁ ବୁଝୁଛି ।"

ବ୍ୟକ୍ତିମାନଙ୍କର ସମଷ୍ଟିକୁ ନେଇ ସମାଜର ଗଠନ ହୋଇଛି ବୋଲି ଏକ ଅବଧାରଣା ରାଜନୈତିକ ଭାଷଣ ଜରିଆରେ ବହୁଳ ଭାବରେ ପ୍ରଚାର ହୋଇଛି । ଏହି ବିଚାରଟି ଯେତେ ପ୍ରଚାରିତ ହେଲେ ବି ତାହା ଯେ ଏକ ବିଭ୍ରାନ୍ତିକର ସିଦ୍ଧାନ୍ତ ଏହା ନିଃସନ୍ଦେହ । ବ୍ୟକ୍ତିମାନେ ସମାଜ ସୃଷ୍ଟି କରନ୍ତି କହିବା ଏକ ଗୁରୁତ୍ୱହୀନ ଉକ୍ତି ଅଟେ । ବରଂ ଏକ ସମାଜ କେତେକ ଶ୍ରେଣୀକୁ ନେଇ ଗଠିତ କହିବା ଯଥାର୍ଥ ମନେହୁଏ । ଶ୍ରେଣୀ ସଂଘର୍ଷ ଭାବନା ହୁଏତ ଏକ ଅତ୍ୟୁକ୍ତି ମନେ ହୋଇପାରେ କିନ୍ତୁ କୌଣସି ସମାଜରେ ନିର୍ଦ୍ଦିଷ୍ଟ ଶ୍ରେଣୀମାନଙ୍କର ଅବସ୍ଥିତିକୁ ଅସ୍ୱୀକାର କରିହେବ ନାହିଁ, ଯଦିବା ସେମାନଙ୍କର ଆଧାର ପୃଥକ ହୋଇଥାଏ । ସେହି ଶ୍ରେଣୀଗୁଡ଼ିକ ଆର୍ଥିକ, ବୌଦ୍ଧିକ ବା ସାମାଜିକ ଗୋଷ୍ଠୀ ହୋଇପାରନ୍ତି । କିନ୍ତୁ ସମାଜରେ ଏକ ବ୍ୟକ୍ତି ସର୍ବଦା ଏକ ଶ୍ରେଣୀର ଅନ୍ତର୍ଭୁକ୍ତ ଥାଏ । ଏହା ଏକ ସାର୍ବିକ ସତ୍ୟ ଅଟେ ଓ ହିନ୍ଦୁ ସମାଜ ପରିପ୍ରେକ୍ଷୀରେ ଏହି ନିୟମର ବ୍ୟତିକ୍ରମ ମଧ୍ୟ ସମ୍ଭବ ନୁହେଁ । ଯଦି ଆମେ ଏହି ସିଦ୍ଧାନ୍ତଟିକୁ ଗ୍ରହଣ କରିବା, ତେବେ ଜାତିମାନଙ୍କର ଉତ୍ପତ୍ତି ସମ୍ପର୍କରେ ଆମର ବିଶ୍ଳେଷଣ ସହଜ ସାଧ୍ୟ ହେବ । ବସ୍ତୁତଃ ପ୍ରଥମେ ଆମକୁ ଶ୍ରେଣୀର ସ୍ୱରୂପ ସମ୍ପର୍କରେ ବୁଝିବାକୁ ହେବ ଯାହାକି ଏକ ଜାତିରେ ରୂପାନ୍ତରିତ ହେଲା । କାରଣ ଶ୍ରେଣୀ ଓ ଜାତି ପରସ୍ପର ସହ ଘନିଷ୍ଠ ଭାବେ ସମ୍ବନ୍ଧିତ । ଯଦିବା କିଛି ସମୟ ବ୍ୟବଧାନରେ ଉଭୟ ପରସ୍ପରଠାରୁ ପୃଥକ ହୋଇଥାନ୍ତି । ଏକ ରୁଦ୍ଧ ଶ୍ରେଣୀ ହିଁ ହେଉଛି ଜାତି ।

ଜାତିମାନଙ୍କର ଉତ୍ପତ୍ତି ସମ୍ପର୍କୀୟ ପ୍ରଶ୍ନଟି ଅନ୍ୟ ଏକ ପ୍ରଶ୍ନ ଉତ୍‌ଥାପନ କରିଥାଏ । ତାହା ହେଉଛି କେଉଁ ଶ୍ରେଣୀ ନିଜକୁ ଏପରି ରୁଦ୍ଧ କରିବା ସହ ନିଜର ଚତୁଃପାର୍ଶ୍ୱକୁ ସଙ୍କୁଚିତ କରି ରଖିବାକୁ ଚାହିଁଲା ?  ହୁଏତ ଏହି ପ୍ରଶ୍ନଟି ଅଧିକ ଅନୁସନ୍ଧିତ୍ସାପୂର୍ଣ୍ଣ ମନେ ହୋଇପାରେ, କିନ୍ତୁ ଏହା ଗୁରୁତ୍ୱପୂର୍ଣ୍ଣ, କାରଣ ଏହି ପ୍ରଶ୍ନର ଏକ ଯଥାଯଥ ଉତ୍ତର ସମଗ୍ର ଭାରତରେ ଜାତିପ୍ରଥାର ବିକାଶ ଓ ବିନ୍ୟାସ ପ୍ରଶ୍ନଟିକୁ ବୁଝିବା କ୍ଷେତ୍ରରେ ସାହାଯ୍ୟ କରିବ । ଏହି ପ୍ରଶ୍ନର ଏକ ପ୍ରତ୍ୟକ୍ଷ ଉତ୍ତର ଦେବା ମୋର ସାମର୍ଥ୍ୟ ବାହାରେ, କିନ୍ତୁ ମୁଁ ଏହାର ଏକ ପରୋକ୍ଷ ଉତ୍ତର ଦେଇପାରିବି । ମୁଁ ପୂର୍ବରୁ କହିଛି ଯେ ପ୍ରଚଳିତ ପ୍ରଥାଗୁଡ଼ିକ ହିନ୍ଦୁ ସମାଜରେ ଆଗରୁ ରହି ଆସିଥିଲା । ଏହି ଘଟଣାର ତଥ୍ୟକୁ ସ୍ୱୀକାର

କରିବାକୁ ହେଲେ ଏ ସଂକ୍ରାନ୍ତୀୟ ବକ୍ତବ୍ୟକୁ କିଛିଟା ସଂଶୋଧନ କରିବାକୁ ହେବ । ଏହି ପ୍ରଥାଗୁଡ଼ିକ ନିଷ୍ଠାର ସହ ଏକ ନିର୍ଦ୍ଦିଷ୍ଟ ଜାତିରେ ପ୍ରବର୍ତ୍ତିତ ଥିଲା । ସାମାଜିକ ଜାତି ବ୍ୟବସ୍ଥାରେ ବ୍ରାହ୍ମଣମାନେ ହିନ୍ଦୁ ସମାଜରେ ସର୍ବୋଚ୍ଚ ସ୍ଥାନରେ ରହିଥିଲେ । ଏହି ପ୍ରଥାଗୁଡିକ ସେହି ବ୍ରାହ୍ମଣମାନଙ୍କ ମଧ୍ୟରେ ପୂର୍ଣ୍ଣ ଭାବରେ ପ୍ରଚଳିତ ଥିଲା । କାଳକ୍ରମେ ଅବ୍ରାହ୍ମଣ ଜାତିମାନଙ୍କ ଭିତରକୁ ଏହି ପ୍ରଥାଗୁଡ଼ିକ ପ୍ରସାରିତ ହୋଇଆସିଲା, କିନ୍ତୁ ସେଥିରେ କଠୋରତା ନ ଥିଲା । ଏହି ତଥ୍ୟ ସମସ୍ୟାଟିକୁ ବୁଝିବା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଆଧାର ଅଟେ । ଯଦି ଏହି ପ୍ରଥା ଗୁଡ଼ିକ ଅବ୍ରାହ୍ମଣ ଜାତିସମୂହ କ୍ଷେତ୍ରରେ ମୂଳରୁ ନ ଥାଇ ଅନ୍ୟଠାରୁ ପ୍ରସାରିତ ହେଲା ବୋଲି ଧରାଯାଏ, ଯାହାକୁ ଅକ୍ଳେଶରେ ପ୍ରମାଣ କରିହେବ, ତେବେ ଏହି ପ୍ରଥାଗୁଡ଼ିକର ଜନକ କେଉଁ ଜାତି ଥିଲା ତାହା ନିଃସନ୍ଦେହରେ କୁହାଯାଇ ପାରିବ । ବ୍ରାହ୍ମଣ ଶ୍ରେଣୀ କାଳକ୍ରମେ ଏକ ରୁଦ୍ଧ ଜାତି ଭିତରେ କାହିଁକି ପରିଣତ ହେଲା ଏକ ଭିନ୍ନ ପ୍ରଶ୍ନ ଅଟେ, ଯାହାକି ଅନ୍ୟ ପ୍ରସଙ୍ଗରେ ଆଲୋଚନା କରାଯାଇ ପାରିବ । ଗୋଟିଏ ପୂଜକ ଶ୍ରେଣୀ କେତେକ ନିର୍ଦ୍ଦିଷ୍ଟ ପ୍ରଥାକୁ ଆଶ୍ରୟ କରିବା ଫଳରେ ତଥା ସମାଜରେ ନିଜର ପ୍ରଭୁତ୍ୱ ବିସ୍ତାର କରିବା ଦ୍ୱାରା ସେମାନେ ଏକ ଅହମିକାପୂର୍ଣ୍ଣ ସ୍ଥିତିକୁ ବଳବତ୍ତର କଲେ । ଯେକୌଣସି ପ୍ରାଚୀନ ସଭ୍ୟତାରେ ପୂଜକ ଶ୍ରେଣୀ ନିଜର ଆଧିପତ୍ୟ ବିସ୍ତାର କରିଛନ୍ତି । କିନ୍ତୁ ଭାରତୀୟ ସମାଜ ପରିପ୍ରେକ୍ଷୀରେ କେତେକ ଅପ୍ରାକୃତିକ ସାଧନ ଦ୍ୱାରା ସେମାନେ ଅପ୍ରାକୃତିକ ଅନୁଷ୍ଠାନର ଭିତ୍ତି ସ୍ଥାପନ କରିବା ସହ ଏହାକୁ ଧରି ରଖିଛନ୍ତି ।

ମୋ ନିବନ୍ଧର ତୃତୀୟ ଭାଗରେ ସମଗ୍ର ଭାରତବର୍ଷରେ ଜାତି ବ୍ୟବସ୍ଥାର ବିକାଶ ଓ ପ୍ରସାର କିପରି ହୋଇଛି ମୁଁ ବର୍ତ୍ତମାନ ତାହା ଉପରେ ଆଲୋଚନା କରିବି । ଜାତି ବ୍ୟବସ୍ଥା କିପରି ଦେଶର ଅବ୍ରାହ୍ମଣମାନଙ୍କ ଭିତରେ ପ୍ରସାର ଲାଭ କଲା ତାହା ଦେଖାଯାଉ । ଜାତି ବ୍ୟବସ୍ଥାର ଉତ୍ପତ୍ତି ଅପେକ୍ଷା ସମଗ୍ର ଭାରତରେ ଏହାର ପ୍ରସାର ସଂକ୍ରାନ୍ତୀୟ ପ୍ରଶ୍ନଟି ଏକ ଗୁରୁତର ପରିଣାମଦ୍ୱାରା ଆକ୍ରାନ୍ତ ହୋଇଛି । ମୋ ମତରେ ଏହାର ଉତ୍ପତ୍ତି ଓ ପ୍ରସାର ଏହି ଦୁଇଟି ପ୍ରଶ୍ନକୁ ପୃଥକ କରି ବିଚାର କରାଯାଇ ନାହିଁ । ତାହାର କାରଣ ହେଉଛି ଆଲୋଚକମାନେ ଧରି ନେଇଥାନ୍ତି ଯେ ଜାତି ବ୍ୟବସ୍ଥା ଏକ ଦିବ୍ୟ ନିୟାମକଙ୍କ ଦ୍ୱାରା ଅନୁଗତ ଜନସାଧାରଣଙ୍କ ଉପରେ ହୁଏତ ଲଦି ଦିଆଯାଇଛି କିମ୍ବା ଭାରତୀୟ ଜନଗଣଙ୍କର ସ୍ୱକୀୟ ସାମାଜିକ ବିକାଶ ପ୍ରକ୍ରିୟାରେ ଏହା ସୃଷ୍ଟି ହୋଇଛି ।

ଭାରତରେ ପ୍ରଚଳିତ ଥିବା ସାମାଜିକ ବିଧାନଗୁଡ଼ିକର ନିୟାମକଙ୍କ ସମ୍ପର୍କରେ ପ୍ରଥମେ ଆଲୋଚନା କରିବାକୁ ମୁଁ ଇଚ୍ଛା କରୁଛି । ପ୍ରତ୍ୟେକ ଦେଶରେ ଜରୁରୀ ପରିସ୍ଥିତିରେ ସାମାଜିକ ନୀତି ନିର୍ଦ୍ଧାରଣ କରିବାରେ ଯୁଗ ପୁରୁଷମାନଙ୍କର ଆବିର୍ଭାବ ହୋଇଥାଏ । ନ୍ୟାୟ, ନୈତିକତା ଇତ୍ୟାଦି ପ୍ରଶ୍ନଗୁଡ଼ିକ ଉପରେ ସେମାନେ ବିପଥଗାମୀ ଜନଗଣଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି । ଭାରତବର୍ଷରେ ବିଧାନଗୁଡ଼ିକର ନିୟାମକ ହେଉଛନ୍ତି ମନୁ । ଯଦି ପ୍ରକୃତରେ ସେପରି ଜଣେ ବ୍ୟକ୍ତି ଥିଲେ ଏବଂ ଜାତି ବ୍ୟବସ୍ଥା ତାଙ୍କ ପ୍ରଦତ୍ତ ସାମାଜିକ ନିୟମର ପରିଣାମ, ତେବେ ସେ ଜଣେ ଦୁଃସାହସୀ ଓ ଉଦ୍ଧତ ବ୍ୟକ୍ତିଥିଲେ ଏକଥା ଅସ୍ୱୀକାର କରି ହେବନାହିଁ । ଯଦି ବାସ୍ତବରେ ତାଙ୍କର ବିଧାନଗୁଡ଼ିକୁ ଜନଗଣ ଗ୍ରହଣ କରିଥାନ୍ତି ତେବେ ଆମେ ଯେଉଁ ଜନସାଧାରଣଙ୍କୁ ଜାଣୁ ତାଙ୍କଠାରୁ ସେମାନେ ଏକ ଭିନ୍ନ ଚରିତ୍ରର ହୋଇଥିବେ । ଜାତିଗତ ବିଧାନ କୌଣସି ଜଣେ ବ୍ୟକ୍ତିଙ୍କ ଦ୍ୱାରା ପ୍ରଦତ୍ତ ବୋଲି କହିବା ବିଶ୍ୱାସଯୋଗ୍ୟ ନୁହେଁ । ଜନଗଣ ଜାତିଗତ ଗୁଦ୍ଧ ବ୍ୟବସ୍ଥାକୁ ଗ୍ରହଣ କରି ପଶୁ ସ୍ତରକୁ ନିଜକୁ ଖସାଇ ନେବା ବିଶ୍ୱାସଯୋଗ୍ୟ ହୁଏନାହିଁ । କାରଣ କେହି ଜାଣିଶୁଣି ନିଜର ସାମାଜିକ ସ୍ଥିତିକୁ ତଳକୁ ଖସାଇ ନେବାକୁ ଚାହିଁବେ ନାହିଁ । ଜଣେ ଲୋକଙ୍କର କଲମରୁ ଏପରି ଗୋଟିଏ ବ୍ୟବସ୍ଥା ବାହାରିବ ଯାହା ଗୋଟିଏ ଶ୍ରେଣୀକୁ ତଳକୁ ଖସାଇ ଦେବା ସହ ଅନ୍ୟ ଏକ ଶ୍ରେଣୀକୁ ଉତ୍ତୁଙ୍ଗ ଶିଖରକୁ ନେଇଯିବ – ଏହା ସମ୍ଭବ କି ? ଜଣେ ଅତ୍ୟାଚାରୀ ଶାସକ ଯେ କି ଜନସମୂହକୁ ପଦଦଳିତ କରି ରଖିଛନ୍ତି କେବଳ ଜୋର ଜବରଦସ୍ତ ଏହିପରି ଏକ ଅନ୍ୟାୟପୂର୍ଣ୍ଣ ବ୍ୟବସ୍ଥାକୁ ମାନିନେବାକୁ ଲୋକମାନଙ୍କୁ ବାଧ୍ୟ କରିପାରିବେ । ତାହା ବ୍ୟତୀତ ଏହା ବିଶ୍ୱାସଯୋଗ୍ୟ ନୁହେଁ ଯେ ଏହିପରି ଏକ ଅନ୍ୟାୟପୂର୍ଣ୍ଣ ବ୍ୟବସ୍ଥାକୁ ଲୋକମାନେ ସାଦରେ ଗ୍ରହଣ କରିବେ । ହୁଏତ ମନୁଙ୍କ ଉପରେ ମୋର ବକ୍ତବ୍ୟକୁ ଅତି କଠୋର ବୋଲି କେହି ଅଭିହିତ କରିପାରନ୍ତି କିନ୍ତୁ ମୁଁ ନିଶ୍ଚିତ ଯେ ମୋର ସମାଲୋଚନା କେବେ ବି ତାଙ୍କର ଭୂତକୁ ମାରିପାରିବ ନାହିଁ । ଏକ ଦେହମୁକ୍ତ ଆତ୍ମା ଭାବରେ ସେ ଏବେ ବି ବଞ୍ଚିଛନ୍ତି ଓ ମୋର ବିଶ୍ୱାସ ସେ ଆହୁରି ଅନେକ ଦିନ ବଞ୍ଚି ରହିବେ । ମୁଁ ଏଠାରେ କହିବାକୁ ଚାହେଁ ଯେ ଜାତି ବ୍ୟବସ୍ଥାର ବିଧାନକୁ ମନୁ ଦେଇ ନାହାନ୍ତି ଓ ସେ ଏହା କରିବା ସମ୍ଭବ ମଧ୍ୟ ନ ଥିଲା । ମନୁଙ୍କ ବହୁ ପୂର୍ବରୁ ଜାତି ବ୍ୟବସ୍ଥା ରହିଆସିଛି । ସେ କେବଳ ଏହାର ସମର୍ଥକ ଥିଲେ ଏହାର ସୈଦ୍ଧାନ୍ତିକ

ଭିତ୍ତିକୁ ସୁଦୃଢ଼ କରିଥିଲେ । କିନ୍ତୁ ବର୍ତ୍ତମାନର ହିନ୍ଦୁ ସମାଜରେ ପ୍ରଚଳିତ ଜାତି ବ୍ୟବସ୍ଥାର ବିଧାନଗୁଡ଼ିକ ସେ ପ୍ରବର୍ତ୍ତନ କରି ନ ଥିଲେ । ସମାଜରେ ରହିଥିବା ଜାତି ବିଧାନଗୁଡ଼ିକୁ ସେ କେବଳ ସଂହିତାକରଣ କରିଥିଲେ ଓ ଜାତି ଧର୍ମକୁ ପ୍ରଚାର କରିଥିଲେ । ଭାରତରେ ପ୍ରଚଳିତ ଥିବା ଜାତି ବ୍ୟବସ୍ଥାର ବିଶାଳତା ଓ ବ୍ୟାପକତାକୁ ଦେଖିଲେ ଏହା ମନେ ହେବ ଯେ ଜଣେ ବ୍ୟକ୍ତି ବା ଏକ ଶ୍ରେଣୀର ଧୂର୍ତ୍ତ କାର୍ଯ୍ୟଦ୍ୱାରା ଏହା ପ୍ରସାର ଓ ବିକାଶ ସମ୍ଭବ ହୋଇନାହିଁ । ସେହିପରି ବ୍ରାହ୍ମଣମାନେ ଯେ ଜାତି ସୃଷ୍ଟି କରିଛନ୍ତି ଏହି ଯୁକ୍ତି ଗ୍ରହଣଯୋଗ୍ୟ ନୁହେଁ । ମୁଁ ମନୁଙ୍କ ସମ୍ପର୍କରେ ଯେଉଁ ବକ୍ତବ୍ୟ ଦେଇଛି ତା ଅପେକ୍ଷା ଅଧିକା କିଛି କହିବାକୁ ଚାହୁଁନାହିଁ । କେବଳ ଏତିକି କହିବାକୁ ଚାହେଁ ଯେ ବୈଚାରିକ ସ୍ତରରେ ଏହି ବ୍ୟବସ୍ଥାଟି ଭ୍ରମାତ୍ମକ ଓ ବାସ୍ତବ କ୍ଷେତ୍ରରେ ଏହା ଅତ୍ୟନ୍ତ ବିଦ୍ୱେଷପୂର୍ଣ୍ଣ । ବ୍ରାହ୍ମଣମାନେ ନାନା କ୍ଷେତ୍ରରେ ହୁଏତ ଦୋଷୀ ମନେ ହୁଅନ୍ତି, କିନ୍ତୁ ଅବ୍ରାହ୍ମଣମାନଙ୍କ ଉପରେ ଜାତି ବ୍ୟବସ୍ଥାକୁ ଲଦିଦେବା ସେମାନଙ୍କର ସାମର୍ଥ୍ୟ ବହିର୍ଭୂତ ଅଟେ । ହୁଏତ ସେମାନଙ୍କର ବାକ୍‌ଚାତୁରୀପୂର୍ଣ୍ଣ ଦର୍ଶନଦ୍ୱାରା ବ୍ୟବସ୍ଥାଟି ଚାଲୁ ରହିବାରେ ସେମାନେ ସାହାଯ୍ୟ କରିଛନ୍ତି କିନ୍ତୁ ସେମାନଙ୍କର ପରିସର ବାହାରେ ସେମାନେ ଏହାକୁ ପ୍ରବର୍ତ୍ତନ କରିନାହାନ୍ତି । ନିଜ ମାନଦଣ୍ଡରେ ସାମାଜିକ ବ୍ୟବସ୍ଥାକୁ ରୂପରେଖ ଦେବା ବା ଏକ ନିର୍ଦ୍ଦିଷ୍ଟ ଢାଞ୍ଚାରେ ପକାଇବା ଏତେ କଠିଣ କାର୍ଯ୍ୟ ଯେ ଏହାର ସଫଳତା ଏକ ବିସ୍ମୟକାରୀ ଉପଲବ୍ଧି ରୂପେ ପରିଗଣିତ ହେବ । କାର୍ଯ୍ୟଟି ଯେତେ ଆନନ୍ଦଦାୟକ ବା ଗୌରବମୟ ହେଉନା କାହିଁକି ଗୋଟିଏ ପରିସର ବାହାରେ ତାହାର ପ୍ରସାର ମୋଟେ ସମ୍ଭବ ନୁହେଁ । ହୁଏତ ମୋର ସମାଲୋଚନା ଅଦରକାରୀ ମନେ ହୋଇପାରେ, କିନ୍ତୁ ଏହା ଅପ୍ରାସଙ୍ଗିକ ନୁହେଁ । ଧର୍ମାନ୍ଧ ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ହିନ୍ଦୁ ସମାଜକୁ ସଚେତନ ଭାବରେ ଏବଂ ଶାସ୍ତ୍ରମାନଙ୍କର ବିଧାନ ଅନୁଯାୟୀ ଜାତି ହିସାବରେ ବର୍ଗୀକରଣ କରାଯାଇଛି । କେବଳ ଯେ ଏ ବିଶ୍ୱାସ ତିଷ୍ଠି ରହିଛି ତା'ନୁହେଁ ବରଂ ଏହାର ଯୌକ୍ତିକତାକୁ ନେଇ ଏକ ମାନସିକତା ମଧ୍ୟ ସୃଷ୍ଟି ହୋଇଛି । ଏପରି ବିଶ୍ୱାସ ରହିଛି ଯେ ଜାତିଗତ ବିଧାନ ଯଥାର୍ଥ, କାରଣ ଏହା ଶାସ୍ତ୍ରସମ୍ମତ ଓ ଯାହା ଶାସ୍ତ୍ରସମ୍ମତ ତାହା କେବେ ବି ଭୁଲ ହୋଇପାରିବ ନାହିଁ । ଜାତିପ୍ରଥା ପଶ୍ଚାତରେ ଥିବା ଧର୍ମୀୟ ସ୍ୱୀକୃତିକୁ ଯେଉଁମାନେ ବିଜ୍ଞାନସମ୍ମତ ବୋଲି କହୁଛନ୍ତି ବା ଏହାକୁ ପରିହାର କରିବାକୁ ଯେଉଁମାନେ ପ୍ରଚାର କରୁଛନ୍ତି, ସେଭଳି ସଂସ୍କାରକମାନଙ୍କୁ ସାହାଯ୍ୟ କରିବାକୁ ମୁଁ

ଏହି ଦୃଷ୍ଟିଭଙ୍ଗୀ ବିରୁଦ୍ଧରେ କହିବାକୁ ଚାହୁଁନାହିଁ । ଯେଉଁ ଦୃଷ୍ଟିଭଙ୍ଗୀ ଦ୍ୱାରା ଏକ ଧର୍ମୀୟ ସ୍ୱୀକୃତିକୁ ଏକ ବୈଜ୍ଞାନିକ ପ୍ରତିପାଦନ ରୂପେ ଗ୍ରହଣ କରାଯାଉଛି ତାହାର ତ୍ରୁଟି ଦର୍ଶାଇବା ମୋର ଉଦ୍ଦେଶ୍ୟ ।

ସୁତରାଂ ଭାରତରେ ଜାତି ବ୍ୟବସ୍ଥାର ଉତ୍ପତ୍ତି ଓ ପ୍ରସାର ସମ୍ବନ୍ଧୀୟ ପ୍ରଶ୍ନର ଉତ୍ତର 'ମହାନ ବ୍ୟକ୍ତି ସିଦ୍ଧାନ୍ତ' (Great man theory) ଦ୍ୱାରା ମିଳିପାରିବ ନାହିଁ । ପାଶ୍ଚାତ୍ୟ ଗବେଷକମାନେ ଏହି ମତ ବ୍ୟତୀତ ଅନ୍ୟାନ୍ୟ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ଭାରତରେ ସୃଷ୍ଟି ହୋଇଥିବା ବିଭିନ୍ନ ଜାତି କ୍ଷେତ୍ରରେ ସେମାନେ ଯେଉଁ କାରଣ ସମୂହ ଦର୍ଶାଇଥାନ୍ତି ସେଗୁଡ଼ିକ ହେଲା (୧) ବୃତ୍ତି (୨) ଆଦିବାସୀ ସଂଗଠନର ଉଦ୍‌ବର୍ତ୍ତନ (୩) ନୂତନ ମତବାଦର ବିକାଶ (୪) ମିଶ୍ରିତ ପ୍ରଜନନ ଏବଂ (୫) ଦେଶାନ୍ତର ଗମନ । ବର୍ତ୍ତମାନ ପ୍ରଶ୍ନ ହେଉଛି ଏହି କାରଣ ସମୂହ କ'ଣ ଅନ୍ୟ ସମାଜରେ ନାହିଁ ଓ ଏଗୁଡ଼ିକ ଭାରତର ବୈଶିଷ୍ଟ୍ୟ ? ଯଦି ସେଗୁଡ଼ିକର ଭାରତୀୟ ପୃଷ୍ଠଭୂମିରେ କୌଣସି ବୈଶିଷ୍ଟ୍ୟ ନାହିଁ ଓ ତାହା ପୃଥିବୀର ଯେ କୌଣସି ସମାଜ କ୍ଷେତ୍ରରେ ରହିଛି ତେବେ ପ୍ରଶ୍ନ ଉଠୁଛି ଅନ୍ୟ ଭୂଖଣ୍ଡରେ ସେଗୁଡ଼ିକ କାହିଁକି ଜାତି ବ୍ୟବସ୍ଥା ସୃଷ୍ଟି କରିନାହିଁ ? ଅନ୍ୟ ଭୂଖଣ୍ଡଗୁଡ଼ିକ ଭାରତ ଅପେକ୍ଷା କ'ଣ ପବିତ୍ର ଯେ ସେଠାରେ ଏହା ସୃଷ୍ଟି ହୋଇନାହିଁ ? ନା ଏପରି ହୋଇପାରେକି ଏହାର ଉତ୍ପତ୍ତି କ୍ଷେତ୍ରରେ ଦିଆଯାଉଥିବା ବ୍ୟାଖ୍ୟାଗୁଡ଼ିକ ତ୍ରୁଟିପୂର୍ଣ୍ଣ । ମୋର ମନେହୁଏ ଶେଷୋକ୍ତ କାରଣଟି ସମ୍ଭବତଃ ସତ୍ୟ ଅଟେ ।

ବିଭିନ୍ନ ଗବେଷକମାନେ ଉପର ବର୍ଣ୍ଣିତ ଏକ ବା ଏକାଧିକ କାରଣ ସମୂହକୁ ନିଜ ନିଜର ସିଦ୍ଧାନ୍ତ ଭାବରେ ନେଇ ଏହାକୁ ବ୍ୟାଖ୍ୟା କରିଛନ୍ତି । ସେହି ସିଦ୍ଧାନ୍ତଗୁଡ଼ିକର ବିସ୍ତୃତ ବିଶ୍ଳେଷଣ ଦ୍ୱାରା ଏହା ସ୍ପଷ୍ଟ ହେବ ଯେ ଏ କ୍ଷେତ୍ରରେ ସେସବୁ କେତେକ ସାଧାରଣ ଅଭିବ୍ୟକ୍ତି ମାତ୍ର । ମାଥ୍ୟୁ ଆରନଲ୍‌ଡ଼ଙ୍କ (Mathew Arnold) ଭାଷାରେ ଏହି ସିଦ୍ଧାନ୍ତ ଗୁଡ଼ିକର ମହତ୍ତ୍ୱ ବିଶେଷ କିଛିନାହିଁ, ଅଥଚ ନାମଗୁଡ଼ିକ ବଡ଼ । ସାର ଡେନ୍‌ଜିଲ୍ ଇବେଟସନ (Denzil Ibbetson), ମିଃ. ନେସଫିଲ୍‌ଡ଼, ସେନାର୍ଟ ଓ ସାର୍ ଏଚ. ରିସଲେଙ୍କ ପରି ଆଲୋଚକମାନେ ଜାତି ସମ୍ପର୍କରେ ଉଲ୍ଲିଖିତ ସିଦ୍ଧାନ୍ତମାନ ପ୍ରଦାନ କରିଛନ୍ତି । ସାମଗ୍ରିକ ଭାବରେ ସେମାନଙ୍କର ମତ ସମ୍ପର୍କରେ ଏହି ସମାଲୋଚନା କରି ହେବ ଯେ ସେଗୁଡ଼ିକ ତର୍କର ପରିଭାଷାରେ "ପ୍ରତିପାଦ୍ୟ ସ୍ୱୀକାର ଦୋଷ"

(Petitio Principii) ଦ୍ୱାରା ଦୋଷଯୁକ୍ତ । ନେସ୍‌ଫିଲଡ୍‌ଙ୍କ ମତରେ – "ବୃତ୍ତି ଓ କେବଳ ବୃତ୍ତି ଦ୍ୱାରା ହିଁ ଭାରତୀୟ ଜାତିପ୍ରଥା ସୃଷ୍ଟି ହୋଇଛି ଓ ତାରି ଉପରେ ତିଷ୍ଠି ରହିଛି ।" ସେ ଏପରି କହିବା ଦ୍ୱାରା ଆମର ବିଚାରକୁ କୌଣସି ମତେ ବୃଦ୍ଧି କରାଇ ନାହାନ୍ତି । ଜାତି ବ୍ୟବସ୍ଥା ବୃତ୍ତି ଓ ପେଷାରୁ ହିଁ ସୃଷ୍ଟି ବୋଲି କହିବା ଏକ ଗୁରୁତ୍ୱପୂର୍ଣ ବିଶ୍ଳେଷଣ ନୁହେଁ । ନେସ୍‌ଫିଲ୍‌ଡ୍‌ଙ୍କ ବକ୍ତବ୍ୟରୁ ଏହା ଜଣାପଡ଼େ ନାହିଁ ଯେ ଗୋଟିଏ ବୃତ୍ତି ଅବଲମ୍ବନ କରୁଥିବା ଏକ ଦଳ କିପରି ଏକ ବୃତ୍ତି ଭିତ୍ତିକ ଜାତିରେ ରୂପାନ୍ତରିତ ହେଲା । ନେସ୍‌ଫିଲ୍‌ଡ୍‌ଙ୍କ ମତ ମହତ୍ୱପୂର୍ଣ୍ଣ ହୋଇଥିଲେ ମୁଁ ଆଗ୍ରହର ସହ ଅନ୍ୟ ନୃଜାତି ବିଜ୍ଞାନୀମାନଙ୍କର ସିଦ୍ଧାନ୍ତ ସକଳକୁ ଗୁରୁତ୍ୱର ସହ ବିଚାର କରି ନ ଥାନ୍ତି ।

ହରବର୍ଟ ସ୍ପେନ୍‌ସର ତାଙ୍କ ବିବର୍ତ୍ତନବାଦରେ ଜୀବମାନଙ୍କ ଭିତରେ ଥିବା ଆକୃତିଗତ ଭିନ୍ନତାକୁ ଏକ ପ୍ରାକୃତିକ ପ୍ରକ୍ରିୟା ଭାବରେ ବୁଝାଇଛନ୍ତି । ସେହି ସାଦୃଶ୍ୟରେ ଜାତିପ୍ରଥା ଅସଂହତି ବା ପ୍ରଭେଦ ଜନିତ ନିୟମର ଏକ ପ୍ରାକୃତିକ ପରିଣାମ ବୋଲି କୁହାଯାଇ ପାରେ । ସୁପ୍ରଜନନ ନିୟମକୁ ବ୍ୟାଖ୍ୟା କରୁଥିବା ରକ୍ଷଣଶୀଳ ସମର୍ଥକମାନଙ୍କର ମତ ଏହାକୁ ସମର୍ଥନ ବି କରିପାରେ । କିନ୍ତୁ ଏ ସମସ୍ତ ଶ୍ରେଣୀୟ ବିଚାର ଆଧାରରେ ଜାତିପ୍ରଥାକୁ ବୁଝାଇବା ତର୍କ ଦୃଷ୍ଟିରୁ ତ୍ରୁଟିପୂର୍ଣ୍ଣ ଅଟେ । ଜାତି ବ୍ୟବସ୍ଥା ଯେ ଏକ ପ୍ରାକୃତିକ ନିୟମ ଉପରେ ଆଧାରିତ କିମ୍ବା ଏକ ନିରୀହ ଓ ସାମର୍ଥ୍ୟହୀନ ଜନଗଣଙ୍କ ଉପରେ ଏହି ସବୁ ନିୟମକୁ ଲଦି ଦିଆଯାଇଛି ତାହା କହିବା ଯଥାର୍ଥ ମନେହୁଏ ନାହିଁ । ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ପ୍ରସଙ୍ଗଟି ଉପରେ ମୁଁ ମୋର ନିଜର ମତ ଉପସ୍ଥାପନ କରିବା ଉଚିତ ମନେ କରେ ।

ଆରମ୍ଭରେ ଏହା ଆମେ ମନେରଖିବା ଆବଶ୍ୟକ ଯେ ଅନ୍ୟ ସମାଜ ପରି ହିନ୍ଦୁ ସମାଜ ମଧ୍ୟ କେତେକ ଶ୍ରେଣୀକୁ ନେଇ ଗଠିତ ହୋଇଥିଲା । ଜଣାପଡ଼ି ନଥିବା ସବୁଠାରୁ ଆଦିମ ଶ୍ରେଣୀଗୁଡ଼ିକ ହେଲା (୧) ବ୍ରାହ୍ମଣ ବା ପୂଜକ ଶ୍ରେଣୀ (୨) କ୍ଷତ୍ରିୟ ବା ପ୍ରତିରକ୍ଷା ଶ୍ରେଣୀ (୩) ବୈଶ୍ୟ ବା ବ୍ୟବସାୟୀ ଶ୍ରେଣୀ ଏବଂ (୪) ଶୂଦ୍ର ବା କାରିଗର ଓ ଦାସ ଶ୍ରେଣୀ । ପ୍ରଥମରୁ ଏହା ମନେ ରଖିବା ଆବଶ୍ୟକ ଯେ ଏହା ଏକ ଶ୍ରେଣୀ ବିଭାଜନ ଥିଲା । ତେବେ ବ୍ୟକ୍ତି ବିଶେଷ ନିଜର ଯୋଗ୍ୟତା ହାସଲ କଲାପରେ ନିଜର ଶ୍ରେଣୀକୁ ପରିବର୍ତ୍ତନ କରିପାରୁଥିଲା, ଅର୍ଥାତ୍ ଶ୍ରେଣୀ ପରିବର୍ତ୍ତନ ସମ୍ଭବ ହେଉଥିଲା । ହିନ୍ଦୁମାନଙ୍କ ସାମାଜିକ ଇତିହାସରେ କୌଣସି ଏକ ସମୟରେ ପୂଜକ

ଶ୍ରେଣୀ ଅନ୍ୟମାନଙ୍କଠାରୁ ସାମାଜିକ ସମ୍ପର୍କ ଛିନ୍ନ କରି ଦେଲେ ଏବଂ ଏକ ରୁଦ୍ଧ ବ୍ୟବସ୍ଥା ଦ୍ୱାରା ଏକ ଜାତିରେ ପରିଣତ ହୋଇଗଲେ । ଅନ୍ୟ ଶ୍ରେଣୀଗୁଡ଼ିକ ନିଜର କର୍ମ ଅନୁଯାୟୀ କେତେକ ଅତି ବଡ଼ ଗୋଷ୍ଠୀରେ ପରିଣତ ହେବାବେଳେ ଅନ୍ୟ କେତେକ ଅତି କ୍ଷୁଦ୍ର ଗୋଷ୍ଠୀରେ ବିଭକ୍ତ ହେଲେ । ପ୍ରଥମରେ ଥିବା ବୈଶ୍ୟ ଓ ଶୂଦ୍ର ଶ୍ରେଣୀଗୁଡ଼ିକ ସମୟାନୁକ୍ରମେ ଅସଂଖ୍ୟ ଜାତିରେ ବିଭକ୍ତ ହୋଇଗଲେ । ସାମରିକ ବୃତ୍ତି ଭିତରେ ଥିବା କ୍ଷତ୍ରିୟ ଶ୍ରେଣୀ ବିଭିନ୍ନ ଉପଶ୍ରେଣୀରେ ବିଭକ୍ତ ନ ହୋଇ ସେମାନେ ସୈନିକ ଓ ଶାସକ ଭାବରେ ପରିଗଣିତ ହେଲେ ।

କୌଣସି ସମାଜରେ ଏହି ଉପବିଭାଜନ ଏକ ପ୍ରାକୃତିକ ପ୍ରକ୍ରିୟା ଅଟେ । କିନ୍ତୁ ଏହି ଉପବିଭାଜନ ଗୁଡ଼ିକର ଅପ୍ରାକୃତିକ ପରିଣତିଟି ହେଉଛି ଶ୍ରେଣୀ ବ୍ୟବସ୍ଥାରେ ଥିବା ମୁକ୍ତ ବ୍ୟବସ୍ଥାଟିକୁ ହରାଇ ସେଗୁଡ଼ିକ ରୁଦ୍ଧ ଜାତିରେ ରୂପାନ୍ତରିତ ହେବା । ପ୍ରଶ୍ନ ହେଉଛି ସେମାନେ ଏପରି ରୁଦ୍ଧ ସଗୋତ୍ରୀୟ ଜାତିରେ ପରିଣତ ହେବାକୁ ବାଧ୍ୟ ହୋଇଛନ୍ତି ନା ସେମାନେ ସ୍ୱତଃପ୍ରବୃତ୍ତ ହୋଇ ତାହା ଗ୍ରହଣ କରିଛନ୍ତି ? ମୋ ମତରେ ଦୁଇଟି ଯାକ ଉତ୍ତର ସମ୍ଭବ, ଅର୍ଥାତ୍ କେତେକ ନିଜକୁ ରୁଦ୍ଧ କରି ଦେଇଛନ୍ତି, ଅନ୍ୟ କେତେକ ଅନ୍ୟମାନଙ୍କର ଦ୍ୱାର ସେମାନଙ୍କ ପାଇଁ ରୁଦ୍ଧ ହେବା ଦେଖିଛନ୍ତି । ଗୋଟିଏ ହେଉଛି ମନସ୍ତାତ୍ତ୍ୱିକ ଓ ଅପରଟି ହେଉଛି ଯାନ୍ତିକ । କିନ୍ତୁ ଉଭୟ ବ୍ୟାଖ୍ୟା ପରସ୍ପରର ଅନୁପୂରକ ଏବଂ ସାମଗ୍ରିକ ଭାବରେ ଜାତିର ଉତ୍ପତ୍ତିକୁ ଏହି ଉଭୟ ବ୍ୟାଖ୍ୟା ଦ୍ୱାରା ବିଶ୍ଳେଷଣ କରାଯାଇ ପାରିବ ।

ମୁଁ ପ୍ରଥମେ ମନସ୍ତାତ୍ତ୍ୱିକ ବ୍ୟାଖ୍ୟାର ଆଲୋଚନା କରିବି । ଏହି ପରିପ୍ରେକ୍ଷୀରେ ଆମକୁ ଏହି ପ୍ରଶ୍ନର ଆଲୋଚନା କରିବାକୁ ହେବ ଯେ ଏହି ଉପବିଭାଜନ କିମ୍ବା ଶ୍ରେଣୀଗୁଡ଼ିକ (ଆଧୁନିକ ପରିଭାଷାରେ କାରିଗର ଶ୍ରେଣୀ, ପୂଜକ ଶ୍ରେଣୀ ବା ସେପରି କିଛି ହେଉ) କାହିଁକି ଏକ ରୁଦ୍ଧ ସଗୋତ୍ରୀୟ ଜାତିରେ ପରିବର୍ତ୍ତିତ ହେଲେ ? ମୋର ମତ ହେଉଛି ବ୍ରାହ୍ମଣମାନେ ଏପରି ହେବାଦ୍ୱାରା ତାହା ସୃଷ୍ଟି ହେଲା । ସଗୋତ୍ରୀୟ ରୁଦ୍ଧ ଜାତି ବ୍ୟବସ୍ଥା ହିନ୍ଦୁ ସମାଜର ଧାରା ହେବାର କାରଣ ହେଉଛି ପ୍ରଥମେ ଏହା ବ୍ରାହ୍ମଣମାନଙ୍କଠାରୁ ଆରମ୍ଭ ହେଲା ଓ ପରବର୍ତ୍ତୀ ପର୍ଯ୍ୟାୟରେ ଅବ୍ରାହ୍ମଣମାନେ ଏହାକୁ ପୂର୍ଣ୍ଣ ଭାବରେ ଅନୁକରଣ କଲେ । ଫଳରେ ଅବ୍ରାହ୍ମଣ ଶ୍ରେଣୀରେ ରହିଥିବା

ଉପବିଭାଜନଗୁଡ଼ିକ ସଗୋତ୍ରୀୟ ଜାତି ଗୁଡ଼ିକରେ ପରିଣତ ହୋଇଗଲେ । ଅନୁକରଣ କରିବାର ପ୍ରବୃତ୍ତି ମଣିଷର ମାନସିକତାରେ ରହିଛି, ଏହାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ସୁତରାଂ ଭାରତରେ ସୃଷ୍ଟି ହୋଇଥିବା ଜାତିଗୁଡ଼ିକ ଏହି ଅନୁକରଣ ଜନିତ ଅଭିଳାଷରୁ ସୃଷ୍ଟି ହୋଇଛି । ଅନୁକରଣ ଜନିତ ମନୋବୃତ୍ତିର ଗଭୀରତାକୁ ହୃଦୟଙ୍ଗମ କରି ୱାଲ୍‌ଟର ବାଗ୍‌ହୋଟ୍ (Walter Bagchot) ଯୁକ୍ତି କରନ୍ତି "ଅନୁକରଣକୁ ସ୍ୱତଃପ୍ରବୃତ୍ତ ବା ଏକ ସଚେତନ କ୍ରିୟା ବୋଲି ଭାବିବା ଠିକ୍ ନୁହେଁ । ଅପରପକ୍ଷରେ ମଣିଷ ମନର ଅବଚେତନ ସ୍ତରରେ ଏହା ରହିଆସିଛି । ସଚେତନ ଭାବରେ ମଣିଷ ଏହା ନକଲେ ମଧ୍ୟ ଏହାର ଉପସ୍ଥିତିକୁ ଅସ୍ୱୀକାର କରିହେବ ନାହିଁ । ଏକ ନିର୍ଦ୍ଦିଷ୍ଟ ସମୟରେ ଏହାର ପୂର୍ବ ଅବଧାରଣା ରହିଥିବା ହେତୁ ଏହା ସଚେତନ ଭାବରେ ହେଉ କିମ୍ବା ଅସଚେତନ ଭାବରେ ହେଉ ମଣିଷ ଅନ୍ୟକୁ ଅନୁକରଣ କରି ଆସିଛି । ଏହି ଅନୁକରଣ କରିବା ଆମର ବିଶ୍ୱାସ ଯୋଗୁଁ ସମ୍ଭବ ହୋଇଛି । କୌଣସି କଥାକୁ ବିଶ୍ୱାସ କରିବା ବା ନକରିବା କିମ୍ବା କୌଣସି ବିଶ୍ୱାସ ପ୍ରତି ଆଗ୍ରହ ବା ଅନାଗ୍ରହ ଆମ ସ୍ୱଭାବର ଏକ ଦୁର୍ବୋଧ ଦିଗ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ଆମର ଅନୁକରଣ ଜନିତ ସରଳ ବିଶ୍ୱାସକୁ ସନ୍ଦେହ କରାଯାଇ ପାରିବ ନାହିଁ ।"[୧]

ଅନୁକରଣ କରିବାର ପ୍ରବୃତ୍ତି ଉପରେ ଗାବ୍ରିଏଲ ଟାର୍ଡେ (Gabriel Tarde) ବୈଜ୍ଞାନିକ ବିଶ୍ଳେଷଣ କରି ଏହାର ତିନୋଟି ନିୟମକୁ ଦର୍ଶାଇଛନ୍ତି । ସେଥିରୁ ଗୋଟିଏ ନିୟମ ହେଉଛି ଅନୁକରଣ ଉପରୁ ତଳକୁ ଆସିଥାଏ । ତାଙ୍କ ଭାଷାରେ କହିଲେ 'ସୁଯୋଗ ମିଳିଲେ ଆଭିଜାତ୍ୟ ଶ୍ରେଣୀର ଲୋକମାନେ ସର୍ବଦା ଓ ସବୁ ସ୍ଥାନରେ ନିଜର ନେତା, ଶାସକ ଓ କ୍ଷମତାଧରଙ୍କୁ ଅନୁକରଣ କରିଥାନ୍ତି । ସେହିପରି ଲୋକମାନେ ସୁଯୋଗ ପାଇଲେ ସମାଜର ଆଭିଜାତ୍ୟପୂର୍ଣ୍ଣ ସାମନ୍ତ ଶ୍ରେଣୀକୁ ଅନୁକରଣ କରନ୍ତି ।'[୨]

ଟାର୍ଡେଙ୍କର ଅନୁକରଣର ଆଉ ଗୋଟିଏ ନିୟମ ହେଉଛି - ଅନୁକରଣର ବ୍ୟାପକତା ବା ଗଭୀରତା ଦୂର ସମ୍ପର୍କ ସହିତ ବିପରୀତ କ୍ରମରେ ସମ୍ବନ୍ଧିତ । ତାଙ୍କ ଭାଷାରେ, "ଯେଉଁମାନେ ନିକଟରେ ଥାନ୍ତି ଓ ସେମାନଙ୍କର ଯାହା ଉତ୍କୃଷ୍ଟ ମନେହୁଏ ତାହାକୁ ହିଁ ମୁଖ୍ୟତଃ ଅନୁକରଣ କରାଯାଇଥାଏ । ଅନୁକରଣ କରାଯାଉଥିବା ଜିନିଷର ପ୍ରଭାବ ଦୂରତା ଓ ଉତ୍କୃଷ୍ଟତା ଭିତ୍ତିରେ ନିୟନ୍ତ୍ରିତ । ଦୂରତା ସହିତ ଏହାର ସମ୍ପର୍କ

ବିପରୀତ କ୍ରମରେ ହେଲାବେଳେ ଉତ୍କୃଷ୍ଟତା ସହିତ ଏହାର ସମ୍ପର୍କ ପ୍ରତ୍ୟକ୍ଷ ହୋଇଥାଏ । ଏଠାରେ ଦୂରତାର ଅର୍ଥକୁ ଏକ ସମାଜ ଶାସ୍ତ୍ରୀୟ ଅର୍ଥରେ ନିଆଯାଇଛି । ଅନୁକରଣ ନିୟମାନୁଯାୟୀ ଦୂରତା ଯାହା ହେଉନା କାହିଁକି ଯଦି ଦୈନନ୍ଦିନ ବ୍ୟାପାରରେ ଓ ସମ୍ବନ୍ଧରେ ଅନ୍ୟର ଓ ଅପରିଚିତ ବ୍ୟକ୍ତିର ଜୀବନଚର୍ଯ୍ୟାକୁ ଅନୁକରଣ କରି ଆମେ ଆମର ଇଛାକୁ ପୂରଣ କରୁ ତେବେ ସେ ଯେ ଆମର ନିକଟତର ଏହା କୁହାଯାଇପାରିବ । ନିକଟ ସମ୍ବନ୍ଧ କ୍ଷେତ୍ରରେ ସମାଜର ଉପର ସ୍ତରରେ ଥିବା ବ୍ୟକ୍ତିଗଣ ଅନ୍ୟମାନଙ୍କ ପାଇଁ ଅନୁକରଣୀୟ ହୁଅନ୍ତି । ଅର୍ଥାତ୍ ଆସ୍ତେ ଆସ୍ତେ ଓ ଅବିଚ୍ଛିନ୍ନ ଭାବରେ ଉପରୁ ତଳକୁ ଅନୁକରଣ ଆସିଥାଏ ।"

'ଅନୁକରଣ ଦ୍ୱାରା ଜାତିଗୁଡ଼ିକର ସୃଷ୍ଟି ହୋଇଛି' ମୋର ଏହି ସିଦ୍ଧାନ୍ତ ପରିପ୍ରେକ୍ଷୀରେ ମୁଁ ଏହା କହିପାରେ ଯେ ହିନ୍ଦୁ ସମାଜରେ ଜାତି ବ୍ୟବସ୍ଥାର ସୃଷ୍ଟି କ୍ଷେତ୍ରରେ ଆବଶ୍ୟକ ହେଉଥିବା ପ୍ରମୁଖ ସର୍ତ୍ତଗୁଡ଼ିକ କେତେଦୂର ରହିଛି ତାହା ଦେଖାଯିବା ଆବଶ୍ୟକ । ଅର୍ଥାତ୍ ଏହି ମତର ପ୍ରମାଣ ମୁଖ୍ୟତଃ କେତେକ ସର୍ତ୍ତ ଉପରେ ପର୍ଯ୍ୟବସିତ । ଅନୁକରଣ କ୍ଷେତ୍ରରେ ଦିଆଯାଇଥିବା ଏହି ପ୍ରାମାଣିକ ମତାନୁଯାୟୀ ଦୁଇଟି ସର୍ତ୍ତ ପ୍ରତୀୟମାନ ହୋଇଥାଏ । ତାହାହେଲା (କ) ଯାହାଙ୍କୁ ଅନୁକରଣ କରାଯାଏ ସେ ନିଜ ଦଳ ଭିତରେ ସମ୍ମାନର ଅଧିକାରୀ ହୋଇଥିବେ ଓ (ଖ) ଗୋଟିଏ ଦଳର ବ୍ୟକ୍ତିମାନଙ୍କ ମଧ୍ୟରେ ନାନାବିଧ ଓ ନିତିଦିନିଆଁ ସମ୍ବନ୍ଧ ରହିଥିବ । ଏହି ସର୍ତ୍ତଗୁଡ଼ିକ ଯେ ଭାରତରେ ରହିଥିଲା ଏ କ୍ଷେତ୍ରରେ ସନ୍ଦେହର କୌଣସି ଅବକାଶ ନାହିଁ । ଜଣେ ବ୍ରାହ୍ମଣଙ୍କୁ ଈଶ୍ୱରଙ୍କ ପ୍ରତିବିମ୍ବ ବା ଅବତାର ଭାବରେ ଗ୍ରହଣ କରାଯାଉଥିଲା । ସେ ଯେଉଁ ବିଧି ତିଆରି କରୁଥିଲେ ତାହା ଅନ୍ୟମାନଙ୍କୁ ପ୍ରଭାବିତ କରୁଥିଲା । ବ୍ରାହ୍ମଣମାନଙ୍କର ସମ୍ମାନ ଅବିବାଦୀୟ ଥିଲା ଓ ସେ ଆନନ୍ଦ ଓ ଉତ୍ତମର ପ୍ରତୀକ ଥିଲେ । ଶାସ୍ତ୍ରରେ ଅତି ଉଚ୍ଚ ସ୍ଥାନ ପାଇଥିବା ଓ ସମାଜରେ ଅନ୍ୟମାନଙ୍କ ଦ୍ୱାରା ସମ୍ମାନିତ ହେଉଥିବା ବ୍ୟକ୍ତି ନିଜ ବ୍ୟକ୍ତିତ୍ୱର ପ୍ରଭାବ ସମାଜର ଅନ୍ୟ ଲୋକଙ୍କ ଉପରେ ପକେଇବା ଅସମ୍ଭବ ହେବ କି ? ବ୍ରାହ୍ମଣ ହିଁ ସୃଷ୍ଟିର ଆଦର୍ଶ ବୋଲି ବିଶ୍ୱାସ ରହିଥିଲା । ଏହିପରି ଏକ ବ୍ୟକ୍ତିତ୍ୱର ଅନୁକରଣ ସମ୍ଭବ ନ ହେଲେ ମଧ୍ୟ ଅନୁକରଣ କରିବା ସମ୍ମାନଜନକ ଥିଲା । ସାମାଜିକ ସମ୍ମାନର ଏତେ ଊର୍ଦ୍ଧ୍ୱରେ ଥିବା ବ୍ୟକ୍ତି ଯଦି ଏକ ରୁଦ୍ଧ ସଗୋତ୍ରୀୟ ବ୍ୟବସ୍ଥାକୁ ଗ୍ରହଣ

କରେ, ତେବେ ଅନ୍ୟମାନେ ତାଙ୍କର ପନ୍ଥା ଅନୁକରଣ କରିବା ଯଥାର୍ଥ ନୁହେଁ କି ? ଜଣେ ଚିନ୍ତାଶୀଳ ଦାର୍ଶନିକ ହୁଅନ୍ତୁ ବା ଏକ ସାଧାରଣ ମଣିଷ ହୁଅନ୍ତୁ ତାଙ୍କୁ ଅନୁକରଣ କରିଥାନ୍ତି । ଅନୁକରଣ କରିବା ସହଜ, କିନ୍ତୁ କିଛି ନୂତନ ଚିନ୍ତା କରିବା କଷ୍ଟସାଧ ।

ଜାତିମାନଙ୍କର ଉତ୍ପତ୍ତି କ୍ଷେତ୍ରରେ ଓ ଏହି ଅନୁକରଣ ପରିପ୍ରେକ୍ଷୀରେ ଅବ୍ରାହ୍ମଣ ଶ୍ରେଣୀମାନଙ୍କ ମଧ୍ୟରେ ପରମ୍ପରାଗୁଡିକ ପ୍ରତି କେଉଁ ଦୃଷ୍ଟିଭଙ୍ଗୀ ଥିଲା ତାହା ବିଚାର କରିବା ଆବଶ୍ୟକ । ଐତିହାସିକ ପୃଷ୍ଠଭୂମିରୁ ଜାତିଗୁଡ଼ିକର ଉତ୍ପତ୍ତି ଓ ବିକାଶ ପ୍ରକ୍ରିୟାରେ ଏହା ହିନ୍ଦୁ ମାନସିକତାର ବଦ୍ଧମୂଳ ହୋଇଗଲା ଓ କାଳକ୍ରମେ କୌଣସି ଅବଲମ୍ବନ ବ୍ୟତୀତ ବିଶ୍ୱାସ ତିଷ୍ଠି ରହିଆସିଲା । ଏହା ବିଶ୍ୱାସ ସ୍ତରରେ ବେଶ୍ ଦୃଢ଼ ହୋଇଗଲା ଓ ତାହା ଅଦ୍ୟାବଧି ଚାଲୁରହିଛି । ହିନ୍ଦୁ ସମାଜରେ ଜାତିମାନଙ୍କର ପ୍ରତିଷ୍ଠା କେତେଗୁଡ଼ିଏ ପରମ୍ପରା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଥିଲା । ସେଗୁଡ଼ିକ ହେଲା ସତୀ ପ୍ରଥା, ବାଲ୍ୟ ବିବାହ ଓ ବିଧବା ବିବାହ ନିଷେଧ ଜନିତ ସାମାଜିକ ସ୍ୱୀକୃତି । ଏହି ପରମ୍ପରାଗୁଡ଼ିକର ପାଳନକୁ ନେଇ ଜାତି ଜାତି ଭିତରେ ଦୂରତା ଓ ପାର୍ଥକ୍ୟ ରହିଲା । ମୁଁ ଏଠାରେ ଦୂରତାକୁ ସମାଜଶାସ୍ତ୍ରୀୟ ଅର୍ଥରେ ବ୍ୟବହାର କରୁଛି । ଯେଉଁ ଜାତିମାନେ ବ୍ରାହ୍ମଣମାନଙ୍କର ନିକଟତମ ହୋଇ ରହିଲେ ସେମାନେ ଏହି ପରମ୍ପରାଗୁଡ଼ିକୁ ପୂର୍ଣ୍ଣ ଭାବରେ ପାଳନ କରିବା ସହିତ ସେଗୁଡ଼ିକର ପାଳନକୁ କଠୋର ନିୟମ ଭିତରେ ପକାଇଦେଲେ । ଯେଉଁମାନେ ବ୍ରାହ୍ମଣମାନଙ୍କଠାରୁ ସାମାନ୍ୟ ଦୂରରେ ରହିଲେ ସେମାନେ ବିଧବା ବିବାହ ନିଷେଧ ଓ ବାଲ୍ୟ ବିବାହକୁ ଅନୁକରଣ କଲେ । ଯେଉଁମାନେ ତାଙ୍କ ଅପେକ୍ଷା ଦୂରରେ ରହିଲେ ସେମାନେ କେବଳ ବାଲ୍ୟ ବିବାହକୁ ପ୍ରଚଳନ କଲେ, ଯେଉଁମାନେ ସବୁଠାରୁ ଅଧିକ ପାର୍ଥକ୍ୟ ରଖିଲେ ସେମାନେ କେବଳ ଜାତି ନିୟମକୁ ଗ୍ରହଣ କଲେ କିନ୍ତୁ ପରମ୍ପରାଗୁଡ଼ିକୁ ନୁହେଁ । ଏହି ଅପୂର୍ଣ୍ଣ ଅନୁକରଣକୁ ଟାର୍ଡେଙ୍କ ଦୂରତ୍ୱ ଦୃଷ୍ଟିରୁ ବୁଝାଇହେବ । ଅର୍ଥାତ କେତେକ ନିଷ୍ଠୁର ପରମ୍ପରାକୁ ଅନୁକରଣ କରିବା କ୍ଷେତ୍ରରେ ପରସ୍ପର ଭିତରେ ରହିଥିବା ପାର୍ଥକ୍ୟକୁ ଦୂରତା ମାନଦଣ୍ଡରେ ଯାହା ଟାର୍ଡେ ଦର୍ଶାଇଛନ୍ତି ବୁଝାଯାଇପାରିବ । ତାଙ୍କ ନିୟମର ପୃଷ୍ଠଭୂମିରେ ଭାରତରେ ଜାତି ବ୍ୟବସ୍ଥାର ଉତ୍ପତ୍ତି ଉଚ୍ଚ ସ୍ତରରେ ଥିବା ବ୍ୟକ୍ତିମାନଙ୍କୁ ନିମ୍ନ ସ୍ତରରେ ଥିବା ବ୍ୟକ୍ତିମାନଙ୍କର ଅନୁକରଣ ଯୋଗୁଁ ଯେ ସମ୍ଭବ ହୋଇଛି ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ । ଏହି

କ୍ଷେତ୍ରରେ ମୋର ଏକ ପୂର୍ବ ସିଦ୍ଧାନ୍ତକୁ ଯାହା ଆପଣମାନଙ୍କୁ ଆକସ୍ମିକ ଓ ଅସମର୍ଥିତ ମନେ ହୋଇଥିବ ବ୍ୟାଖ୍ୟା କରିହେବ । ମୁଁ କହିରଖିଛି ଯେ ବ୍ରାହ୍ମଣ ଶ୍ରେଣୀ ଏହି ତିନୋଟି ପରମ୍ପରାକୁ ଗ୍ରହଣ କରି ଜାତିର ଭିତ୍ତି ସ୍ଥାପନ କରିଛନ୍ତି । ଏହି ପରମ୍ପରାଗୁଡ଼ିକ ଅନ୍ୟ ଶ୍ରେଣୀଗୁଡ଼ିକ କ୍ଷେତ୍ରରେ ପରେ ଗ୍ରହଣୀୟ ହୋଇଛି । ଅବ୍ରାହ୍ମଣମାନଙ୍କ ମଧ୍ୟରେ ପରମ୍ପରାଗୁଡ଼ିକର ବିସ୍ତାର କ୍ଷେତ୍ରରେ ପରେ ଗ୍ରହଣୀୟ ହୋଇଛି । ଅବ୍ରାହ୍ମଣମାନଙ୍କ ମଧ୍ୟରେ ପରମ୍ପରାଗୁଡ଼ିକର ବିସ୍ତାର କ୍ଷେତ୍ରରେ ଅନୁକରଣର ପ୍ରାଧାନ୍ୟ ରହିଛି ଯାହାକୁ ମୁଁ ପୂର୍ବରୁ ବୁଝାଇଛି । ସେଗୁଡ଼ିକ ସାଧନ ଓ ଆଦର୍ଶ ଭାବରେ ସ୍ୱୀକୃତ ହୋଇଛି ଯଦିବା ଅନୁକରଣକାରୀମାନେ ଏ ନେଇ ସଚେତନ ହୋଇନାହାନ୍ତି । ପରମ୍ପରାଗୁଡ଼ିକ ସେମାନଙ୍କ ଭିତରକୁ ପ୍ରସାରିତ ବା ସଂକ୍ରମିତ ହୋଇଆସିଛି । ଯେଉଁମାନଙ୍କଠାରୁ ପରମ୍ପରା ଅନ୍ୟମାନଙ୍କ ପାଖକୁ ସଂକ୍ରମିତ ହୋଇଆସେ ସେ କ୍ଷେତ୍ରରେ ପରମ୍ପରାଗୁଡ଼ିକ ପ୍ରଥମେ ଗୋଟିଏ ଶ୍ରେଣୀପାଖରେ ମୂଳ ଉତ୍ସ ହୋଇ ରହିଥାଏ । ସେମାନେ ଅନ୍ୟମାନଙ୍କ ପାଇଁ ଏକ ଆଦର୍ଶ ପ୍ରତିରୂପ ହୋଇଥାନ୍ତି । ଏକ ଧର୍ମକୈନ୍ଦ୍ରିକ ସମାଜରେ ଯେଉଁମାନେ ଈଶ୍ୱରଙ୍କ ପ୍ରତିରୂପ ଭାବରେ ସମ୍ମାନିତ ହୁଅନ୍ତି ସେମାନଙ୍କର ପରମ୍ପରାକୁ ଆଦର୍ଶ ନମୂନା ଭାବରେ ଅନ୍ୟମାନେ ଗ୍ରହଣ କରିଥାନ୍ତି । ଏକ ଧର୍ମକୈନ୍ଦ୍ରିକ ସମାଜରେ ଅନ୍ୟ କାହାକୁ ଅନୁକରଣ କରିବା ସମ୍ଭବ କି ?

ଯେଉଁମାନେ ନିଜକୁ ରୁଦ୍ଧ କରିବାରେ ବାଧ୍ୟ ହୋଇଛନ୍ତି ସେମାନଙ୍କର ଦୁର୍ବଳତାକୁ ଏହି ବ୍ୟାଖ୍ୟା ମାଧ୍ୟମରେ ମଧ୍ୟ ବୁଝି ହେବ । ଅନ୍ୟମାନେ କିପରି ରୁଦ୍ଧ ହୋଇଛନ୍ତି ଅର୍ଥାତ୍ ସାମାଜିକ୍ ସମ୍ପର୍କ କ୍ଷେତ୍ରରେ କେତେକ ଗୋଷ୍ଠୀ ରୁଦ୍ଧ ହୋଇଯିବା ଦ୍ୱାରା ସେମାନଙ୍କ ସହିତ ସମ୍ପର୍କକୁ ନେଇ ଅନ୍ୟମାନେ ମଧ୍ୟ ରୁଦ୍ଧ ହୋଇଯାନ୍ତି । ଏହାକୁ ବର୍ତ୍ତମାନ ଆମେ ବିଶ୍ଳେଷଣ କରିବା । ଜାତି ବ୍ୟବସ୍ଥାର ଉତ୍ପତ୍ତି କ୍ଷେତ୍ରରେ ମୁଁ ଏହାକୁ ଏକ ଯାନ୍ତ୍ରିକ ଧାରା ବୋଲି ଅଭିହିତ କରୁଛି । ଏହା ଯାନ୍ତ୍ରିକ, କାରଣ ଏହା ଅବଶ୍ୟମ୍ଭାବୀ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣ ଏବଂ ଏହି ଯାନ୍ତ୍ରିକ ଧାରା କିପରି ଜାତି ବ୍ୟବସ୍ଥାକୁ ସୃଷ୍ଟି କରିଛନ୍ତି ତାହା ପୂର୍ବ ଆଲୋଚକମାନଙ୍କର ଦୃଷ୍ଟିକୁ ଆସି ପାରିନାହିଁ । ତା'ର କାରଣ ହେଉଛି ସେମାନେ ପ୍ରତ୍ୟେକ ଜାତିକୁ ଏକକ ଭାବରେ ନେଇଛନ୍ତି, କିନ୍ତୁ ଗୋଟିଏ ସାମଗ୍ରିକ ବ୍ୟବସ୍ଥାର ଏକ ପ୍ରକ୍ରିୟା ଭାବରେ ନେଇ ନାହାନ୍ତି । ଏହି ଭ୍ରମ ଦୃଷ୍ଟି ବା ତ୍ରୁଟି

ଯୋଗୁଁ ଜାତି ବ୍ୟବସ୍ଥାର ଉତ୍ପତ୍ତି ଓ ଏହାର ଯଥାଯଥ ବ୍ୟାଖ୍ୟା ସମ୍ଭବ ହୋଇନାହିଁ କିମ୍ବା ଏଥିପାଇଁ ଅନ୍ତରାୟ ହୋଇଛି । ଏଠାରେ ମୋର ନିଜସ୍ୱ ବ୍ୟାଖ୍ୟା ପରିପ୍ରେକ୍ଷୀରେ ମୁଁ ଏକ ମନ୍ତବ୍ୟ ଦେବାକୁ ଚାହୁଁଛି ଯାହା ଗ୍ରହଣ କରିବା ଦ୍ୱାରା ବିଷୟଟି ସ୍ପଷ୍ଟ ହୋଇପାରିବ । ତାହାହେଲା "ଜାତିକୁ ଗୋଟିଏ ଏକକ ଭାବରେ ବିଚାର କରିବା ଅବାସ୍ତବ ଅଟେ ବରଂ ଜାତି ସମୂହ କହିବା ଯୁକ୍ତିସଙ୍ଗତ ଅଟେ । ଜାତି ବୋଲି ଏକକ ଜିନିଷ ନାହିଁ ବରଂ ସର୍ବଦା ଜାତି ସମୂହ ରହିଛନ୍ତି ।" ଏହାର ଅର୍ଥ ହେଉଛି ବ୍ରାହ୍ମଣମାନେ ନିଜକୁ ଗୋଟିଏ ଜାତି କଲାବେଳେ ଅବ୍ରାହ୍ମଣ ଜାତି ସୃଷ୍ଟି କରିଛନ୍ତି । ଅନ୍ୟ ଭାଷାରେ କହିଲେ ନିଜକୁ ଅନ୍ୟମାନଙ୍କଠାରୁ ରୁଦ୍ଧ କରିବା ବେଳେ ଅନ୍ୟମାନେ ନିଜଠାରୁ ମଧ ରୁଦ୍ଧ ହୋଇଯାନ୍ତି । ମୁଁ ଅନ୍ୟ ଏକ ଉଦାହରଣ ଦେଇ ଏହାକୁ ସ୍ପଷ୍ଟ କରିବାକୁ ଚାହେଁ । ଭାରତବର୍ଷର ସମସ୍ତ ଅଧିବାସୀମାନଙ୍କୁ ନେଇ ସାମଗ୍ରିକ ଭାବରେ ବିଚାର କଲେ ଆମେ ଦେଖିବା ଯେ ସେଠାରେ ହିନ୍ଦୁ, ମୁସଲମାନ, ଇହୁଦୀ, ଖ୍ରୀଷ୍ଟିୟାନ, ପାର୍ସୀ ଇତ୍ୟାଦି ସଂପ୍ରଦାୟର ଲୋକମାନେ ରହିଛନ୍ତି । ପ୍ରତ୍ୟେକ ଗୋଷ୍ଠୀ ନିଜ ନିଜ ସଂପ୍ରଦାୟ ପ୍ରତି ଅନୁରକ୍ତ । ହିନ୍ଦୁମାନଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଜାତିବିହୀନ ଗୋଷ୍ଠୀଭାବରେ ରହିଛନ୍ତି, କିନ୍ତୁ ପରସ୍ପର ସହ ସମ୍ପର୍କ ପରିପ୍ରେକ୍ଷୀରେ ସେମାନେ ଗୋଟିଏ ଗୋଟିଏ ଜାତି । ଅର୍ଥାତ୍ ଯଦି ପ୍ରଥମେ ଚାରୋଟି ସଂପ୍ରଦାୟ ଅନ୍ୟଠାରୁ ନିଜକୁ ଆବଦ୍ଧ କରିନେବେ ତେବେ ପ୍ରଦତ୍ତ ଉଦାହରଣରେ ପାର୍ସୀମାନେ ଅନ୍ୟମାନଙ୍କଠାରୁ ରୁଦ୍ଧ ହୋଇଯିବେ । ଅନ୍ୟଠାରୁ ପ୍ରତ୍ୟକ୍ଷରେ ରୁଦ୍ଧ ହୋଇଯିବାଦ୍ୱାରା ସେମାନେ ପରୋକ୍ଷରେ ନିଜ ଭିତରେ ସୀମାବଦ୍ଧ ହୋଇରହିବେ । ସାଙ୍କେତିକ ଭାବରେ କହିଲେ ଯଦି 'କ' ଦଳ ସଗୋତ୍ରିକ ରହିବେ ତେବେ 'ଖ' ଦଳ ପରିସ୍ଥିତି ଚାପରେ ପଡ଼ି ସଗୋତ୍ରିକ ରହିବାକୁ ବାଧ ହେବେ ।

ହିନ୍ଦୁ ସମାଜ ପ୍ରତି ଏହି ଉକ୍ତି ପ୍ରୟୋଗ କଲେ ସେମାନଙ୍କ ସମ୍ପର୍କରେ ଯେଉଁ ବିଖଣ୍ଡିତ ଚିତ୍ର ମିଳିଥାଏ ତାହାହିଁ ଜାତି ବ୍ୟବସ୍ଥାକୁ ବ୍ୟାଖ୍ୟା କରିପାରିବ । ଏଥିରେ ଅନ୍ତର୍ନିହିତ ଥିବା ବ୍ୟବସ୍ଥା ଯୋଗୁଁ ନାନାବିଧ ଜାତି ସୃଷ୍ଟି ହେବା ଦେଖାଯାଏ । କୌଣସି ସଂସ୍କାରବାଦୀ ପ୍ରୟାସ, ଯାହା ଜାତି ସହିତ ସଂଶ୍ଳିଷ୍ଟ ଥିବା ନୈତିକ, ଧର୍ମୀୟ ଓ ସାମାଜିକ ବିଧି ବ୍ୟବସ୍ଥାକୁ ବିରୁଦ୍ଧାଚରଣ କରେ, ତାହା କେବେ ବି ଜାତି ବ୍ୟବସ୍ଥାରେ ଗ୍ରହଣଯୋଗ୍ୟ

ହୁଏ ନାହିଁ । ଜାତି ବ୍ୟବସ୍ଥାକୁ ବିରୋଧ କରୁଥିବା ବ୍ୟକ୍ତିଗଣ ଯେତେ ଶକ୍ତିଶାଳୀ ବା ଦୁର୍ଦ୍ଧାନ୍ତ ହେଲେ ବି ଜାତିରୁ ବହିଷ୍କୃତ ହେବାର ଭୟ ଥାଏ । ଗୋଟିଏ ଜାତିରୁ ବହିଷ୍କୃତ ହେବାଦ୍ୱାରା ଅନ୍ୟ କୌଣସି ଜାତିରେ ସ୍ଥାନ ପାଇବା ବା ଗ୍ରହଣୀୟ ହେବାର ସମ୍ଭାବନା ନଥାଏ । ଜାତିଗତ ନିୟମଗୁଡ଼ିକ ଏପରି କଠୋର ଓ ଅନମନୀୟ ଯେ ସେଥିରେ କୌଣସି ତ୍ରୁଟି ବା ଅପରାଧ ମଧ୍ୟରେ ପାର୍ଥକ୍ୟ କରାଯାଏ ନାହିଁ । ପରିବର୍ତ୍ତନ ବି ଭିନ୍ନ ପ୍ରକାରର ହୋଇପାରେ, କିନ୍ତୁ ଜାତିଗତ ପରିବର୍ତ୍ତନ କ୍ଷେତ୍ରରେ ଗୋଟିଏ ପ୍ରକାରର ଦଣ୍ଡ ଭୋଗିବାକୁ ହୋଇଥାଏ । କୌଣସି ନୂତନ ଚିନ୍ତା ଏକ ନୂତନ ଜାତି ସୃଷ୍ଟି କରିପାରେ, କିନ୍ତୁ ପ୍ରଚଳିତ ଜାତିଗୁଡ଼ିକ କେବେ ହେଲେ ତାକୁ ଗ୍ରହଣ କରିପାରନ୍ତି ନାହିଁ । କୌଣସି ଅବୈଧ ପ୍ରେମଦ୍ୱାରା ଜଣେ ଅପରାଧୀ ଯେଉଁ ଦଶା ଭୋଗ କରିଥାଏ ଜଣେ ଗୁରୁ ପଦବାଚ୍ୟ ବ୍ୟକ୍ତି ଯେ କି ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତି ସେ ବି ସମାନ ଦଶା ଭୋଗ କରିଥାନ୍ତି । ହୁଏତ ଜଣେ ଗୁରୁ ଧର୍ମୀୟ ଗୋଷ୍ଠୀ ଭାବରେ ଏକ ନୂଆ ଜାତି ସୃଷ୍ଟି କରିପାରନ୍ତି ଓ ଅପରାଧୀ ବ୍ୟକ୍ତିମାନେ ମିଶ୍ରିତ ଜାତି ସୃଷ୍ଟି କରିଥାନ୍ତି । ଜାତିଗତ ବିଧାନକୁ ଉଲ୍ଲଂଘନ କରିବାଦ୍ୱାରା ଜାତି ଉଲ୍ଲଂଘନକାରୀକୁ ଜାତିମାନଙ୍କରେ କୌଣସି ପ୍ରକାରର ଅନୁକମ୍ପା ଦେଖାଯାଏ ନାହିଁ । ପରିଣାମରେ ଜାତି ଭିତରୁ ସେମାନଙ୍କୁ ବହିଷ୍କାର କରାଯାଏ ଓ ବହିଷ୍କୃତ ବ୍ୟକ୍ତିଗଣ ଏକ ଜାତି ଭାବରେ ପରିଗଣିତ ହୁଅନ୍ତି । ବହିଷ୍କୃତ ବ୍ୟକ୍ତିଗଣ ଗୋଟିଏ ଜାତି ଗଠନ କରିବା କ୍ଷେତ୍ରରେ ହିନ୍ଦୁ ମନସ୍ତତ୍ୱ ଦ୍ୱାରା ପ୍ରଭାବିତ ହୋଇଥିବା ଯୋଗୁଁ ସହମତ ହୋଇପାରନ୍ତି ନାହିଁ । ଅପରପକ୍ଷରେ ସେମାନେ ନିଜଠାରୁ ଉଚ୍ଚରେ ଥିବା କୌଣସି ଜାତିରେ ସମ୍ପର୍କିତ ହୋଇରହିବା ପାଇଁ ଅନୁନୟ ସହକାରେ ପ୍ରୟାସ କରନ୍ତି । କିନ୍ତୁ ଜାତିଗୁଡ଼ିକ ଏତେ ରୁଦ୍ଧ ଯେ ସେଥିରେ ଅନ୍ୟମାନେ ସଂଯୋଜିତ ହୋଇପାରନ୍ତି ନାହିଁ । ଜାତିମାନଙ୍କର ଅବରୁଦ୍ଧ ଚିନ୍ତା ଓ ଚକ୍ରାନ୍ତ ଭିତରେ ବହିଷ୍କୃତ ବ୍ୟକ୍ତିଗଣ ସାମିଲ ହେବା ସମ୍ଭବ ହୁଏନାହିଁ । ଫଳରେ ସେମାନେ ଏକ ବହିଷ୍କୃତ ଜାତି ଭାବରେ ପରିଗଣିତ ହୁଅନ୍ତି । ଏହି କଠୋର ବ୍ୟବସ୍ଥାଟିକୁ ମାନିବାଦ୍ୱାରା ବିଭିନ୍ନ ଗୋଷ୍ଠୀ ଅନ୍ୟଠାରୁ ରୁଦ୍ଧ ହୋଇପଡ଼ନ୍ତି । ପରିସ୍ଥିତି ଚାପରେ ଅନ୍ୟଠାରୁ ସଙ୍କୁଚିତ ହୋଇ ସେମାନେ ରୁଦ୍ଧ ଗୋଷ୍ଠୀରେ ରହିବାକୁ ବାଧ୍ୟ ହୋଇଥାନ୍ତି । ଏପରିକି ଜାତିଗତ ବ୍ୟବସ୍ଥାକୁ ହାନିକର ମଣୁଥିବା ନୂତନ ଗୋଷ୍ଠୀ ଯାନ୍ତିକ ନିୟମ ଧାରାରେ କାଳକ୍ରମେ ଜାତିମାନଙ୍କରେ ପରିଣତ ହୋଇଯାନ୍ତି । ଏହି ଦ୍ୱିତୀୟ ପ୍ରକ୍ରିୟାରେ ଭାରତ ବର୍ଷରେ ମଧ୍ୟ ଅନେକ ଜାତି ସୃଷ୍ଟି ହୋଇଛନ୍ତି ।

ମୋ ନିବନ୍ଧର ମୁଖ୍ୟ ପ୍ରସଙ୍ଗଗୁଡ଼ିକର ସାରାଂଶକୁ ମୁଁ ଶେଷରେ ଏହିପରି ଉପସ୍ଥାପନ କରୁଛି । ଜାତି ସମ୍ପର୍କରେ ଅନୁଧ୍ୟାନ କରିଥିବା ଗବେଷକମାନେ ତାଙ୍କର ଗବେଷଣା କ୍ଷେତ୍ରରେ ଏହି କେତେକ ଗୁରୁତ୍ୱପୂର୍ଣ୍ଣ ଦିଗକୁ ବିଚାରକୁ ନେଇ ନାହାନ୍ତି । ୟୁରୋପୀୟ ଗବେଷକମାନେ ଜାତି ବ୍ୟବସ୍ଥାକୁ ଅଧ୍ୟୟନ କଲାବେଳେ ଶାରୀରିକ ରଙ୍ଗ ବା ବର୍ଣ୍ଣକୁ ଅଯଥା ବହୁ ଗୁରୁତ୍ୱ ଦେଇଛନ୍ତି । ସେମାନେ ବର୍ଣ୍ଣ ପକ୍ଷପାତ ଭାବନା ଦ୍ୱାରା ସଂକ୍ରମିତ ହୋଇଥିବା ଯୋଗୁଁ ଶାରୀରିକ ବର୍ଣ୍ଣ ଜାତି ଗଠନ କ୍ଷେତ୍ରରେ ମୁଖ୍ୟ ଆୟୁଧ ବୋଲି ତ୍ରୁଟିପୂର୍ଣ୍ଣ ଭାବରେ ଭାବିଛନ୍ତି । ଏହା ସତ୍ୟର ଅପଳାପ କହିଲେ ଅତ୍ୟୁକ୍ତି ହେବ ନାହିଁ । ଡଃ କେତ୍‌କାରଙ୍କ ମତ "ସମସ୍ତ ରାଜକୁମାରମାନେ ତଥାକଥିତ ଆର୍ଯ୍ୟ ବଂଶୋଦ୍ଭବ ହୁଅନ୍ତୁ ବା ଦ୍ରାବିଡ଼ ବଂଶୋଦ୍ଭବ ହୁଅନ୍ତୁ ସେମାନେ ଆର୍ଯ୍ୟ । ପାଶ୍ଚାତ୍ୟ ଗବେଷକମାନେ ଆର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ଭିତରେ ପାର୍ଥକ୍ୟ ଆଣିବା ପର୍ଯ୍ୟନ୍ତ କୌଣସି ଗୋଷ୍ଠୀ ବା ପରିବାର ଆର୍ଯ୍ୟ କିମ୍ବା ଦ୍ରାବିଡ଼ ବଂଶଜ, ଏହି ପ୍ରଶ୍ନ ଭାରତୀୟ ଲୋକମାନଙ୍କୁ ପ୍ରଭାବିତ କରେନାହିଁ । ଦେହର ରଙ୍ଗ ଜନିତ ପାର୍ଥକ୍ୟ ବହୁ ଆଗରୁ ଗୁରୁତ୍ୱ ହରାଇଛି" ।[୧]

ପୁନଶ୍ଚ କେତେକ ବିବରଣୀକୁ ଜାତିର ସୃଷ୍ଟି ସମ୍ପର୍କରେ ଯଥାଯଥ ବ୍ୟାଖ୍ୟା ବୋଲି ସେମାନେ ତ୍ରୁଟିପୂର୍ଣ୍ଣ ଭାବରେ ଗ୍ରହଣ କରିଛନ୍ତି । ବୃତ୍ତି ଏବଂ ଧର୍ମ ଭିତ୍ତିକ ଜାତି ପ୍ରଭୃତି ରହିବା ସତ୍ୟ ଅଟେ, କିନ୍ତୁ ଏହା ଜାତିମାନଙ୍କର ଉତ୍ପତ୍ତି ସମ୍ପର୍କରେ ଯଥାର୍ଥ କାରଣ ନୁହେଁ । ବୃତ୍ତିଭିତ୍ତିକ ଗୋଷ୍ଠୀମାନେ କିପରି ଜାତି ହୋଇଛନ୍ତି ଏହାକୁ ବିଶ୍ଳେଷଣ କରିବାକୁ ହେବ, ଯଦିବା ଏହି ପ୍ରଶ୍ନ କେହି ଉତ୍‌ଥାପନ କରିନାହାନ୍ତି । ସେମାନେ ଜାତିକୁ ଅତି ସହଜ ଭାବରେ ଗ୍ରହଣ କରିଛନ୍ତି, ସତେ ଯେପରି ସେଗୁଡ଼ିକ ସାଧାରଣ ଭାବରେ ଚାହିଁବା ମାତ୍ରେ ସୃଷ୍ଟି ହୋଇଯାଇଛି । ଅପରପକ୍ଷରେ ମୋ ମତରେ ଜାତି ବ୍ୟବସ୍ଥା କ୍ଷେତ୍ରରେ ରହିଥିବା ଏତେ ଜଟିଳତା ଓ ଅସୁବିଧା ସତ୍ତ୍ୱେ ସେଗୁଡ଼ିକ କିପରି ତିଷ୍ଠି ରହିଛି ତାହାହିଁ ଗୁରୁତ୍ୱପୂର୍ଣ୍ଣ । ଏହା ସତ୍ୟ ସେଗୁଡ଼ିକ ବିଶ୍ୱାସର ଆଧାର ଉପରେ ରହିଛି । କିନ୍ତୁ ବିଶ୍ୱାସ କୌଣସି ବ୍ୟବସ୍ଥା ବା ଅନୁଷ୍ଠାନର ଭିତ୍ତି ହେବା ପୂର୍ବରୁ ସେହି ଅନୁଷ୍ଠାନ କିପରି ଦୃଢ଼ ଓ ଚିରସ୍ଥାୟୀ ହୋଇଛି ତାହାକୁ ବୁଝିବାକୁ ହେବ । ଜାତି ସମସ୍ୟା ଉପରେ ମୋର ଅଧ୍ୟୟନ ଏହି ଚାରୋଟି ତଥ୍ୟ ଉପରେ ପର୍ଯ୍ୟବସିତ । ସେଗୁଡ଼ିକ ହେଲା (କ) ହିନ୍ଦୁ ସମାଜ ଏକ ମିଶ୍ରିତ ଜନଗୋଷ୍ଠୀ ହେଲେ ବି ସେମାନଙ୍କ ଭିତରେ ଏକ ଗଭୀର ସାଂସ୍କୃତିକ ଐକ୍ୟ ରହିଛି; (ଖ) ସାଂସ୍କୃତିକ ଐକ୍ୟ ଥିବା ଗୋଟିଏ

ଜନଗଣଙ୍କୁ ଜାତି ବ୍ୟବସ୍ଥା ନାନା ଭାଗରେ ବିଭାଜିତ କରି ରଖିଛି (ଗ) ଜାତିର ଆରମ୍ଭ ଗୋଟିଏ ଗୋଷ୍ଠୀରୁ ହୋଇଛି; (ଘ) କାଳକ୍ରମେ ଶ୍ରେଣୀଗୁଡ଼ିକ ଅନୁକରଣ ଓ ବହିଷ୍କାରଦ୍ୱାରା ନାନା ଜାତିରେ ପରିଣତ ହୋଇଛନ୍ତି ।

ସଂପ୍ରତି ଭାରତବର୍ଷରେ ଜାତି ସମସ୍ୟାକୁ ନେଇ ଆଗ୍ରହ ସୃଷ୍ଟି ହୋଇଛି ଓ ଏହି ଅପ୍ରାକୃତିକ ଅନୁଷ୍ଠାନକୁ ଦୂରକରିବା ପାଇଁ ନିଷ୍ଠାପର ଉଦ୍ୟମ କରାଯାଉଛି । ସଂସ୍କାରବାଦୀ ପ୍ରୟାସ ପରିପ୍ରେକ୍ଷୀରେ ଏହାର ଉତ୍ପତ୍ତି ନେଇ ବିବାଦ ମୁଣ୍ଡ ଟେକୁଛି । କୌଣସି ପ୍ରଭାବଶାଳୀ କର୍ତ୍ତୃପକ୍ଷ ବା ଦୈବୀବିଧାନ ଯୋଗୁଁ ଏହା ସୃଷ୍ଟି ହୋଇଛି କିମ୍ବା କେତେକ ବିଶିଷ୍ଟ ପରିସ୍ଥିତିରେ ସମାଜରେ ଏହା ଅଲକ୍ଷ୍ୟରେ ଗଢ଼ିଉଠିଛି ସେ ନେଇ ବିଚାର ବିମର୍ଶ ପ୍ରକାଶ ପାଉଛି । ଯେଉଁମାନେ ଦ୍ୱିତୀୟ ମତଟିକୁ ଗ୍ରହଣ କରୁଛନ୍ତି ସେମାନେ ହୁଏତ ମୋ ନିବନ୍ଧରେ ଥିବା କେତେକ ବିଷୟ ସହ ଏକମତ ହେବେ । ଜାତିପ୍ରଥା ବାସ୍ତବ ଜୀବନରେ ଯେତେ ଗୁରୁତ୍ୱପୂର୍ଣ୍ଣ ବୋଧ ହେଉଥିଲେ ବି ଏହି ସମସ୍ୟାଟି ଏପରି ବ୍ୟାପକ ଓ ଗଭୀର ଯେ ଏହାର ସୈଦ୍ଧାନ୍ତିକ ଭିତ୍ତି ନେଇ ଆଲୋଚନା କରିବାକୁ ମୁଁ ଆଗ୍ରହୀ ହୋଇଛି । ଏହି ଆଗ୍ରହ ଯୋଗୁଁ ମୁଁ ଆପଣମାନଙ୍କ ପାଖରେ ମୋର କିଛି ସୁଚିନ୍ତିତ ମତ ଉପସ୍ଥାପନ କରିଛି । ମୋର ବିଶ୍ୱାସ ମୋର ସିଦ୍ଧାନ୍ତ ପରିପ୍ରେକ୍ଷୀରେ ସମସ୍ୟାଟିର ବ୍ୟାଖ୍ୟା କରାଯାଇ ପାରିବ । ମୋର ମତ ଯେ ଧ୍ରୁବ ସତ୍ୟ, ଏହା କହିବାର ଧୃଷ୍ଟତା ମୋର ନାହିଁ । ବରଂ ଏ ପ୍ରସଙ୍ଗରେ ବିଚାର ବିମର୍ଶ କ୍ଷେତ୍ରରେ ମୁଁ ମୋର କିଛି ମତ ଉପସ୍ଥାପନ କରିଛି । ମୋର ମନେହୁଏ ଏ ସମ୍ପର୍କରେ ପୂର୍ବରୁ ଆଲୋଚନାଗୁଡ଼ିକ ଠିକ୍ ଭାବରେ ପରିଚାଳିତ ହୋଇନାହିଁ । ଫଳରେ ମୋ ନିବନ୍ଧରେ ଏ କ୍ଷେତ୍ରରେ ଉଚିତ ରାସ୍ତାରେ ଅନୁଶୀଳନ କରିବା ପାଇଁ କିଛି ଇଙ୍ଗିତ ଦିଆଯାଇଛି । ଅବଶ୍ୟ ଏହି ବିଷୟଟିକୁ ଅଧ୍ୟୟନ କଲାବେଳେ ଆମେ କୌଣସି ପୂର୍ବ ଭାବନାର ବଶବର୍ତ୍ତୀ ହେବା ଠିକ୍ ହେବନାହିଁ । ବରଂ ବସ୍ତୁନିଷ୍ଠ ଭାବରେ ଓ ତଥ୍ୟଭିତ୍ତିକ ଆଲୋଚନାରେ ଏହାକୁ ଅଧ୍ୟୟନ କରାଯିବା ଦରକାର । କୌଣସି ବିଷୟରେ ବୈଜ୍ଞାନିକ ଅନୁଶୀଳନ କ୍ଷେତ୍ରରେ ଭାବପ୍ରବଣତା ରହିବା ଠିକ୍ ନୁହେଁ । କୌଣସି ବିଷୟର ବିଚାର କ୍ଷେତ୍ରରେ ପାର୍ଥକ୍ୟ ରହିବା ସ୍ୱାଭାବିକ । ଯଦି ବସ୍ତୁନିଷ୍ଠ ଓ ତଥ୍ୟଭିତ୍ତିକ ସତ୍ୟ ଉପରେ ମୋର ମତକୁ କେହି ସଂପୂର୍ଣ୍ଣ କାଟି ଦେଇପାରିବେ ତେବେ ମୁଁ ଅତ୍ୟନ୍ତ ଖୁସିର ସହ ତାହା ଗ୍ରହଣ କରିବି । କେତେକ କ୍ଷେତ୍ରରେ ବିଚାରଗତ ପ୍ରଭେଦ ରହିବା ଅସମୀଚୀନ ନୁହେଁ ଓ

ତାହା ବୌଦ୍ଧିକ ବିଶ୍ଳେଷଣ ପାଇଁ ଉପଯୋଗୀ ଅଟେ । ଉପସଂହାରରେ ମୁଁ ଏହା କହିବାକୁ ଚାହେଁ ଯେ ଜାତି ସମ୍ପର୍କରେ ମୁଁ ଏକ ସିଦ୍ଧାନ୍ତ ଉପସ୍ଥାପନା କରିଛି । ଯଦି ଏହି ସିଦ୍ଧାନ୍ତଟି ତ୍ରୁଟିପୂର୍ଣ୍ଣ ବୋଲି କେହି ପ୍ରମାଣ ଦ୍ୱାରା ଦର୍ଶାଇବେ, ତେବେ ମୁଁ ଏହାକୁ ପରିହାର କରିନେବି ।

# ଜାତିପ୍ରଥାର ବିଲୋପ

## ଦ୍ୱିତୀୟ ସଂସ୍କରଣର ମୁଖବନ୍ଧ

ଲାହୋର ସ୍ଥିତ ଜାତ-ପାତ-ତୋଡ଼କ ମଣ୍ଡଳପାଇଁ ମୁଁ ପ୍ରସ୍ତୁତ କରିଥିବା ଭାଷଣଟି ହିନ୍ଦୁମାନଙ୍କ ଦ୍ୱାରା ଆଶ୍ଚର୍ଯ୍ୟଜନକ ଭାବରେ ଆଦୃତ ହୋଇଛି । ସେହି ଇଂରାଜୀ ଲେଖାକୁ ପୁସ୍ତକ ଭାବରେ ପ୍ରକାଶ କରିବାର ଦୁଇ ମାସ ଭିତରେ ପନ୍ଦର ଶହ ପୁସ୍ତକ ବିକ୍ରି ହୋଇଯାଇଛି । ଏହା ଗୁଜୁରାଟୀ, ତାମିଲ, ମରାଠୀ, ହିନ୍ଦୀ, ପଞ୍ଜାବୀ ଓ ମାଲାୟାଲମ୍ ଭାଷାଗୁଡ଼ିକରେ ଅନୁବାଦ ହୋଇସାରିଛି । ଏହାର ପୁନଶ୍ଚ ଇଂରାଜୀ ସଂସ୍କରଣ ପାଇଁ ମଧ୍ୟ ଦାବି ହୋଇଛି । ଏହି ସ୍ଥିତିରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବା ପାଇଁ ସ୍ଥିର ହୋଇଛି । ଏହା ଭାଷଣ ପାଇଁ ପ୍ରସ୍ତୁତ ହୋଇଥିଲା । ଏହାକୁ ଭିନ୍ନ ଶୈଳୀରେ ପ୍ରକାଶ କରିବା ପାଇଁ ମୋତେ ଅନୁରୋଧ କରାଯାଇଥିଲେ ବି ମୁଁ ଏହାର ଐତିହାସିକ ଓ ବର୍ଣ୍ଣନାତ୍ମକ ବିଶ୍ଳେଷଣକୁ ଅପରିବର୍ତ୍ତିତ ରଖିଛି । ଏହି ସଂସ୍କରଣରେ ମୁଁ ଦୁଇଟି ପରିଶିଷ୍ଟ ଯୋଗ କରିଛି । ହରିଜନ ପତ୍ରିକାରେ ମୋ ଭାଷଣ ଉପରେ ଲେଖିଥିବା ମହାତ୍ମାଗାନ୍ଧୀଙ୍କର ଦୁଇଟି ସମୀକ୍ଷା ଏବଂ ଜାତ-ପାତ-ତୋଡ଼କ ମଣ୍ଡଳର ବିଶିଷ୍ଟ ସଭ୍ୟ ସନ୍ତରାମଙ୍କୁ ଗାନ୍ଧୀଙ୍କର ଲେଖିଥିବା ପତ୍ରକୁ ମୁଁ ପ୍ରଥମ ପରିଶିଷ୍ଟରେ ଦେଇଛି । ପରିଶିଷ୍ଟର ଦ୍ୱିତୀୟ ଭାଗରେ ଗାନ୍ଧୀଙ୍କ ସମୀକ୍ଷା ଉପରେ ମୋର ଉତ୍ତର ମୁଁ ସଂଶ୍ଳିଷ୍ଟ କରିଛି । ମହାତ୍ମା ଗାନ୍ଧୀଙ୍କ ବ୍ୟତୀତ ଅନ୍ୟ କେତେକ ମଧ୍ୟ ମୋର ମତକୁ ସମାଲୋଚନା କରିଛନ୍ତି । ଏହି ସବୁ ସମାଲୋଚନା କ୍ଷେତ୍ରରେ ମୁଁ କେବଳ ଗାନ୍ଧୀଙ୍କର ସମାଲୋଚନାକୁ ବିଚାରକୁ ନେଇ ତା'ର ଉତ୍ତର ଦେଇଛି । ଏହା କରିବାର ଉଦ୍ଦେଶ୍ୟ ନୁହେଁ ଯେ ସେ ଯାହା କହିଛନ୍ତି ତାହା ଗୁରୁତ୍ୱପୂର୍ଣ୍ଣ ଓ ତା'ର ଉତ୍ତର ଦେବା ନିହାତି ଆବଶ୍ୟକ । ପରନ୍ତୁ ଏହା କରିବାର ଉଦ୍ଦେଶ୍ୟ ହେଉଛି ତାଙ୍କର ମତକୁ ଅନେକ ହିନ୍ଦୁ ଆପ୍ତବାଣୀ ଭାବରେ ଗ୍ରହଣ କରୁଛନ୍ତି । ଅନେକ ଭାବନ୍ତି ଯେ କୌଣସି ବିଷୟରେ ଗାନ୍ଧୀଙ୍କର ମନ୍ତବ୍ୟ

ଅଭ୍ରାନ୍ତ ଏବଂ ତାଙ୍କ ମତ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଇ ନ ପାରେ । କିନ୍ତୁ ସଂସାରରେ ବିଦ୍ରୋହୀମାନେ କୌଣସି ଧର୍ମାଧ୍ୟକ୍ଷଙ୍କ ମତ ବିରୁଦ୍ଧରେ ଯୁକ୍ତି ଦେବାକୁ ସାହସ କରିଛନ୍ତି ଓ ସେମାନଙ୍କ ମତ ଯେ ଅକାଟ୍ୟ ନୁହେଁ ତାହା ଦର୍ଶାଇଛନ୍ତି । ଗୋଟିଏ ପ୍ରଗତିଶୀଳ ସମାଜ ତାର ବିଦ୍ରୋହୀ ଚିନ୍ତାଶୀଳ ବ୍ୟକ୍ତିମାନଙ୍କୁ କିପରି ସମ୍ମାନ କରିବ ବା କରିବ ନାହିଁ ସେଥିରେ ମୋର କିଛି କହିବାର ନାହିଁ । ବରଂ ମୋ ଲେଖାଦ୍ୱାରା ଯଦି ଭାରତରେ ହିନ୍ଦୁମାନେ ସେମାନଙ୍କ ଅସୁସ୍ଥ ମାନସିକତାକୁ ଅନୁଭବ କରିବାରେ ସମର୍ଥ ହୁଅନ୍ତି ତେବେ ମୁଁ ଆନନ୍ଦିତ ହେବି । କାରଣ ଏହି ଅସୁସ୍ଥ ମାନସିକତା ଅନ୍ୟ ଭାରତୀୟମାନଙ୍କର ସୁଖ ଓ ସମ୍ଭୋଗ ପାଇଁ ବିପଦର କାରଣ ହେଉଛି ।

## ତୃତୀୟ ସଂସ୍କରଣର ମୁଖବନ୍ଧ

ଏହି ପ୍ରବନ୍ଧର ଦ୍ୱିତୀୟ ସଂସ୍କରଣ ଯାହା ୧୯୩୭ ମସିହାରେ ପ୍ରକାଶିତ ହୋଇଥିଲା ତାହା ଖୁବ୍ ଅଳ୍ପଦିନ ଭିତରେ ବିକ୍ରି ହୋଇଗଲା । ବହୁଦିନ ହେଲା ଏହାର ଏକ ତୃତୀୟ ସଂସ୍କରଣ ପାଇଁ ଦାବି ହୋଇଆସୁଛି । ମୋର ଉଦ୍ଦେଶ୍ୟ ଥିଲା ଏହି ପ୍ରବନ୍ଧ ସହିତ 'ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ପତ୍ରିକା'ର ୧୯୧୭ ମେ'ମାସର ସଂଖ୍ୟାରେ "ଭାରତରେ ଜାତି ପ୍ରଥା: ତାହାର ଉତ୍ପତ୍ତି ଓ ଗଠନ" ଶୀର୍ଷକରେ ମୋର ଅନ୍ୟ ଯେଉଁ ପ୍ରବନ୍ଧଟି ପ୍ରକାଶ ପାଇଥିଲା ଏ ଉଭୟକୁ ମିଶାଇ ଏକ ପୁସ୍ତକ ପ୍ରକାଶ କରିବା । କିନ୍ତୁ ଯେହେତୁ ମୁଁ ସମୟ ପାଇ ନାହିଁ ଓ ଖୁବ୍ ନିକଟରେ ଏଥିପାଇଁ ସମୟ ଦେବାର ସମ୍ଭାବନା ନାହିଁ, ସେ ଦୃଷ୍ଟିରୁ ଯାହା ଦ୍ୱିତୀୟ ସଂସ୍କରଣରେ ପ୍ରକାଶ ପାଇଛି ଓ ଯାହାର ପ୍ରକାଶନ ପାଇଁ ଅବିରତ ଦାବି ହୋଇଆସୁଛି ତାକୁ ମୁଁ ପୂର୍ବପରି ତୃତୀୟ ସଂସ୍କରଣରେ ପ୍ରକାଶ କରିବାକୁ ଯାଉଛି ।

ମୁଁ ବହୁ ଆନନ୍ଦିତ ଯେ ଏହି ଲେଖାଟି ବିଶେଷ ଜନପ୍ରିୟ ହୋଇପାରିଛି ଏବଂ ଆଶା କରୁଛି ଯେଉଁ ଉଦ୍ଦେଶ୍ୟରେ ଏହା ଲେଖା ଯାଇଥିଲା ସେହି ଉଦ୍ଦେଶ୍ୟକୁ ଏହା ପୂରଣ କରିବ ।

ନୂଆଦିଲ୍ଲୀ

୧-୧୨-୧୯୪୪ ବି.ଆର. ଆମ୍ବେଦକର

## ମୁଖବନ୍ଧ

ଜାତ-ପାତ-ତୋଡ଼କ ମଣ୍ଡଳ ସମ୍ପାଦକ ଶ୍ରୀ ସନ୍ତରାମଙ୍କଠାରୁ ୧୨-୧୨-୩୫ ତାରିଖରେ ମୁଁ ତଳ ପତ୍ରଟି ପାଇଲି ।

ପ୍ରିୟ ଡକ୍ଟର ସାହେବ,

ଆପଣଙ୍କର ଡିସେମ୍ବର ୫ ତାରିଖର ପତ୍ର ପାଇଁ ବହୁତ ଧନ୍ୟବାଦ । ଆପଣଙ୍କର ବିନା ଅନୁମତିରେ ଆପଣଙ୍କର ଚିଠିଟିକୁ ପ୍ରକାଶ କରିବାକୁ ମୁଁ ପ୍ରେସକୁ ପଠାଇ ଦେଇଛି । ସେଥିପାଇଁ ଅପଣ ମୋତେ କ୍ଷମା କରିବେ । ଅବଶ୍ୟ ଏହା ପ୍ରକାଶ କରିବାରେ ମୁଁ କୌଣସି ଅସୁବିଧା ଦେଖୁନାହିଁ । ଆପଣ ଜଣେ ବିଶିଷ୍ଟ ଚିନ୍ତାଶୀଳ ବ୍ୟକ୍ତି ଓ ମୋର ବିଶ୍ୱାସ ଆପଣ ଜାତିପ୍ରଥା ସଂକ୍ରାନ୍ତରେ ଯେପରି ଗଭୀର ଅଧ୍ୟୟନ କରିଛନ୍ତି ଅନ୍ୟ କେହି ସେପରି କରିନାହାନ୍ତି । ମୁଁ ଓ ଆମର ମଣ୍ଡଳ ଆପଣଙ୍କର ଚିନ୍ତାଧାରା ଦ୍ୱାରା ବହୁତ ଉପକୃତ ହୋଇଛୁ । "କ୍ରାନ୍ତି" ପତ୍ରିକାରେ ଆପଣଙ୍କର ଭାବନାକୁ ମୁଁ ବହୁବାର ପ୍ରକାଶ କରିଛି ଓ ବ୍ୟାଖ୍ୟା କରିଛି । ବିଭିନ୍ନ ସମ୍ମିଳନୀମାନଙ୍କରେ ମଧ୍ୟ ମୁଁ ତାହା ପ୍ରକାଶ କରିଛି । ମୁଁ ବର୍ତ୍ତମାନ ଆପଣଙ୍କର ନୂତନ ଭାବନା ଜନିତ ପ୍ରତିପାଦନକୁ ପଢ଼ିବାକୁ ଚାହୁଁଛି । ଆପଣ ମତ ପୋଷଣ କରିଛନ୍ତି, "ଜାତିପ୍ରଥା ଯେଉଁ ଧର୍ମୀୟ ଧାରା ଉପରେ ଆଧାରିତ ହୋଇରହିଛି, ତାହାର ବିନାଶ ବ୍ୟତୀତ ଜାତିପ୍ରଥାକୁ ଦୂର କରିବା ସମ୍ଭବ ନୁହେଁ ।" ଆପଣଙ୍କର ଏହି ମତକୁ ଶୀଘ୍ର ଦୟାକରି ସ୍ପଷ୍ଟ କରନ୍ତୁ, ଫଳରେ ଏହାକୁ ଆମେ ପ୍ରେସରେ ଛାପିପାରିବୁ ଓ ଆଲୋଚନା ଚକ୍ରରେ ସ୍ଥାନ ଦେବୁ । ଏହି ମନ୍ତବ୍ୟ ମୋତେ ସେପରି ସ୍ପଷ୍ଟ ବୋଧ ହେଉନାହିଁ ।

ଆମ କାର୍ଯ୍ୟନିର୍ବାହୀ ସଭାରେ ଆପଣଙ୍କୁ ଆମ ବାର୍ଷିକ ଉତ୍ସବରେ ସଭାପତି କରି ଡାକିବା ପାଇଁ ସ୍ଥିର ହୋଇଛି । ଆପଣଙ୍କର ସୁବିଧା ଅନୁଯାୟୀ ଆମେ ଆମର ଦିନ ସ୍ଥିର କରିବୁ । ପଞ୍ଜାବର କେତେକ ହରିଜନ ଆପଣଙ୍କୁ ସାକ୍ଷାତ କରି ସେମାନଙ୍କର ଯୋଜନା ସମ୍ପର୍କରେ ଆଲୋଚନା କରିବାକୁ ଅତ୍ୟନ୍ତ ଆଗ୍ରହୀ ହୋଇଛନ୍ତି । ସୁତରାଂ ଆପଣ ଯଦି ଆମର ଅନୁରୋଧକୁ ରକ୍ଷାକରି ଆମ ସମ୍ମିଳନୀରେ ସଭାପତିତ୍ୱ କରିବାକୁ ଆସନ୍ତି ତେବେ ତଦ୍ୱାରା ଦୁଇଟି ଲକ୍ଷ୍ୟ ହାସଲ ହୋଇପାରିବ । ସବୁ ଶ୍ରେଣୀର ହରିଜନ

ନେତାମାନଙ୍କୁ ଆମେ ନିମନ୍ତ୍ରଣ କରିବୁ ଏବଂ ଆପଣଙ୍କର ଚିନ୍ତାଧାରା ସେମାନଙ୍କୁ ଦେବାରେ ଆପଣ ଅବକାଶ ପାଇପାରିବେ ।

ଆମ ଅନୁଷ୍ଠାନର ସହ-ସମ୍ପାଦକ ଶ୍ରୀ ଇନ୍ଦ୍ର ସିଂହଙ୍କୁ ଆପଣଙ୍କୁ ବମ୍ବେଠାରେ ଖ୍ରୀଷ୍ଟମାସ ସମୟରେ ସାକ୍ଷାତ କରିବାକୁ ମଣ୍ଡଳ ତରଫରୁ ପଠାଯିବ । ସେ ଆପଣଙ୍କୁ ସାକ୍ଷାତ କରି ଆମ ଅନୁଷ୍ଠାନକୁ ଆସିବା ପାଇଁ ଆମର ଅନୁରୋଧ ଜଣାଇବେ ।

×× ×× ×× ××

ମୁଁ ଜାଣିବାକୁ ପାଇଲି ଯେ ଜାତ-ପାତ-ତୋଡ଼କ ମଣ୍ଡଳ ସଂସ୍କାର ପ୍ରୟାସୀ ସବର୍ଣ୍ଣମାନଙ୍କର ଏକ ସଂଗଠନ ଯାହା ହିନ୍ଦୁମାନଙ୍କ ମଧ୍ୟରୁ ଜାତି ପ୍ରଥାକୁ ଲୋପ କରିବା ପାଇଁ କାର୍ଯ୍ୟ କରୁଛି । ମୋର ବ୍ୟକ୍ତିଗତ ଅଭିରୁଚି ଅନୁଯାୟୀ ସବର୍ଣ୍ଣ ହିନ୍ଦୁମାନଙ୍କର କୌଣସି ଆନ୍ଦୋଳନରେ ମୁଁ ଭାଗ ନେବାକୁ ଚାହେଁନାହିଁ । ସମାଜ ସଂସ୍କାର କ୍ଷେତ୍ରରେ ସେମାନଙ୍କର ଦୃଷ୍ଟିକୋଣ ମୋଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସୁତରାଂ ସେମାନଙ୍କ ସହିତ ଏକାଠି ଏ କ୍ଷେତ୍ରରେ କାର୍ଯ୍ୟ କରିବାର ଅସୁବିଧା ରହିଛି । ସେମାନଙ୍କ ସହିତ ଏକାଠି କାର୍ଯ୍ୟ କରିବା ଆମର ମତପାର୍ଥକ୍ୟ ଯୋଗୁଁ ମୋତେ ଅନୁକୂଳ ମନେହୁଏ ନାହିଁ । ଫଳରେ ଯେତେବେଳେ ମଣ୍ଡଳ ତରଫରୁ ତାଙ୍କ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ପ୍ରଥମେ ମୋତେ ଅନୁରୋଧ କରାଗଲା, ମୁଁ ସେଥିରେ ସମ୍ମତି ଦେଲିନାହିଁ । ମଣ୍ଡଳ ମୋର ଅସ୍ୱୀକାରକୁ ଗ୍ରହଣ ନକରି ଜଣେ ସଭ୍ୟଙ୍କୁ ମୋ ପାଖକୁ ପଠାଇଲେ । ସେ ମୋତେ ବମ୍ବେଠାରେ ସାକ୍ଷାତ କରି ସେମାନଙ୍କର ନିମନ୍ତ୍ରଣକୁ ଗ୍ରହଣ କରିବା ପାଇଁ ବାଧ କଲେ । ମୁଁ ଶେଷରେ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ସମ୍ମତି ଦେଲି । ସେମାନଙ୍କର ବାର୍ଷିକ ଉତ୍ସବ ମଣ୍ଡଳର ମୁଖ୍ୟ କାର୍ଯ୍ୟାଳୟ ଥିବା ଲାହୋରଠାରେ ହେବାକୁ ସ୍ଥିର ହୋଇଥିଲା । ସମ୍ମିଳନୀଟି ୧୯୩୬ ମସିହା ମେ'ମାସର ମଧ୍ୟ ଭାଗରେ ହେବାକୁ ସ୍ଥିର ହୋଇଥାଏ । କିନ୍ତୁ ଅଭ୍ୟର୍ଥନା ସମିତି ସମ୍ମିଳନୀର କାର୍ଯ୍ୟକ୍ରମକୁ ବାତିଲ କରିଦେଲେ । ମୋର ସଭାପତି ଅଭିଭାଷଣ ଛପା ସରିବାର ବହୁଦିନ ପରେ ସମ୍ମିଳନୀ ବାତିଲ ସଂକ୍ରାନ୍ତୀୟ ପତ୍ର ମୋ ପାଖକୁ ଆସିଲା । ମୋ ଲିଖିତ ଭାଷଣର ଛପା କପିଗୁଡ଼ିକ ମୋ ପାଖରେ ଥାଏ । ସମ୍ମିଳନୀରେ ସଭାପତିତ୍ୱ କରି ସଭାପତି ଅଭିଭାଷଣ ଦେବାର

ସୁଯୋଗ ମୁଁ ପାଇ ନ ପାରିବାରୁ ଅନ୍ୟମାନେ ଜାତିପ୍ରଥା ଓ ସେଥିରୁ ସୃଷ୍ଟ ସମସ୍ୟା ସମ୍ବନ୍ଧରେ ମୋର ମତାମତ ଜାଣିବାକୁ ଅବକାଶ ପାଇଲେ ନାହିଁ । ଅନ୍ୟମାନେ ମୋର ଦୃଷ୍ଟିକୋଣକୁ ଜାଣିବା ପାଇଁ ଛପା ଯାଇଥିବା ଭାଷଣ ପୁସ୍ତକଟିକୁ ବିକ୍ରି କରିବା ପାଇଁ ରଖାଗଲା । ଏଥିରେ ସନ୍ନିହିତ ଥିବା ପୃଷ୍ଠାଗୁଡ଼ିକରେ ମୋର ଭାଷଣଟି ରହିଛି ।

ଯେଉଁ ସମ୍ମିଳନୀରେ ମୋର ସଭାପତିତ୍ୱ କରିବାର ଥିଲା ତାହା କାହିଁକି ବାତିଲ କରାଗଲା ତାହା ଜାଣିବା ପାଇଁ ଅନ୍ୟମାନେ କୌତୂହଳୀ ହୋଇପାରନ୍ତି । ଆରମ୍ଭରେ ଭାଷଣଟି କେଉଁଠାରେ ଛପାଯିବ ସେ ନେଇ ଏକ ବିବାଦ ସୃଷ୍ଟି ହେଲା । ଭାଷଣଟିକୁ ବମ୍ବେରେ ଛାପିବା ପାଇଁ ମୁଁ ଚାହିଁଲି । କିନ୍ତୁ ମଣ୍ଡଳ ଆର୍ଥିକ ଦୃଷ୍ଟିରୁ ତାହା ଲାହୋରରେ ଛପାଇବା ପାଇଁ ଇଚ୍ଛାପ୍ରକାଶ କଲେ । ତାଙ୍କର ଏହି ପ୍ରସ୍ତାବରେ ମୁଁ ସମ୍ମତ ନ ହୋଇ ବମ୍ବେରେ ଛାପିବା ପାଇଁ ଗୁରୁତ୍ୱ ଦେଲି । ସେମାନେ ମୋର ପ୍ରସ୍ତାବ ସହିତ ସହମତ ହେଲେ ନାହିଁ । ମଣ୍ଡଳର କେତେକ ସଭ୍ୟ ମୋ ପାଖକୁ ଏକ ପତ୍ର ପଠାଇଲେ ଯେଉଁଥିରୁ କେତେକ ଅଂଶ ମୁଁ ନିମ୍ନରେ ଉଦ୍ଧାର କରୁଛି ।

୨୭/୩/୧୯୩୬

ମାନନୀୟ ଡ. ସାହେବ,

ଆପଣ ଶ୍ରୀ ସନ୍ତରାମଙ୍କୁ ୨୪ ତାରିଖରେ ଲେଖିଥିବା ପତ୍ର ଆମ୍ଭେମାନେ ଦେଖିଛୁ । ତାହା ପଢ଼ି ଆମେ କେତେକାଂଶରେ ନିରାଶ ହେଲୁ । ସମ୍ଭବତଃ ଏଠାରେ ସୃଷ୍ଟି ହୋଇଥିବା ପରିସ୍ଥିତି ସମ୍ପର୍କରେ ଆପଣ ପୂର୍ଣ୍ଣ ଅବଗତ ନୁହନ୍ତି । ପଞ୍ଜାବର ପ୍ରାୟ ସମସ୍ତ ହିନ୍ଦୁ ଆପଣଙ୍କୁ ନିମନ୍ତ୍ରଣ କରିବାକୁ ବିରୋଧ କରୁଛନ୍ତି । ଜାତ-ପାତ-ତୋଡ଼କ ମଣ୍ଡଳକୁ ଏଥିପାଇଁ କଟୁ ଭାବରେ ସମାଲୋଚନା କରାଯାଇଛି । ବିଭିନ୍ନ ସ୍ତରରୁ ଆମେ ନାନା ସମାଲୋଚନାର ପାତ୍ର ହୋଇଛୁ । ଯେଉଁ ପ୍ରମୁଖ ହିନ୍ଦୁ ନେତାମାନେ ମଣ୍ଡଳଠାରୁ ନିଜକୁ ଦୂରେଇ ନେବାକୁ ଧମକ ଦେଇଛନ୍ତି, ସେମାନଙ୍କ ଭିତରୁ କେତେକ ହେଲେ ଭାଇ ପରମାନନ୍ଦ, ବିଧାୟକ ମହାତ୍ମା ହଂସରାଜ (ହିନ୍ଦୁ ମହାସଭାର ପୂର୍ବତନ ସଭାପତି), ମନ୍ତ୍ରୀ ଡଃ ଗୋକୁଳ ଚନ୍ଦ୍ର ନାରଙ୍ଗ ଓ ଏମ.ଏଲ.ସି.ରାଜ ନରେନ୍ଦ୍ର ନାଥ ।

ଏ ସମସ୍ତ ସତ୍ତ୍ୱେ ଜାତ-ପାତ-ତୋଡ଼କ ମଣ୍ଡଳର କର୍ମକର୍ତ୍ତାଗଣ (ମୁଖ୍ୟ ହେଉଛନ୍ତି ଶ୍ରୀ ସନ୍ତ ରାମ) ଆପଣଙ୍କୁ ଡାକିବାର ପକ୍ଷପାତୀ । ଏଥିପାଇଁ ମଣ୍ଡଳ ଏଠାରେ ଅନେକ ଅପ୍ରିୟ ହୋଇପଡ଼ିଛି ।

× × ×

ଏହି ପରିସ୍ଥିତିରେ ମଣ୍ଡଳ ସହ ସହଯୋଗ କରିବା ଆପଣଙ୍କର କର୍ତ୍ତବ୍ୟ ଅଟେ । ଗୋଟିଏ ପଟେ ହିନ୍ଦୁମାନେ ମଣ୍ଡଳ ପାଇଁ ନାନା ସମସ୍ୟା ଓ ଅସୁବିଧା ସୃଷ୍ଟି କରିଛନ୍ତି । ଅପର ପକ୍ଷରେ ଆପଣ ଯଦି ପରିସ୍ଥିତିକୁ ଅଧିକ ଜଟିଳ କରନ୍ତି ତେବେ ତାହା ମଣ୍ଡଳ ପାଇଁ ଦୁର୍ଭାଗ୍ୟଜନକ ହେବ ।

ଆମେ ଆଶା କରୁଛୁ ଆପଣ ବିଷୟଟି ଉପରେ ଚିନ୍ତା କରିବେ ଓ ଯାହା ସମସ୍ତଙ୍କ ପାଇଁ ମଙ୍ଗଳ ହେବ ତାହା କରିବେ ।

× × ×

ଏହି ଚିଠିଟି ମୋତେ ବହୁତ ଦ୍ୱନ୍ଦ୍ୱରେ ପକାଇଲା । ମୁଁ ବୁଝିପାରିଲି ନାହିଁ ମୋର ଭାଷଣଟିକୁ ଏଠାରେ ଛପାଇବା କ୍ଷେତ୍ରରେ ଅଧିକ ଖର୍ଚ୍ଚ ହେଉଥିବା କେତୋଟି ଟଙ୍କା ପାଇଁ କାହିଁକି ମୋତେ ଅସନ୍ତୁଷ୍ଟ କରାଯାଉଛି । ଏହାଛଡ଼ା ମୋତେ ସଭାପତିତ୍ୱ କରିବା ପାଇଁ ଡକା ଯାଉଥିବାରୁ ତା'ର ପ୍ରତିବାଦରେ ସାର ଗୋକୁଳ ଚନ୍ଦ୍ର ନାରଙ୍ଗ ବାସ୍ତବରେ ଇସ୍ତଫା ଦେଇଛନ୍ତି ତାହା ମୁଁ ବିଶ୍ୱାସ କରିପାରୁନାହିଁ । କାରଣ ଶ୍ରୀ ଗୋକୁଳ ଚନ୍ଦ୍ରଙ୍କ ଠାରୁ ମୁଁ ତଳ ପତ୍ରଟି ପାଇଥିଲି ।

୫, ମୋଣ୍ଟଗୋମରୀ ରୋଡ଼, ଲାହୋର

୭।୨।୩୬

ପ୍ରିୟ ଡ. ଆମ୍ବେଦକର,

ଜାତ-ପାତ-ତୋଡ଼କ ମଣ୍ଡଳର କର୍ମକର୍ତ୍ତାଙ୍କଠାରୁ ମୁଁ ଜାଣିବାକୁ ପାଇଲି ଯେ ସେମାନଙ୍କ ପରବର୍ତ୍ତୀ ବାର୍ଷିକ ଉତ୍ସବରେ ସଭାପତି ଅଭିଭାଷଣ ଦେବାକୁ ଆପଣ ଆଗାମୀ ଛୁଟିରେ ଲାହୋର ଆସୁଛନ୍ତି । ଏହା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ଆପଣ

ଲାହୋରରେ ଥିବା ସମୟରେ ମୋ ସହିତ ରହିଲେ ମୁଁ ବହୁତ ଆନନ୍ଦିତ ହେବି । ଅନ୍ୟାନ୍ୟ ସାକ୍ଷାତରେ ।

ଆପଣଙ୍କର ପ୍ରିୟ

ଜି.ସି. ନାରଙ୍ଗ

ସତ୍ୟ ଯାହା ହେଉନା କାହିଁକି ମୁଁ ଏହି ଚାପ ଆଗରେ ମୁଣ୍ଡ ନୁଆଁଇଲି ନାହିଁ । ଯେତେବେଳେ ମୋର ଭାଷଣଟିକୁ ବମ୍ବେରେ ଛପାଇବା ପାଇଁ ମୁଁ ନିଷ୍ପତ୍ତି କରି ସାରିଥିଲି, ସେତେବେଳେ ମୋର ପ୍ରସ୍ତାବରେ ମଣ୍ଡଳ ସମ୍ମତ ହେବା ପରିବର୍ତ୍ତେ ମୋତେ ଏକ ତାରବାର୍ତ୍ତା ପଠାଇଲେ ଯେ ଶ୍ରୀ ହର ଭଗବାନ ମୋତେ ସାକ୍ଷାତ୍ କରି ଆଲୋଚନା କରିବାକୁ ବମ୍ବେ ଆସୁଛନ୍ତି । ଶ୍ରୀ ହର ଭଗବାନ ଏପ୍ରିଲ ୯ରେ ବମ୍ବେ ଆସିଲେ । ମୁଁ ଯେତେବେଳେ ତାଙ୍କୁ ସାକ୍ଷାତ୍ କଲି ସେ ମୋର ଭାଷଣଟି ଛପାଯିବା ନେଇ କୌଣସି ପ୍ରସଙ୍ଗ ଉଠାଇଲେ ନାହିଁ । ଆମର ଆଲୋଚନା ଭିତରେ ଏହା ବମ୍ବେରେ କିମ୍ବା ଲାହୋରରେ ଛାପିବା ନେଇ କୌଣସି ବିଷୟ ଉଠିଲା ନାହିଁ । ସେ କେବଳ ମୋ ଭାଷଣର ବିଷୟବସ୍ତୁ ସମ୍ପର୍କରେ ଜାଣିବାକୁ ଆଗ୍ରହ ପ୍ରକାଶ କଲେ । ସୁତରାଂ ମୁଁ ନିଶ୍ଚିତ ହେଲି ଯେ ଲାହୋରରେ ଏହା ଛପାଇବା ପଛରେ କିଛି ଅର୍ଥ ସଞ୍ଚୟ କରିବା ମଣ୍ଡଳର ଉଦ୍ଦେଶ୍ୟ ନୁହେଁ, ବରଂ ଭାଷଣଟିର ବିଷୟବସ୍ତୁ ଜାଣିବା ଏହାର ଉଦ୍ଦେଶ୍ୟ । ମୁଁ ଭାଷଣର ଏକ କପି ତାଙ୍କୁ ଦେଲି । ମୋର କେତେକ ମତ ଉପରେ ସେ ଅସନ୍ତୁଷ୍ଟ ହେବା ମୁଁ ଅନୁଭବ କଲି । ସେ ଲାହୋର ଫେରିଗଲେ । ଲାହୋର ଫେରିଯାଇ ସେ ମୋତେ ତଳ ପତ୍ରଟି ଲେଖିଲେ ।

ଲାହୋର

୧୪।୪।୧୯୩୬

ପ୍ରିୟ ଡ. ସାହେବ,

ମୁଁ ବମ୍ବେରୁ ଫେରି ଏଠାରେ ୧୨ ତାରିଖରେ ପହଞ୍ଚିବା ପରେ ଅସୁସ୍ଥ ହୋଇପଡ଼ିଛି । ତା'ର କାରଣ ପାଞ୍ଚ ଛ'ଦିନ ଧରି ମୁଁ ଟ୍ରେନ୍‌ରେ ଭଲ ଭାବରେ

ଶୋଇପାରି ନାହିଁ । ଏଠାରେ ପହଞ୍ଚି ମୁଁ ଜାଣିବାକୁ ପାଇଲି ଯେ ଆପଣ ଅମୃତସର ଆସୁଛନ୍ତି । ମୁଁ ସୁସ୍ଥ ଥିଲେ ସେଠାରେ ଆପଣଙ୍କୁ ଯାଇ ସାକ୍ଷାତ୍ କରିଥାନ୍ତି । ଆପଣଙ୍କର ଅଭିଭାଷଣଟିକୁ ଅନୁବାଦ ପାଇଁ ମୁଁ ଶ୍ରୀ ସନ୍ତରାମଙ୍କୁ ଦେଇଛି । ସେ ଆପଣଙ୍କର ବକ୍ତବ୍ୟକୁ ପ୍ରଶଂସା କରିଛନ୍ତି, କିନ୍ତୁ ସେ ନିଶ୍ଚିତ ନୁହନ୍ତି ଯେ ଏହାକୁ ୨୫ ତାରିଖ ସୁଦ୍ଧା ଅନୁବାଦ କରାଯାଇ ଛପାଯାଇ ପାରିବ । ଆମେ ନିଶ୍ଚିତ ଯେ ଏହାକୁ ବ୍ୟାପକ ପ୍ରଚାର କରାଯିବ ଯଦ୍ୱାରା ଏହା ହିନ୍ଦୁମାନଙ୍କର ନିଦ୍ରା ଭଙ୍ଗ କରାଇବ ।

ଭାଷଣର ଗୋଟିଏ ପଂକ୍ତି ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ଏଠାରେ କେତେକ ବନ୍ଧୁ ତାହା ପଢ଼ି କିଛିଟା ଭୁଲ ବୁଝିଛନ୍ତି । ଆମେ ଯେଉଁମାନେ କୌଣସି ଅପ୍ରୀତିକର ଘଟଣା ନଘଟି ସମ୍ମିଳନୀଟି ଭଲରେ ସମାପ୍ତ ହେବା ଚାହୁଁଛୁ ସେମାନେ ଆଶା କରୁଛୁ ଆପଣଙ୍କର ଅଭିଭାଷଣରୁ ଆପଣ ବେଦ ସମ୍ପର୍କରେ ଦେଇଥିବା ମନ୍ତବ୍ୟକୁ ବାଦ ଦେବେ । ଏହା ବିଚାର କରିବା ପାଇଁ ଆପଣଙ୍କ ଉପରେ ମୁଁ ଛାଡ଼ିଦେଉଛି । ଆପଣଙ୍କ ଶେଷ ପରିଚ୍ଛେଦରେ ଆପଣ ଏହା ସ୍ପଷ୍ଟ କରିଦେବା ଆବଶ୍ୟକ ଯେ ଅଭିଭାଷଣରେ ବ୍ୟକ୍ତ ହୋଇଥିବା ମତ ସମ୍ପୂର୍ଣ୍ଣ ଭାବରେ ଆପଣଙ୍କର ନିଜସ୍ୱ ଓ ତାହା ସହିତ ମଣ୍ଡଳର କୌଣସି ସମ୍ବନ୍ଧ ନାହିଁ । ମୁଁ ଆଶା କରୁଛି ମୋର ଏହି ବକ୍ତବ୍ୟକୁ ଆପଣ ଭୁଲ ବୁଝିବେ ନାହିଁ । ଆପଣଙ୍କ ଅଭିଭାଷଣର ଏକ ହଜାର କପି ଆପଣ ଆମକୁ ଦେବେ, ଅବଶ୍ୟ ଏଥିପାଇଁ ଆମେ ପ୍ରାପ୍ୟ ଦେବୁ । ଏହି ବିଷୟରେ ତାର ଯୋଗେ ଏକ ସମ୍ବାଦ ମୁଁ ଆପଣଙ୍କୁ ପଠାଇଛି । ଏହି ପତ୍ର ସହିତ ୧୦୦ ଟଙ୍କାର ଗୋଟିଏ ଚେକ୍ ମଧ୍ୟ ପଠାଉଛି ଦୟାକରି ଏହାର ପ୍ରାପ୍ତିସ୍ୱୀକାର କରିବେ ।

ମୁଁ ଅଭ୍ୟର୍ଥନା ସମିତିର ଏକ ସଭା ଡାକିଛି, ସେଥିରେ ଯାହା ନିଷ୍ପତ୍ତି ହେବ ତାହା ଆପଣଙ୍କୁ ସଙ୍ଗେ ସଙ୍ଗେ ଜଣାଇଦେବି । ମୋ ପ୍ରତି ବନ୍ଧୁଭାବରେ ଆପଣ ଯେଉଁ ସହୃଦୟତା ଦେଖାଇଛନ୍ତି ସେ ପାଇଁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଆପଣ କଷ୍ଟ ସ୍ୱୀକାର କରି ଅଭିଭାଷଣଟିକୁ ପ୍ରସ୍ତୁତ କରିଛନ୍ତି । ଏସବୁ ପାଇଁ ଆମେ ଆପଣଙ୍କ ପାଖରେ ଗଭୀର ଭାବରେ କୃତଜ୍ଞ ।

ଆପଣଙ୍କର ପ୍ରିୟ

ହର ଭଗବାନ

ବି.ଦ୍ର: ଅଭିଭାଷଣଟିକୁ ଛପା ସରିବା ପରେ ଦୟାକରି ତା'ର କପିଗୁଡ଼ିକ ପାସେଞ୍ଜର ଟ୍ରେନ୍‌ରେ ପଠାଇଦେବେ । ଫଳରେ ଆମେ ତାହା ପ୍ରେସ ମାଧ୍ୟମରେ ପ୍ରଚାର କରିପାରିବୁ ।

ସେହି ଅନୁଯାୟୀ ମୋ ଲେଖାର ଏକ ହଜାର କପି ଛପାଇବା ପାଇଁ ମୁଁ ପ୍ରେସରେ ବରାଦ କଲି । ଏହାର ଆଠଦିନ ପରେ ଶ୍ରୀ ହର ଭଗବାନଙ୍କଠାରୁ ମୁଁ ଆଉ ଏକ ପତ୍ର ପାଇଲି ଯାହା ନିମ୍ନରେ ଦିଆଗଲା ।

ଲାହୋର

୨୪।୪।୩୬

ପ୍ରିୟ ଡଃ ଆମ୍ବେଦକର,

ଆମେ ଆପଣଙ୍କର ତାର ଓ ପତ୍ର ପାଇଛୁ । ସେ ପାଇଁ ଧନ୍ୟବାଦ । ଆପଣଙ୍କର ଇଚ୍ଛା ଅନୁଯାୟୀ ସମ୍ମିଳନୀକୁ ଘୁଞ୍ଚାଇ ଦେଇଛୁ, କିନ୍ତୁ ଆଗାମୀ ୨୫ ଓ ୨୬ ତାରିଖରେ ଏହା କରିବା ଉଚିତ ହେବ । ଏଠାରେ ଗରମ ଆସ୍ତେ ଆସ୍ତେ ବଢ଼ିଚାଲିଛି ଓ ମେ'ମଧ ଭାଗ ଆଡ଼କୁ ଗରମ ବେଶ୍ ପଡ଼ି ଯାଇଥିବ । ସେତେବେଳେ ଦିନ ସମୟରେ ସଭା କରିବା ଆଦୌ ସୁଖପ୍ରଦ ଓ ପ୍ରୀତିକର ହେବନାହିଁ । ତଥାପି ଯଦି ଏହା ମେ' ମଧ ଭାଗ ସୁଦ୍ଧା ହୁଏ ଯେତେ ଦୂର ସମ୍ଭବ ଏହାକୁ ସୁଖପ୍ରଦ କରିବା ପାଇଁ ଆମେ ସମସ୍ତେ ଚେଷ୍ଟା କରିବୁ ।

ଗୋଟିଏ ବିଷୟରେ ଆପଣଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଆମେ ବାଧ ହେଉଛୁ । ଆପଣ ମନେ ରଖିଥିବେ ମୁଁ ଯେତେବେଳେ ଆପଣଙ୍କୁ ସାକ୍ଷାତ୍ କରିଥିଲି ସେତେବେଳେ କହିଥିଲି ଯେ ଆପଣ ଧର୍ମ ପରିବର୍ତ୍ତନ କରିବାକୁ ଘୋଷଣା କରିବା ପ୍ରତି କିଛି ବ୍ୟକ୍ତିଙ୍କର ଭୁଲ୍ ଧାରଣା ରହିଛି । ସେତେବେଳେ ଆପଣ ମୋତେ କହିଥିଲେ ଯେ ଏହା ମଣ୍ଡଳର କାର୍ଯ୍ୟକ୍ରମ ସହିତ କୌଣସି ସମ୍ପର୍କିତ ନୁହେଁ ଏବଂ ମଣ୍ଡଳର ଆୟୋଜିତ ସଭାକୁ ଏଥିପାଇଁ ଆପଣ ବ୍ୟବହାର କରିବେ ନାହିଁ । ଆପଣ ଯେତେବେଳେ ଭାଷଣର ପାଣ୍ଡୁଲିପିଟି ମୋତେ ଦେଲେ ଆପଣ ମୋତେ କହିଥିଲେ ଯେ ତାହା ହିଁ ଆପଣଙ୍କ ଅଭିଭାଷଣର ସାର ବସ୍ତୁ ଏବଂ ଆପଣଙ୍କ ଲେଖାରେ ଏ ସମ୍ପର୍କରେ ଆପଣ

ଆଉ ଦୁଇ ତିନୋଟି ପରିଚ୍ଛଦ ସଂଶ୍ଳିଷ୍ଟ କରିବେ । ଆପଣଙ୍କର ଅଭିଭାଷଣର ଦ୍ୱିତୀୟ ଭାଗଟି ପାଇବା ପରେ ଆମେ ଆଶ୍ଚର୍ଯ୍ୟ ହେଲୁଁ ଯେ ଏହା ଏତେ ଦୀର୍ଘ ହୋଇଛି ଖୁବ୍ କ୍ୱଚିତ୍ ଲୋକ ଏହାକୁ ପୂର୍ଣ୍ଣାଙ୍ଗ ଭାବରେ ପଢ଼ିବେ । ଆପଣ ଏକାଧିକ ସ୍ଥାନରେ ଲେଖିଛନ୍ତି ଯେ ଆପଣ ହିନ୍ଦୁଧର୍ମ ଛାଡୁଛନ୍ତି ଏବଂ ଜଣେ ହିନ୍ଦୁ ଭାବରେ ଏହା ହେଉଛି ଆପଣଙ୍କର ଶେଷ ଅଭିଭାଷଣ । ଏହାଛଡ଼ା ଆପଣ ବେଦ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥର ନୈତିକତା ଓ ବିଚାରଶୀଳତାକୁ ସମାଲୋଚନା କରିଛନ୍ତି । ପୁନଶ୍ଚ ବେଦ ଓ ହିନ୍ଦୁ ଧର୍ମର କେତେକ ବୈଷୟିକ ଦିଗ ଉପରେ ଆଲୋଚନା କରିଛନ୍ତି ଯାହାର କି ପ୍ରସଙ୍ଗଟି ସହିତ କୌଣସି ସମ୍ବନ୍ଧ ନାହିଁ । ଫଳରେ ଆପଣଙ୍କ ଲେଖାର କେତେକ କ୍ଷେତ୍ର ଅଦରକାରୀ ଓ ଅପ୍ରାସଙ୍ଗିକ ହୋଇଛି । ମୋତେ ଭାଷଣର ଦେଇଥିବା ଅଂଶଟି ଭିତରେ ଯଦି ଆପଣ ନିଜର ମତକୁ ସୀମିତ ରଖିଥାନ୍ତେ ତେବେ ଆମେ ଆନନ୍ଦିତ ହୋଇଥାନ୍ତୁ । ଯଦି ତାହା ବାହାରକୁ ଯିବା ଆବଶ୍ୟକ ଥିଲା ତେବେ ଆପଣ ବ୍ରାହ୍ମଣବାଦ ବିଷୟରେ ଯାହା ଲେଖିଛନ୍ତି ସେଇ ପ୍ରସଙ୍ଗଟି ଉପରେ ସୀମିତ ରହିଥାନ୍ତେ । ଆପଣଙ୍କର ଲେଖାର ଶେଷ ଭାଗରେ ହିନ୍ଦୁଧର୍ମର ବିନାଶ ସମ୍ପର୍କରେ ଆପଣ ଆଲୋଚନା କରିଛନ୍ତି । ଏବଂ ଆମର ପବିତ୍ର ଧର୍ମଗ୍ରନ୍ଥଗୁଡ଼ିକର ନୈତିକତା ଉପରେ ସନ୍ଦେହ ଆରୋପ କରିଛନ୍ତି । ତା'ଛଡ଼ା ଆପଣ ଯେ ହିନ୍ଦୁଧର୍ମ ତ୍ୟାଗ କରୁଛନ୍ତି ତା'ର ମଧ୍ୟ ସୂଚନା ଦେଇଛନ୍ତି । ମୁଁ ଭାବୁଛି ଏସବୁ ଅପ୍ରାସଙ୍ଗିକ ଅଟେ ।

ସମ୍ମିଳନୀର ଆୟୋଜକ ସମସ୍ତ ବନ୍ଧୁମାନଙ୍କ ତରଫରୁ ମୁଁ ଆପଣଙ୍କୁ ବିନୀତ ଅନୁରୋଧ କରୁଛି କି ଆପଣଙ୍କ ଅଭିଭାଷଣରୁ ପୂର୍ବ ସୂଚିତ ପରିଚ୍ଛେଦଗୁଡ଼ିକ ବାଦ୍ ଦେଇ ଆପଣ ପ୍ରଥମେ ମୋତେ ଯେଉଁ ଭାଷଣଟି ଦେଇଥିଲେ, ସେଥିରେ ନିଜକୁ ସୀମିତ ରଖିବେ କିମ୍ବା ବ୍ରାହ୍ମଣବାଦ ଉପରେ ଅଳ୍ପ କେତୋଟି ପରିଚ୍ଛେଦ୍ ସଂଯୁକ୍ତ କରିବେ । ଆପଣଙ୍କର ବକ୍ତବ୍ୟକୁ ଅଯଥା ଦୀର୍ଘ ଓ ଉତ୍ତେଜନାପୂର୍ଣ୍ଣ କରିବା ବିଜ୍ଞତାର କାର୍ଯ୍ୟ ହେବ ନାହିଁ । ଆମ ଭିତରୁ ଅନେକ ଆପଣଙ୍କର ଅନୁଭୂତି ସହିତ ଏକମତ ଓ ହିନ୍ଦୁଧର୍ମର ସଂସ୍କାର ଆଣିବା ପାଇଁ ଆପଣଙ୍କର ପଦକ୍ଷେପକୁ ଆମେ ସମର୍ଥନ କରୁ । ଯଦି ଆପଣ ଏହି ସଂସ୍କାର ପାଇଁ ପ୍ରୟାସ ଜାରି ରଖିବେ ତେବେ ମୁଁ ଆପଣଙ୍କୁ ପ୍ରତିଶ୍ରୁତି ଦେଇପାରେ ଯେ ପଞ୍ଜାବରୁ ବହୁ ବ୍ୟକ୍ତି ଆପଣଙ୍କ ସଂସ୍କାର ପ୍ରୟାସୀ କାର୍ଯ୍ୟକ୍ରମରେ ସୈନିକ ଭାବରେ ଯୋଗ ଦେବେ ।

ବାସ୍ତବରେ ଆମେ ଭାବିଥିଲୁ ଆପଣ ଯେହେତୁ ଜାତି ବ୍ୟବସ୍ଥା ସମ୍ପର୍କରେ ଗଭୀର ଭାବରେ ଅନୁଶୀଳନ କରିଛନ୍ତି ଜାତିପ୍ରଥାର କୁପ୍ରଭାବକୁ ବିଲୋପ କରିବାରେ ଆପଣ ଆମକୁ ପଥ ପ୍ରଦର୍ଶନ କରିବେ ଏବଂ ଏକ ସାମାଜିକ ବିପ୍ଲବ ଆଣିବାରେ ଆମର ହାତ ମୁଠାକୁ ଟାଣ କରିବେ । ଏହି କାର୍ଯ୍ୟକ୍ରମରେ ଆପଣ କେନ୍ଦ୍ରବିନ୍ଦୁ ହେବେ ଓ ନେତୃତ୍ୱ ନେବେ । କିନ୍ତୁ ଆପଣଙ୍କର ଘୋଷଣାଦ୍ୱାରା ଏହି ଲକ୍ଷ୍ୟକୁ ଆପଣ ଅତି ଦୁର୍ବଳ କରି ଦେବା ସହ ସମସ୍ୟାଟିକୁ ନିରସ କରି ଦେଇଛନ୍ତି । ଏହି ପରିସ୍ଥିତିରେ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଯେ ଆପଣ ସମଗ୍ର ବ୍ୟାପାର ଉପରେ ଚିନ୍ତା କରିବେ । ଆପଣଙ୍କର ଅଭିଭାଷଣକୁ ଅଧିକ କ୍ରିୟାଶୀଳ କରିବା ପାଇଁ ଆପଣ କହିବା ଉଚିତ ହେବ ଯେ ଯଦି ହିନ୍ଦୁମାନେ ଜାତିପ୍ରଥାର କୁପରିଣାମକୁ ନଷ୍ଟ କରିବା ପାଇଁ ଠିକ୍ ଭାବରେ ପଦକ୍ଷେପ ନେବେ ତେବେ ଆପଣ ସେଥିପାଇଁ ନେତୃତ୍ୱ ଦେବେ । ଜାତିପ୍ରଥାକୁ ବିଲୋପ କରିବା ପାଇଁ ଆବଶ୍ୟକ ପଦକ୍ଷେପ ଭିତରେ ଯଦି ନିଜର ସମ୍ପର୍କୀୟଙ୍କ ସହିତ ଅପ୍ରିୟ ହେବାକୁ ହୁଏ ତେବେ ମଧ୍ୟ ଆମେ ଆପଣଙ୍କ ସହ ସହଯୋଗ କରିପାରିବୁ । ଯଦି ଆପଣ ସେପରି କରନ୍ତି ତେବେ, ମୁଁ ଆପଣଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇପାରେ ଯେ ଆପଣଙ୍କର ଉଦ୍ୟମରେ ଆପଣ ପଞ୍ଜାବରୁ ଅନେକ ସମର୍ଥନ ଲାଭ କରିବେ ।

ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଯଦି ଆପଣ ଆମକୁ ସାହାଯ୍ୟ କରନ୍ତି ତେବେ ମୁଁ ଆପଣଙ୍କ ପାଖରେ କୃତଜ୍ଞ ହେବି । ଆପଣ ଜାଣନ୍ତି ଆମେ ଏହା ଭିତରେ ଗୁଡ଼ିଏ ଖର୍ଚ୍ଚ କଲୁଣି ତଥା ଆମ୍ଭେମାନେ କେତେକ ସନ୍ଦେହ ଭିତରେ ମଧ୍ୟ ରହିଛୁ । ମୁଁ ଆଶା କରୁଛି ଆପଣ ଆପଣଙ୍କର ଅଭିଭାଷଣକୁ ସୀମିତ କରିବେ ଓ ମତାମତ ଆମକୁ ଶୀଘ୍ର ଜଣାଇବେ । ଯଦି ଆପଣ ସମଗ୍ର ଅଭିଭାଷଣଟିକୁ ଯାହା ଆପଣ ପଠାଇଛନ୍ତି ପୂର୍ଣ୍ଣ ଭାବରେ ଛାପିବାକୁ ଜିଦ୍ ଧରିବେ, ତେବେ ମୁଁ ଦୁଃଖର ସହିତ କହିବି ଯେ ଏହା ସମ୍ଭବ ହୋଇପାରିବ ନାହିଁ । ସେ କ୍ଷେତ୍ରରେ ସମ୍ମିଳନୀର ଆୟୋଜନ କରିବା ସମ୍ଭବପର ହେବ ନାହିଁ ଏବଂ ଆମେ ବାଧ୍ୟ ହୋଇ ଏହାକୁ ଅନିର୍ଦ୍ଦିଷ୍ଟକାଳ ପାଇଁ ଘୁଞ୍ଚାଇ ଦେବୁ । ସେପରି ହେଲେ ଆମେ ଲୋକମାନଙ୍କର ଆସ୍ଥା ହରାଇବୁ । ଏହାକୁ ବାରମ୍ବାର ଘୁଞ୍ଚାଇବା ଦ୍ୱାରା ଆମେ ଏଠିକାର ଜନସାଧାରଣଙ୍କର ଅଶ୍ରଦ୍ଧାଭାଜନ ହେବୁ । ଆମେ ଆପଣଙ୍କୁ

ଏକଥା ମଧ୍ୟ ସୂଚାଇବା ଉଚିତ ହେବ ଯେ ଆପଣ ଜାତିପ୍ରଥା ଉପରେ ଏପରି ଏକ ସୁଦୀର୍ଘ ଓ ପାଣ୍ଡିତ୍ୟପୂର୍ଣ୍ଣ ନିବନ୍ଧ ଲେଖି ଆମ ଅନ୍ତରରେ ଏକ ସ୍ଥାନ ଅଧିକାର କରିଛନ୍ତି । ଜାତିପ୍ରଥା ଉପରେ ଏପରି ଏକ ଗଭୀର ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ସମ୍ଭବତଃ ଲେଖା ଯାଇନାହିଁ । ଏପରିକି ଏହି ନିବନ୍ଧ ପ୍ରସ୍ତୁତ କରିବାରେ ଆପଣ ଯେଉଁ ଶ୍ରମ ସ୍ୱୀକାର କରିଛନ୍ତି ସେଥିପାଇଁ ଆମେ ଆପଣଙ୍କ ପାଖରେ ଚିରକୃତଜ୍ଞ । ଆପଣଙ୍କର ମହାନୁଭବତା ପାଇଁ ଆନ୍ତରିକ ଧନ୍ୟବାଦ ଜଣାଉଛୁ । ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନର ସହ ରହୁଛି ।

ଆପଣଙ୍କର ପ୍ରିୟ

ହର ଭଗବାନ

ଏହି ପତ୍ର ପାଇବା ପରେ ମୁଁ ତଳ ଚିଠିଟି ଲେଖି ଉତ୍ତର ଦେଇଥିଲି ।

ତା ୨୭।୪।୧୯୩୬

ପ୍ରିୟ ଶ୍ରୀ ହର ଭଗବାନ,

ମୁଁ ଆପଣଙ୍କର ୨୨।୪ର ପତ୍ର ପାଇଛି । ଜାତ-ପାତ-ତୋଡ଼କ ମଣ୍ଡଳର ଅଭ୍ୟର୍ଥନା ସମିତିର ନିଷ୍ପତ୍ତି ଯାହା ଆପଣ ମୋତେ ଜଣାଇଛନ୍ତି ତାହା ଦୁଃଖଦାୟକ । ଆପଣ ଲେଖିଛନ୍ତି ଯଦି ମୁଁ ମୋର ନିବନ୍ଧଟିକୁ ପୂର୍ଣ୍ଣାଙ୍ଗ ଭାବରେ ଛାପିବାକୁ ଚାହିଁବି ତେବେ ମଣ୍ଡଳ ବାଧ୍ୟ ହୋଇ ସମ୍ମିଳନୀଟିକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଘୁଞ୍ଚାଇଦେବ । ଏହି ପରିପ୍ରେକ୍ଷୀରେ ବରଂ ସମ୍ମିଳନୀଟିକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଘୁଞ୍ଚାଇବା ଅପେକ୍ଷା ବାତିଲ କରିବା ଠିକ୍ ହେବ । ଯଦି ମଣ୍ଡଳ ମୋର ଅଭିଭାଷଣଟିକୁ ନିଜର ଲକ୍ଷ୍ୟ ହାସଲ ପାଇଁ କାଟଛାଟ କରିବାକୁ ଜିଦ୍ ଧରିବ ତେବେ ସ୍ପଷ୍ଟ ଭାବରେ କହିଲେ ଏହା ବାତିଲ କରିବା ବରଂ ଉଚିତ ହେବ । ଅବଶ୍ୟ ମୋର ଏହି ନିଷ୍ପତ୍ତି ଆପଣଙ୍କୁ ଭଲ ଲାଗି ନ ପାରେ । କିନ୍ତୁ ଆପଣଙ୍କର ସମ୍ମିଳନୀରେ ସଭାପତିତ୍ୱ କରିବାର ଗୌରବ ପାଇଁ ଜଣେ ସଭାପତି ଭାବରେ ନିଜର ବକ୍ତବ୍ୟ ପ୍ରଦାନ କରିବା କ୍ଷେତ୍ରରେ ମୋର ଯେଉଁ ସ୍ୱାଧୀନତା ରହିଛି ମୁଁ ତାହାକୁ ପରିତ୍ୟାଗ କରିପାରିବି ନାହିଁ । କୌଣସି ସମ୍ମିଳନୀରେ ସଭାପତିତ୍ୱ କରୁଥିବା ଜଣେ ବ୍ୟକ୍ତି ନିଜର ଦୃଷ୍ଟିକୋଣ ଯାହା ସେ ଯଥାର୍ଥ ବୋଲି

ବିଚାର କରନ୍ତି ତାହା ବ୍ୟକ୍ତ କରିବାର ସ୍ୱାଧୀନତା ତାଙ୍କର ରହିବା ଆବଶ୍ୟକ। ସୁତରାଂ ମଣ୍ଡଳକୁ ଖୁସି କରିବା ପାଇଁ ମୁଁ ମୋର ସେହି ସ୍ୱାଧୀନତାକୁ ବଳି ଦେଇପାରିବି ନାହିଁ। ଏଠାରେ ଏକ ନୀତିଗତ ପ୍ରଶ୍ନ ରହିଛି ଓ ଏକ ନୀତିକୁ ବଳିଦେଇ ମୁଁ ସାଲିସ କରିପାରିବି ନାହିଁ।

ବାସ୍ତବରେ ଆପଣଙ୍କର ଅଭ୍ୟର୍ଥନା ସମିତିର ନିଷ୍ପତ୍ତି ସଂକ୍ରାନ୍ତରେ କୌଣସି ବିବାଦ ଭିତରକୁ ମୁଁ ପ୍ରବେଶ କରିବାକୁ ଚାହେଁ ନାହିଁ। କିନ୍ତୁ ଯେହେତୁ ଆପଣ କେତେକ କାରଣ ଦର୍ଶାଇଛନ୍ତି ଯେଉଁଥିରୁ ଏ ବ୍ୟାପାରଟିରେର ମୋତେ ଦାୟୀ କରାଯାଇଛି ତେଣୁ ଆପଣଙ୍କର ପ୍ରଶ୍ନର ଉତ୍ତର ଦେବା ମୁଁ ଉଚିତ ମନେକରୁଛି। ମୋ ଅଭିଭାଷଣରେ ବ୍ୟକ୍ତ ହୋଇଥିବା କେତେକ ମତାମତ ଯାହା ବିରୁଦ୍ଧରେ ମଣ୍ଡଳର ସଭ୍ୟମାନେ ଆପତ୍ତି ଉଠାଇଛନ୍ତି ତାହା ଯେ ମୁଁ ମନକୁ ମନ ଲେଖିଛି ଆପଣଙ୍କର ଏହି ଧାରଣାକୁ ମୁଁ ଦୂର କରିବାକୁ ଚାହୁଁଛି। ଶ୍ରୀ ସନ୍ତରାମ ମୋତେ କେତେଗୁଡ଼ିଏ ପ୍ରଶ୍ନ ପଚାରିଥିଲେ। ତାଙ୍କର ଗୋଟିଏ ପତ୍ରର ଉତ୍ତରରେ ମୁଁ ଲେଖିଥିଲି ଯେ ଜାତିପ୍ରଥାକୁ ବିଲୋପ କରିବାକୁ ହେଲେ ଜାତି ଜାତି ଭିତରେ ସହ ଭୋଜନ ଓ ଆନ୍ତର୍ଜାତି ବିବାହ ଠିକ୍ ପ୍ରଣାଳୀ ନୁହେଁ। ପରନ୍ତୁ ଯେଉଁ ଧର୍ମୀୟ ଧାରଣା ଉପରେ ଜାତି ବ୍ୟବସ୍ଥା ତିଷ୍ଠି ରହିଛି ସେହି ଭାବନାର ବିଲୋପ ନହେଲେ ଜାତିପ୍ରଥା ଧ୍ୱଂସ ହେବନାହିଁ। ମୋର ଏହି ପତ୍ର ଉପରେ ଶ୍ରୀ ସନ୍ତରାମ ଲେଖିଲେ ଯେ ଏହି ଭାବନା ନିଶ୍ଚିତ ଭାବେ ନୂତନ ଓ ଏହାକୁ ଅଧିକ ବ୍ୟାଖ୍ୟା କରିବାକୁ ସେ ଚାହିଁଥିଲେ। ସନ୍ତରାମଙ୍କର ଅନୁସନ୍ଧାନ ପରିପ୍ରେକ୍ଷୀରେ ମୁଁ ଭାବିଲି ଯେ ମୁଁ ଯାହା ଗୋଟିଏ ବାକ୍ୟରେ ଲେଖିଥିଲି ତାହା ମୋର ନିବନ୍ଧରେ ବିସ୍ତୃତଭାବେ ବ୍ୟାଖ୍ୟା କରିବି। ସୁତରାଂ ଏଥିରେ ବ୍ୟକ୍ତ ହୋଇଥିବା ମତାମତ ଆକସ୍ମିକ ଭାବରେ ଦିଆଯାଇ ନାହିଁ। ବରଂ ଆପଣଙ୍କର ମଣ୍ଡଳର କର୍ଣ୍ଣଧାର ଶ୍ରୀ ସନ୍ତରାମ ଏହି ପ୍ରସଙ୍ଗ ଉପରେ ଅବଗତ ରହିଥିଲେ। ମୁଁ ପୁନଶ୍ଚ ଏହା କହିବାକୁ ଚାହେଁ ଯେ ମୁଁ ଏହା ଉପଯୋଗୀ ହେବ ଭାବି ଲେଖିନାହିଁ। ପରନ୍ତୁ ଅନୁଭବ କରିଥିଲି ଯେ ମୋର ବ୍ୟାଖ୍ୟାଟିକୁ ଅଧିକ ସ୍ପଷ୍ଟ କରିବା ପାଇଁ ଏହା ପୂର୍ଣ୍ଣାଙ୍ଗ କରିବା ଠିକ୍ ହେବ। ମୁଁ ପଢ଼ି ଆଶ୍ଚର୍ଯ୍ୟ ହେଉଛି ଯେ ମୋ ଲେଖାର ଯେଉଁ ଅଂଶଟିକୁ ଆପଣଙ୍କର ସମିତି ଅଭିଯୋଗ କରିଛି ଆପଣ ତାହାକୁ ଅନାବଶ୍ୟକ ଓ ଅପ୍ରାସଙ୍ଗିକ ବୋଲି ଚିତ୍ରଣ କରିଛନ୍ତି। ଆପଣଙ୍କ

ସମିତିରେ ଥିବା ସଭ୍ୟମାନଙ୍କ ପରି ମୁଁ ଜଣେ ଓକିଲ ଓ କୌଣସି ବିଷୟରେ ପ୍ରାସଙ୍ଗିକତା ନେଇ ମୋର ଧାରଣା ରହିଛି । ବରଂ ମୁଁ ଗୁରୁତ୍ୱର ସହ କହିବି ଯେ ଆପଣ ଯେଉଁ ଅଂଶକୁ ଅପ୍ରାସଙ୍ଗିକ କହିଛନ୍ତି ତାହା ଯଥେଷ୍ଟ ପ୍ରାସଙ୍ଗିକ ଓ ଗୁରୁତ୍ୱପୂର୍ଣ୍ଣ । ଭାଷଣର ସେହି ଅଂଶରେ ବରଂ ମୁଁ ଜାତିପ୍ରଥାକୁ ବିଲୋପ କରିବା ପାଇଁ ପନ୍ଥା ଓ ପଦ୍ଧତିର ଆଲୋଚନା କରିଛି । ଜାତିପ୍ରଥାର ବିଲୋପ ପାଇଁ ଯାହା ଶ୍ରେଷ୍ଠ ପନ୍ଥା ଓ ମୋର ସିଦ୍ଧାନ୍ତ ହୁଏତ ଭିତ୍ତିପ୍ରଦ ଓ କଷ୍ଟଦାୟକ ମନେ ହୋଇପାରେ । ମୋର ବିଶ୍ଳେଷଣକୁ ତ୍ରୁଟିପୂର୍ଣ୍ଣ ବୋଲି ଆପଣ ଦର୍ଶାଇ ପାରନ୍ତି । କିନ୍ତୁ ଜାତିପ୍ରଥା ସମ୍ପର୍କିତ ଏକ ଆଲୋଚନାରେ ଏହାକୁ ଧ୍ୱଂସ କରିବା ପାଇଁ ପ୍ରକାଶ ପାଇଥିବା ଏକ ମତ ପ୍ରତି ବିମୁଖ ରହିବା ବା ଏହାକୁ ଆଲୋଚନା ପରିସରକୁ ନ ନେବା ଯଥାର୍ଥ ମନେହୁଏ ନାହିଁ ।

ଆପଣଙ୍କର ଅନ୍ୟ ଅଭିଯୋଗଟି ହେଉଛି ମୋ ଅଭିଭାଷଣଟି ଦୀର୍ଘ ହୋଇଛି । ମୋର ନିବନ୍ଧ ଭିତରେ ମୁଁ ଏଥିପାଇଁ ଦୋଷ ସ୍ୱୀକାର କରିଛି । କିନ୍ତୁ ଏହା କାହିଁକି ଦୀର୍ଘ ହୋଇଛି ? ଆପଣ ଏ କ୍ଷେତ୍ରରେ ପରେ ମୋ ସହିତ ଯୋଗାଯୋଗ କରିଛନ୍ତି । ନଚେତ୍ ଆପଣ ଜାଣିଥାନ୍ତେ ଯେ ପ୍ରଥମରେ ମୋର ସୁବିଧା ପାଇଁ ମୁଁ କ୍ଷୁଦ୍ର ଭାଷଣଟିଏ ପ୍ରସ୍ତୁତ କରିବାକୁ ଚାହିଁଥିଲି । ଏକ ଦୀର୍ଘ ଭାଷଣ ପ୍ରସ୍ତୁତ କରିବା ପାଇଁ ମୋର ସମୟ ଓ ଶକ୍ତି ନଥିଲା । ବରଂ ମଣ୍ଡଳ ମୋତେ ପତ୍ରଲେଖି ବିଷୟଟିକୁ ବିସ୍ତୃତ ଆଲୋଚନା କରିବା ପାଇଁ ଅନୁରୋଧ କଲା । ମଣ୍ଡଳ ତରଫରୁ ମୋତେ କେତେଗୁଡ଼ିଏ ପ୍ରଶ୍ନର ଉତ୍ତର ମୋର ପ୍ରବନ୍ଧ ଭିତରେ ଦେବାକୁ କୁହାଯାଇଥିଲା । ମଣ୍ଡଳର କାର୍ଯ୍ୟକ୍ରମ ଭିତରେ ପ୍ରତିପକ୍ଷମାନେ ବହୁ ସମୟରେ ଜାତିପ୍ରଥା ସମ୍ପର୍କରେ କେତେକ ପ୍ରଶ୍ନ ପଚାରୁଥିଲେ, ଯାହାର ସନ୍ତୋଷଜନକ ଉତ୍ତର ମଣ୍ଡଳ ଦେଇପାରୁ ନଥିଲା । ଫଳରେ ସେହି ପ୍ରଶ୍ନଗୁଡ଼ିକର ଉତ୍ତର ପାଇଁ ମୋତେ ଲେଖା ଯାଇଥିଲା । ମଣ୍ଡଳର ଏହି ଉଦ୍ଦେଶ୍ୟପୂର୍ଣ୍ଣ ପାଇଁ ମୋର ଭାଷଣଟି ଏପରି ଦୀର୍ଘ ହେଲା । ସୁତରାଂ ମୋର ବିଶ୍ୱାସ ଏହା ଦୀର୍ଘ ହେବା ପଶ୍ଚାତରେ ଯେଉଁ ଦୋଷାରୋପ କରାଯାଇଛି ସେଥିପାଇଁ ମୁଁ ପ୍ରକୃତରେ ଦାୟୀ ନୁହେଁ ।

ହିନ୍ଦୁଧର୍ମର ବିଲୋପ ସାଧନ ପାଇଁ ମୋର ବକ୍ତବ୍ୟରେ ମଣ୍ଡଳ ଏପରି କ୍ଷୁବ୍ଧ ହେବ ତାହା ମୁଁ ଆଶା କରି ନଥିଲି । ମୋର ବିଶ୍ୱାସ ଶବ୍ଦ ଚାତୁରୀରେ ଆଶଙ୍କିତ

ହେବା ଠିକ୍ ନୁହେଁ । ଶବ୍ଦକୁ ନେଇ ଭୁଲ ବୁଝାମଣା ହେବାର ସମ୍ଭାବନା ପରିପ୍ରେକ୍ଷୀରେ ମୁଁ ଧର୍ମ ଓ ଧର୍ମର ବିନାଶ କହିଲେ କ'ଣ ବୁଝୁଛି ତାହାକୁ ବିସ୍ତୃତ ଭାବରେ ବୁଝାଇଛି । ସୁତରାଂ କେବଳ ଶବ୍ଦମାନଙ୍କର ଅର୍ଥକୁ ନେଇ ଭୁଲ ବୁଝିବା ଯଥାର୍ଥ ନୁହେଁ । ବରଂ ସେ ସବୁର କ'ଣ ବ୍ୟାଖ୍ୟା ଦିଆଯାଇଛି ତାହାକୁ ଗୁରୁତ୍ୱ ଦେବା ଆବଶ୍ୟକ । ବ୍ୟାଖ୍ୟାକୁ ନ ଦେଖି ଶବ୍ଦଦ୍ୱାରା ଭୀତତ୍ରସ୍ତ ହୋଇ ମୋର ମତରେ ମଣ୍ଡଳ ଉଚିତ ଭୂମିକା ନେଇନାହିଁ । ଯେଉଁମାନେ ସମାଜ ସଂସ୍କାରର ଭୂମିକା ନେବେ ଅଥଚ କୌଣସି ସଂସ୍କାରର ଅବଶ୍ୟମ୍ଭାବୀ ତାର୍କିକ ପରିଣାମ ପ୍ରତି ବୀତସ୍ପୃହ ରହିବେ, କାର୍ଯ୍ୟରେ ପରିଣତ କରିବା ତ ଦୂରର କଥା, ସେମାନେ ତାଙ୍କର ଗୁରୁତ୍ୱ ମଧ୍ୟ ହରାଇବେ ।

ଆପଣ ମୋ ସହିତ ସମ୍ମତ ହେବେ ଯେ, ମୋର ଅଭିଭାଷଣଟିକୁ ପ୍ରସ୍ତୁତ କରିବାରେ ମୁଁ ସେଥିରେ କେଉଁ ପ୍ରସଙ୍ଗ ଉପରେ କ'ଣ ଆଲୋଚନା କରିବି ବା କରିବି ନାହିଁ ସେ ସଂପର୍କରେ ମୋ ସହିତ ମଣ୍ଡଳର କୌଣସି ଆଲୋଚନା ହୋଇନାହିଁ । ଜାତିପ୍ରଥା ସମ୍ପର୍କରେ ମୁଁ ଯେଉଁ ମତପୋଷଣ କରୁଛି ସେହି ସବୁ ମତକୁ ଭାଷଣରେ ବ୍ୟକ୍ତ କରିବାରେ ମୋର ଯେ ସ୍ୱାଧୀନତା ରହିଛି ଏହାକୁ ମୁଁ ପ୍ରଥମରୁ ଗ୍ରହଣ କରି ନେଇଛି । ଆପଣ ଅପ୍ରେଲ ୯ ତାରିଖରେ ବମ୍ବେ ଆସିବା ପର୍ଯ୍ୟନ୍ତ ମୁଁ କ'ଣ ପ୍ରସ୍ତୁତ କରୁଛି ତାହା ମଣ୍ଡଳ ଜାଣିବାର ଅବକାଶ ନଥିଲା । ଆପଣ ଯେତେବେଳେ ବମ୍ବେ ଆସିଥିଲେ ମୁଁ ସ୍ୱତଃପ୍ରବୃତ୍ତ ହୋଇ ଆପଣଙ୍କୁ କହିଥିଲି ଯେ ଦଳିତ ଶ୍ରେଣୀର ଲୋକମାନେ ନିଜର ଧର୍ମ ପରିବର୍ତ୍ତନ କରିବା ଆବଶ୍ୟକ ବୋଲି ମୁଁ ଯେଉଁ ମତପୋଷଣ କରୁଛି ମୁଁ ତାହା ଆପଣମାନଙ୍କ ସଭାରେ ବ୍ୟକ୍ତ କରିବି ନାହିଁ । ଅର୍ଥାତ୍ ମଣ୍ଡଳର ସଭାକୁ ଧର୍ମ ପରିବର୍ତ୍ତନ ପାଇଁ ଏକ ପ୍ଲାଟଫର୍ମ ଭାବରେ ମୁଁ ବ୍ୟବହାର କରିବି ନାହିଁ ବୋଲି ଆପଣଙ୍କୁ କହିଥିଲି । ମୋର ବିଶ୍ୱାସ ମୋର ଅଭିଭାଷଣଟି ପ୍ରସ୍ତୁତ କରିବାରେ ମୁଁ ନିଷ୍ଠାର ସହ ତାହା ରକ୍ଷା କରିଛି । ସେପରି କୌଣସି ଗୁରୁତ୍ୱ ନଦେଇ ମୁଁ କେବଳ ପରୋକ୍ଷ ଭାବେ ଗୋଟିଏ ଜାଗାରେ ସାମାନ୍ୟ ମାତ୍ର ସୂଚନା ଦେଇଛି, "ମୁଁ ଦୁଃଖିତ ଯେ ହୁଏତ ମୁଁ ଆପଣମାନଙ୍କ ସହିତ ରହିପାରୁ ନାହିଁ ।" ଏହାଛଡ଼ା ମୋର ଭାଷଣରେ ମୁଁ ଅନ୍ୟ କିଛି କହିନାହିଁ । ଆପଣ ଏପରିକି ଏହି ପରୋକ୍ଷ ଉକ୍ତିଟି ପାଇଁ ଯେତେବେଳେ ଅଭିଯୋଗ କରିଛନ୍ତି ମୁଁ ସେତେବେଳେ ନମ୍ରତାର ସହିତ ଆପଣଙ୍କୁ ଏହି ପ୍ରଶ୍ନ ପଚାରୁଛି - ଆପଣଙ୍କର ସମ୍ମିଳନୀରେ ସଭାପତିତ୍ୱ କରିବାକୁ ସମ୍ମତି ଦେବାଦ୍ୱାରା ଦଳିତ ଶ୍ରେଣୀର

ବିଶ୍ୱାସକୁ ପରିବର୍ତ୍ତନ କରିବା ପାଇଁ କହିବାର ଅଧିକାରଟି ମୁଁ ହରାଇଛି କି ? ଯଦି ଆପଣ ସେପରି ଭାବୁଥାନ୍ତି ତେବେ ମୋର ଆପଣଙ୍କୁ କହିବା ଉଚିତ୍ ହେବ ଯେ ମୁଁ ସେପରି ମୋର ମତବ୍ୟକ୍ତ କରିବା ଅଧିକାରକୁ ବଳିଦେଇ ପାରିବି ନାହିଁ । ଯଦି ଆପଣମାନେ ଭାବୁଥାନ୍ତି ବା ମୋତେ ସାମାନ୍ୟ ସୂଚନା ଦେଇଥାନ୍ତେ ଯେ ମଣ୍ଡଳର ଅଧିବେଶନରେ ସଭାପତିତ୍ୱ କରିବା ପାଇଁ ଆପଣମାନେ ମୋତେ ଯେଉଁ ଗୌରବ ଦେଇଛନ୍ତି ତା'ର ପ୍ରତିଦାନରେ ମୁଁ ମୋର ମତ ପରିବର୍ତ୍ତନ କରିବା ଦରକାର, ତେବେ ଏ ସଂକ୍ରାନ୍ତରେ ମୋର ଏହା କହିବା ଉଚିତ୍ ହେବ ଯେ ଆପଣମାନଙ୍କର ପ୍ରଦତ୍ତ ଗୌରବ ଅପେକ୍ଷା ମୋର ମତ ମୋ ପାଇଁ ଅଧିକ ମୂଲ୍ୟବାନ୍ ।

ଆପଣଙ୍କର ୧୪ ତାରିଖ ପତ୍ର ପରେ ପୁଣି ଯେଉଁ ପତ୍ରଟି ମିଳିଲା ତାହା ମୋତେ ଅତି ଆଶ୍ଚର୍ଯ୍ୟଜନକ ମନେହେଲା । ମୋର ବିଶ୍ୱାସ ଯେ କେହି ଉଭୟ ପତ୍ର ପଢ଼ିବେ ତାଙ୍କର ସେହିପରି ଧାରଣା ହେବ । ଅଭ୍ୟର୍ଥନା ସମିତି ହଠାତ୍ ଏପରି ମତ ପରିବର୍ତ୍ତନ କରିବ ମୁଁ ତାହା ଭାବିପାରୁ ନାହିଁ । ମୁଁ ପ୍ରଥମେ ମୋର ପ୍ରବନ୍ଧର ଯେଉଁ ରଫ୍ ନକଲଟି ପଠାଇ ଥିଲି ଓ ତା'ର ପରେ ପରେ ଯେଉଁ ପ୍ରସ୍ତୁତ ନିବନ୍ଧଟି ଦେଲି ଉଭୟ ଭିତରେ କୌଣସି ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ନାହିଁ । ଅଥଚ ମୋର ପ୍ରଥମ ଲେଖାଟି ପାଇ ଆପଣ ୧୪ ତାରିଖରେ ମୋତେ ଯେଉଁ ପତ୍ରଟି ଲେଖିଲେ ଏବଂ ମୋର ପୂର୍ଣ୍ଣାଙ୍ଗ ଲେଖାଟି ପାଇବା ପରେ ସମିତିର ଯେଉଁ ମତାମତ ଜଣାଇଲେ ତା ଭିତରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ରହିଛି । ଆପଣମାନଙ୍କର ମତରେ ଏପରି କାହିଁକି ପରିବର୍ତ୍ତନ ହେଲା ମୁଁ ଭାବି ପାରୁନାହିଁ । ମୋର ଶେଷ ଲେଖାରେ ଏପରି କୌଣସି ନୂତନ ଭାବନା ବ୍ୟକ୍ତ ହୋଇନାହିଁ ଯାହାକି ମୋର ପୂର୍ବ ଲେଖାରେ ନଥିଲା । ବସ୍ତୁତଃ ମୋର ପ୍ରଥମ ଓ ଶେଷୋକ୍ତ ଲେଖାରେ ସାମାନ୍ୟତମ ପାର୍ଥକ୍ୟ ନାହିଁ । କେବଳ ମୋର ଶେଷ ଲେଖାରେ ପ୍ରଥମ ଲେଖାର ଭାବନାଗୁଡ଼ିକୁ ବିସ୍ତୃତ ବ୍ୟାଖ୍ୟା କରାଯାଇଛି । ଆପଣଙ୍କର କୌଣସି ଅଭିଯୋଗ କରିବାର ଥିଲେ ଆପଣ ୧୪ ତାରିଖର ପତ୍ରରେ କରିପାରିଥାନ୍ତେ, କିନ୍ତୁ ଆପଣ ତାହା କରିନାହାନ୍ତି । ଅପର ପକ୍ଷରେ ଆପଣ ମୋର ଭାଷଣର ଏକ ହଜାର କପି ଛପାଇବା ପାଇଁ କହିଛନ୍ତି । ଆଲୋଚନା ବେଳେ ଆପଣ ଯେଉଁ କେତୋଟି ପରାମର୍ଶ ଦେଇଥିଲେ ତାହା ଗ୍ରହଣ କରିବା ବା ନକରିବା କ୍ଷେତ୍ରରେ ମୋର ସ୍ୱାଧୀନତା ଥିଲା । ଆପଣଙ୍କର ନିର୍ଦ୍ଦେଶ ଅନୁଯାୟୀ ମୁଁ ମୋ ଅଭିଭାଷଣର ଏକ ହଜାର କପି

ଛପାଇଲି, ଯାହାକି ମୋ ପାଖରେ ରହିଛି । ଆଠଦିନ ପରେ ଆପଣ ମୋତେ ଲେଖିଲେ ଯେ ଆପଣ ମୋର ଭାଷଣର କେତେକ ମନ୍ତବ୍ୟକୁ ଅଭିଯୋଗ କରୁଛନ୍ତି ଓ ତାହାକୁ ପରିବର୍ତ୍ତନ କରାନଗଲେ ସମ୍ମିଳନୀକୁ ବାତିଲ କରାଯିବ । ଆପଣ ଜାଣନ୍ତି ମୁଁ ମୋର ମତରେ କୌଣସି ପରିବର୍ତ୍ତନ କରିବି ନାହିଁ ଓ ମୁଁ ଯେଉଁ ନିବନ୍ଧ ଦେବି ତାହାକୁ ଆପଣମାନଙ୍କୁ ଗ୍ରହଣ କରିବାକୁ ହେବ ବୋଲି ମୁଁ ଆପଣଙ୍କୁ ବମ୍ବେରେ କହିଥିଲି । ମୁଁ ଏକଥା ମଧ୍ୟ ଆପଣଙ୍କୁ ସୂଚାଇ ଥିଲି ଯେ ମୋର ଭାଷଣରେ ଯେଉଁ ମତ ବ୍ୟକ୍ତ ହୋଇଛି ତାହା ସମ୍ପୂର୍ଣ୍ଣ ଭାବରେ ମୋର ନିଜସ୍ୱ, ଯଦି ମୋର ମତ ସମ୍ମିଳନୀରେ ଗ୍ରହଣ ଯୋଗ୍ୟ ନହୁଏ ତେବେ ମୋର ଏଥିରେ କୌଣସି ଦୁଃଖ କରିବାର ନାହିଁ । ଏପରିକି ମୋର ମତ ବିରୁଦ୍ଧରେ ସମ୍ମିଳନୀ ଚାହିଁଲେ କୌଣସି ନିଷ୍ପତ୍ତି ଗ୍ରହଣ କରିପାରିବ । ମୋର ମତ ପାଇଁ ସମ୍ମିଳନୀକୁ ମୁଁ ସମ୍ପୂର୍ଣ୍ଣ ଭାବରେ ମୁକ୍ତ ରଖିଥିଲି, ଏପରିକି ମଣ୍ଡଳ ମୋର ଅଭିଭାଷଣକୁ ଏକ ଉଦ୍‌ଘାଟନୀ ଭାଷଣ ଭାବରେ ନେବାକୁ ମୁଁ ଚାହିଥିଲି । ମୁଁ ଏକଥା ମଧ୍ୟ କହିଥିଲି ଯେ ମୋର ଭାଷଣଟିକୁ ମୋର ବ୍ୟକ୍ତିଗତ ମତଭାବରେ ଏକ ଉଦ୍‌ଘାଟନୀ ଭାଷଣ ଭାବରେ ଗ୍ରହଣ କରି ଅନ୍ୟ କାହାକୁ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ କୁହାଯିବା ଆବଶ୍ୟକ । ଫଳରେ ମୋର ମତ ସହିତ ସମ୍ମିଳନୀରେ ଗୃହୀତ ହେବା ପ୍ରସ୍ତାବରେ କୌଣସି ସମ୍ପର୍କ ରହିବ ନାହିଁ । ଆପଣଙ୍କ ସମିତି ୧୪ ତାରିଖରେ ଏ କ୍ଷେତ୍ରରେ କୌଣସି ନିଷ୍ପତ୍ତି ନେଇପାରିଥାନ୍ତେ ଯଦ୍ୱାରା କି ଭାଷଣଟିକୁ ଛାପିବାରେ ଯେଉଁ ଖର୍ଚ୍ଚ ହେଲା ତାହାକୁ ପରିହାର କରାଯାଇ ପାରିଥାନ୍ତା ।

ମୁଁ ଦୃଢ଼ ନିଶ୍ଚିତ ଯେ ମୋର ଅଭିଭାଷଣରେ ବ୍ୟକ୍ତ ହୋଇଥିବା ମତ ସହିତ ଆପଣଙ୍କ ସମିତିର ନିଷ୍ପତ୍ତିର କୌଣସି ସମ୍ବନ୍ଧ ନାହିଁ । ମୋର ବିଶ୍ୱାସ ହେଉଛି ଅମୃତସରଠାରେ ହୋଇଥିବା ଶିଖ୍ ପ୍ରଚାର ସମ୍ମିଳନୀରେ ମୋର ଉପସ୍ଥିତି ଆପଣଙ୍କର ସମିତିର ନିଷ୍ପତ୍ତିକୁ ପ୍ରଭାବିତ କରିଛି । ଆପଣଙ୍କର ସମିତିର ୧୪ ତାରିଖରେ ନିଆଯାଇଥିବା ନିଷ୍ପତ୍ତିଠାରୁ ୨୨ ତାରିଖରେ ହୋଇଥିବା ନିଷ୍ପତ୍ତିର ଏପରି ପରିବର୍ତ୍ତନର ଅନ୍ୟ କାରଣ ମୁଁ ଦେଖୁନାହିଁ । ଏହି ବିବାଦକୁ ଆଗକୁ ନେବାକୁ ମୁଁ ଉଚିତ ମନେକରୁ ନାହିଁ । ମୁଁ ଆପଣଙ୍କୁ ଅନୁରୋଧ କରୁଛି କି ମୋର ସଭାପତିତ୍ୱରେ ହେବାକୁ ଥିବା ସମ୍ମିଳନୀକୁ ବାତିଲ କରାଗଲା ବୋଲି ଆପଣ ତୁରନ୍ତ ଘୋଷଣା କରିବେ । ଆପଣମାନଙ୍କର ପୂର୍ବର ଶ୍ରଦ୍ଧା ଚାଲିଯାଇଛି ଓ ଆପଣଙ୍କ ସମିତି ମୋର ଅଭିଭାଷଣଟିକୁ ପୂର୍ଣ୍ଣାଙ୍ଗ ଭାବରେ ଗ୍ରହଣ କଲେ ବି ମୁଁ ଆଉ ଆପଣଙ୍କ ସଭାରେ ସଭାପତିତ୍ୱ କରିବା ପାଇଁ ଆଗ୍ରହୀ ନୁହେଁ । ଅଭିଭାଷଣଟିକୁ ପ୍ରସ୍ତୁତ କରିବାରେ ମୁଁ ସ୍ୱୀକାର କରିଥିବା

କଷ୍ଟକୁ ଆପଣ ପ୍ରଶଂସା କରିଥିବାରୁ ମୁଁ ଆପଣଙ୍କ ପାଖରେ କୃତଜ୍ଞ । ମୁଁ କରିଥିବା ପରିଶ୍ରମ ପାଇଁ ମୁଁ ନିଜେ ଲାଭବାନ ହୋଇଛି । କିନ୍ତୁ ମୋର ଦୁଃଖ ଯେ ମୋର ସ୍ୱାସ୍ଥ୍ୟ ଭଲ ନଥିବା ଅବସ୍ଥାରେ ମୁଁ ବାଧ ହୋଇ ଏପରି ପରିଶ୍ରମ କଲି ।

ଆପଣଙ୍କର ପ୍ରିୟ

ବି. ଆର. ଆମ୍ବେଦକର

ଏହି ପତ୍ରାଳାପରୁ ମଣ୍ଡଳର ସଭାରେ ମୋର ସଭାପତିତ୍ୱ ନେଇ ସ୍ଥିର ହୋଇଥିବା କାର୍ଯ୍ୟକ୍ରମ କାହିଁକି ବାତିଲ ହେଲା ସେ ସମ୍ପର୍କରେ ପାଠକମାନେ ଯଥାର୍ଥ ଅବଧାରଣା କରି ପାରିବେ । ମୋର ବିଶ୍ୱାସ ଏକ ଅଭ୍ୟର୍ଥନା ସମିତି ଜଣେ ସଭାପତିଙ୍କର ମତକୁ ଗ୍ରହଣ କରୁ ନଥିବା ଯୋଗୁଁ ସଭାକୁ ବାତିଲ କରିବା ଏକ ଅଭିନବ ଘଟଣା ଅଟେ । କିନ୍ତୁ ମୋ ଜୀବନରେ ଏହା ହେଉଛି ପ୍ରଥମ ଘଟଣା ଯେଉଁଠିକି ସବର୍ଣ୍ଣ ହିନ୍ଦୁମାନଙ୍କର ଏକ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ମୋତେ ନିମନ୍ତ୍ରଣ କରାଯାଇଥିଲା । ମୁଁ ଦୁଃଖିତ ଯେ ଏହା ବିଫଳତାରେ ପରିଣତ ହେଲା । ସଂସ୍କାର ଆଣିବାକୁ ପ୍ରୟାସ କରୁଥିବା ସବର୍ଣ୍ଣ ହିନ୍ଦୁମାନଙ୍କ ସହିତ ଆତ୍ମମର୍ଯ୍ୟାଦା ପାଇଁ ସଂଗ୍ରାମ କରୁଥିବା ଅସ୍ପୃଶ୍ୟମାନଙ୍କର ସମ୍ବନ୍ଧ ପ୍ରୀତିପଦ ହୋଇପାରୁ ନାହିଁ, ବରଂକଷ୍ଟଦାୟକ ହେଉଛି । କାରଣ ସଂସ୍କାର ପ୍ରୟାସୀ ଅନୁଷ୍ଠାନ ରକ୍ଷଣଶୀଳ ବ୍ୟକ୍ତିମାନଙ୍କଠାରୁ ସେମାନଙ୍କର ସମ୍ପର୍କ ତୁଟାଇ ପାରୁନାହାନ୍ତି ଓ ଅପର ପକ୍ଷରେ ଅସ୍ପୃଶ୍ୟମାନେ ନିଜର ଆତ୍ମମର୍ଯ୍ୟାଦା ପାଇଁ ସଂସ୍କାର ବ୍ୟତୀତ ଅନ୍ୟ କୌଣସି ପନ୍ଥା ପାଉ ନାହାନ୍ତି । ଏହି ସମ୍ପର୍କ ଭିତରେ କ'ଣ ଆଶା କରିହେବ ?

ରାଜଗ୍ରିହ, ଦାଦର, ବମ୍ବେ-୧୪

୧୫।୫।୧୯୩୬ ବି. ଆର. ଆମ୍ବେଦକର

## ଲାହୋରସ୍ଥିତ ଜାତ-ପାତ-ତୋଡ଼କ ମଣ୍ଡଳର ୧୯୩୬ ମସିହା ବାର୍ଷିକ ସମ୍ମିଳନୀ ପାଇଁ ପ୍ରସ୍ତୁତ ହୋଇଥିବା ଅଥଚ ପ୍ରଦାନ ହୋଇ ନଥିବା ଭାଷଣ

(ଏହି ଲିଖିତ ଭାଷଣରେ ବ୍ୟକ୍ତ ହୋଇଥିବା ମତ ଗ୍ରହଣ ଯୋଗ୍ୟ ନ ହେବାରୁ ଅଭ୍ୟର୍ଥନା ସମିତି ସମ୍ମିଳନୀକୁ ବାତିଲ କରିଥିଲେ ।)

ବନ୍ଧୁଗଣ,

ଜାତ-ପାତ-ତୋଡ଼କ ମଣ୍ଡଳର ସଭ୍ୟମାନେ ତାଙ୍କର ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ଦୟାପୂର୍ବକ ମୋତେ ନିମନ୍ତ୍ରଣ କରିଥିବାରୁ ମଣ୍ଡଳର ସଭ୍ୟମାନଙ୍କ ପାଇଁ ମୁଁ ଚିନ୍ତିତ । ମୁଁ ଏଥିପାଇଁ ଚିନ୍ତିତ ଯେ ମୋତେ ଡାକିବା ଯୋଗୁଁ ସେମାନଙ୍କୁ ନାନା ପ୍ରଶ୍ନର ସମ୍ମୁଖୀନ ହେବାକୁ ହେବ । ଲାହୋରରେ ହେଉଥିବା ଏକ ଉତ୍ସବ ପାଇଁ ସେମାନେ କାହିଁକି ସୁଦୂର ବମ୍ବେରୁ ଜଣେ ବ୍ୟକ୍ତିଙ୍କୁ ଡାକିଛନ୍ତି ସେଥିପାଇଁ ମଣ୍ଡଳକୁ ଅନେକ ପ୍ରଶ୍ନ ପଚାରିବେ । ମୋର ବିଶ୍ୱାସ ମୋଠାରୁ ଅଧିକ ଯୋଗ୍ୟ କୌଣସି ବ୍ୟକ୍ତିଙ୍କୁ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ସେମାନେ ଅକ୍ଲେଶରେ ପାଇ ପାରିଥାନ୍ତେ । ମୁଁ ହିନ୍ଦୁମାନଙ୍କୁ ସମାଲୋଚନା କରେ, ହିନ୍ଦୁମାନେ ଯେଉଁ ମହାତ୍ମାମାନଙ୍କୁ ଆରାଧ୍ୟ ଭାବରେ ଗ୍ରହଣ କରନ୍ତି ସେମାନଙ୍କର ଅଧିକାରକୁ ମୁଁ ପ୍ରଶ୍ନ କରିଥାଏ । ଏଣୁ କେତେକ ମୋତେ ଘୃଣା କରନ୍ତି । ସେମାନଙ୍କ ପାଇଁ ସେମାନଙ୍କ ଉଦ୍ୟାନରେ ମୁଁ ହେଉଛି ଏକ ସର୍ପ । କେତେକ ରାଜନୀତି-ପ୍ରବଣ ହିନ୍ଦୁମାନେ ମଣ୍ଡଳ କାହିଁକି ମୋତେ ଏହି ସମ୍ମାନରେ ଅଧିକାରୀ କରାଇଛି ସେ ନେଇ ପ୍ରଶ୍ନ ଉତ୍‌ଥାପନ କରିବେ । ଆପଣମାନେ ମୋତେ ଡାକି ଥିବାରୁ ଏକ ଦୁଃସାହସିକ କାର୍ଯ୍ୟ କରିଛନ୍ତି । ଯଦି କୌଣସି ରାଜନୈତିକ ହିନ୍ଦୁ ମୋତେ ଡାକିବାକୁ ଅସମ୍ମାନ ମନେ କରନ୍ତି ତେବେ ମୋର ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆପଣମାନେ ମୋତେ ମନୋନୀତ କରିବାଦ୍ୱାରା ସାଧାରଣ ଧର୍ମପ୍ରାଣ ହିନ୍ଦୁମାନେ କେବେ ହେଲେ ଆନନ୍ଦ ଅନୁଭବ କରିବେ ନାହିଁ । ମଣ୍ଡଳ କାହିଁକି ଶାସ୍ତ୍ରୀୟ ବିଧାନକୁ ଅବମାନନା କରି ମୋତେ ଡାକିଛି ସେଥିପାଇଁ ମଣ୍ଡଳକୁ ଅନେକ ସମାଲୋଚନା କରିବେ । ଶାସ୍ତ୍ରର ନିୟମ ଅନୁଯାୟୀ ଅନ୍ୟ ତିନି ବର୍ଣ୍ଣର ଗୁରୁ କେବଳ ବ୍ରାହ୍ମଣ ହିଁ ହୋଇପାରିବ । ଶାସ୍ତ୍ରରେ କୁହାଯାଇଛି "ବର୍ଣ୍ଣନାମ୍ ବ୍ରାହ୍ମଣୋ ଗୁରୁ ।" ହିନ୍ଦୁମାନେ କାହାଠାରୁ ଧର୍ମୀୟ ବିଧାନ ଶିକ୍ଷାକରିବେ ଓ କାହାଠାରୁ ନୁହେଁ ଏହା ମଣ୍ଡଳ ମଧ ଜାଣେ । ହିନ୍ଦୁ ଶାସ୍ତ୍ରରେ କୁହାଯାଇଛି ଯେ ଜଣେ ଯେତେ ଶାସ୍ତ୍ରଜ୍ଞ ହେଲେ ମଧ ଜଣେ ବ୍ରାହ୍ମଣ ହୋଇ ନଥିଲେ ସେ ଗୁରୁ ପଦବାଚ୍ୟ ହୋଇପାରିବ ନାହିଁ । ଏପରିକି ଶିବାଜୀଙ୍କର ଗୁରୁ କୁହାଯାଉଥିବା ସନ୍ନ୍ୟାସୀ ରାମଦାସ ଯେ କି ବ୍ରାହ୍ମଣ ଥିଲେ ଓ ଏକ ହିନ୍ଦୁ ରାଜ୍ୟ ଗଠନ ପାଇଁ ଶିବାଜୀଙ୍କୁ ପ୍ରେରଣା ଦେଇଥିଲେ ସେ ମଧ ଏହା କହିଛନ୍ତି ।

---

ମରାଠୀ ଭାଷାରେ ଲେଖିଥିବା ସମାଜ-ରାଜନୀତି-ଧର୍ମଭିତ୍ତିକ "ଦାସବୋଧ" ଗ୍ରନ୍ଥରେ ରାମଦାସ ହିନ୍ଦୁମାନଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନ କରିଛନ୍ତି – "ଜଣେ ଅନ୍ତ୍ୟଜ ଯେତେ ଜ୍ଞାନୀ ବା ପଣ୍ଡିତ ହେଲେ ବି ତାଙ୍କୁ ଗୁରୁ କରାଯାଇ ପାରିବ କି ? ଏହି ପ୍ରଶ୍ନର ଉତ୍ତର ସେ ନକାରାତ୍ମକ ଦେଇଛନ୍ତି । ଅର୍ଥାତ୍ କୌଣସି ଶୂଦ୍ରର ଯେତେ ପାଣ୍ଡିତ୍ୟ ଥିଲେ ବି ଗୁରୁ ହେବାର ଅଧିକାର ନାହିଁ । ଏହି ପ୍ରଶ୍ନର ଉତ୍ତର କିପରି ଦିଆଯିବ ତାହା ମୁଁ ମଣ୍ଡଳ ଉପରେ ଛାଡ଼ି ଦେଉଛି । ମଣ୍ଡଳ ଜାଣେ କାହିଁକି ସୁଦୂର ବମ୍ବେରୁ ଏଠାରେ ସଭାପତିତ୍ୱ କରିବା ପାଇଁ ମୋତେ ଡାକିଛି । ଜଣେ ହିନ୍ଦୁ ବିରୋଧୀ ବ୍ୟକ୍ତି ଯେ କି ଜାତିଗତ ମାନଦଣ୍ଡରେ ଜଣେ ଅନ୍ତ୍ୟଜ ବା ଅସ୍ପୃଶ୍ୟ ସେ ସବର୍ଣ୍ଣମାନଙ୍କର ସଭାରେ ଭାଷଣ ଦେବା ପାଇଁ ନିମନ୍ତ୍ରିତ ହେବା ଅଭିନବ ଅଟେ । ମୁଁ ଜାଣେ ହିନ୍ଦୁମାନଙ୍କ ଦ୍ୱାରା ମୁଁ ଗ୍ରହଣ ଯୋଗ୍ୟ ନୁହେଁ । ସେମାନେ ମୋତେ ଗ୍ରହଣ କରିପାରନ୍ତି ନାହିଁ । ଏହା ଜାଣିବା ପରେ ମୁଁ ଇଚ୍ଛାକୃତ ଭାବରେ ସେମାନଙ୍କଠାରୁ ନିଜକୁ ଦୂରେଇ ରଖେ । ସେମାନଙ୍କ ସଭାରେ ମୁଁ କେବେ ମୋର ମତ ଦେବାକୁ ଉଚିତ ମନେକରେ ନାହିଁ । ବରଂ ମୋର ମତକୁ ମୁଁ ମୋର ନିଜସ୍ୱ ଗୋଷ୍ଠୀ ବା ପ୍ଲାଟଫର୍ମ ଭିତରେ ବ୍ୟକ୍ତ କରିଥାଏ । ତାହା କରି ମଧ୍ୟ ହିନ୍ଦୁମାନଙ୍କ ଭିତରେ ମୋ ପ୍ରତି ଅନେକ ଈର୍ଷା ଓ ଅନ୍ତର୍ଦାହ ସୃଷ୍ଟି ହୋଇଛି । ସେମାନଙ୍କ ସମ୍ପର୍କରେ ମୁଁ ଯାହା କହି ଆସୁଛି ସେମାନଙ୍କ ଉପସ୍ଥିତିରେ ତାହା ପ୍ରକାଶ କରି ସେମାନଙ୍କୁ ଅଧିକ ତିକ୍ତ କରିବାକୁ ଚାହୁଁ ନାହିଁ । ମୁଁ ଯଦି ଆଜି ଏଠାରେ ଉପସ୍ଥିତ ଥାଏ ତାହା ମୋର ଇଚ୍ଛା ଯୋଗୁଁ ନୁହେଁ ବରଂ ଆପଣମାନଙ୍କର ମନୋନୟନ ପାଇଁ ସମ୍ଭବ ହୋଇଛି । ଆପଣମାନେ ସମାଜ ସଂସ୍କାରକୁ ଗୁରୁତ୍ୱ ଦେଉଛନ୍ତି । ଆପଣମାନଙ୍କର ଏହି ଲକ୍ଷ୍ୟ ମୋତେ ସ୍ପର୍ଶ କରିଛି । ସୁତରାଂ ଆପଣମାନେ ଯେତେବେଳେ ଭାବିଛନ୍ତି ଯେ ଆପଣମାନଙ୍କର ଏହି ଲକ୍ଷ୍ୟ ସାଧନରେ ମୁଁ କିଛି ସହାୟକ ହୋଇପାରିବି ସେହି କ୍ଷେତ୍ରରେ ଆପଣମାନଙ୍କର ଏହି ସୁଯୋଗକୁ ମନା କରିବାକୁ ମୁଁ ଉଚିତ ମନେକରି ନାହିଁ । ଆପଣମାନେ ଯେଉଁ ସମସ୍ୟା ପାଇଁ କାର୍ଯ୍ୟ କରୁଛନ୍ତି ସେ କ୍ଷେତ୍ରରେ ମୋର ଭାଷଣ କେତେଦୂର ସହାୟକ ହେବ ତା'ର ବିଚାର ଆପଣମାନେ କରିବେ । ମୁଁ କେବଳ ସେହି ସମସ୍ୟା ଉପରେ ମୋର ଦୃଷ୍ଟିକୋଣ ଉପସ୍ଥାପନ କରିବି ।

---

(୨)

# କଂଗ୍ରେସ ଓ ସମାଜ ସଂସ୍କାର

ସ୍ୱର୍ଗପ୍ରାପ୍ତିର ପନ୍ଥା ପରି ଭାରତ ବର୍ଷରେ ସାମାଜିକ ସଂସ୍କାର ବହୁ ସମସ୍ୟା ସହିତ ସଂଶ୍ଳିଷ୍ଟ । ସାମାଜିକ ସଂସ୍କାରକୁ ମୁଷ୍ଟିମେୟ ଲୋକ ସମର୍ଥନ କରୁଥିବା ବେଳେ ଏହାର ସମାଲୋଚକ ଅନେକ ଅଟନ୍ତି । ସମାଲୋଚକମାନଙ୍କୁ ଦୁଇଟି ପୃଥକ୍ ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରାଯାଇ ପାରିବ । ଗୋଟିଏ ଶ୍ରେଣୀ ରାଜନୈତିକ ସଂସ୍କାର ଚାହୁଁଥିବା ବ୍ୟକ୍ତିଗଣ ହେବାବେଳେ ଅନ୍ୟ ଶ୍ରେଣୀଟା ସମାଜବାଦୀମାନେ ଅଟନ୍ତି ।

ହିନ୍ଦୁ ସମାଜରେ ରହିଥିବା କେତେକ ମନ୍ଦ ପରମ୍ପରା ଓ ତା'ର କୁପରିଣାମ ଦୃଷ୍ଟିରୁ ଏକଦା ଏହା ଗ୍ରହଣ କରାଯାଉଥିଲା ଯେ ସାମାଜିକ କ୍ରିୟାଶୀଳତା ବିନା ସ୍ଥାୟୀ ପ୍ରଗତି ସମ୍ଭବପର ନୁହେଁ । ହିନ୍ଦୁ ସମାଜରେ ରହିଥିବା ଏହି ମନ୍ଦ ପରମ୍ପରା ଓ ରକ୍ଷଣଶୀଳ ବ୍ୟବସ୍ଥାକୁ ବିଲୋପ କରିବାକୁ ନିଷ୍ଠାପର ଓ ଅପ୍ରତିହତ ଉଦ୍ୟମ ଆବଶ୍ୟକ । ଏଥିପାଇଁ ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ସହିତ "ସାମାଜିକ ସମ୍ମିଳନୀ" (Social conference) ନାମକ ଏକ ଅନୁଷ୍ଠାନ ସୃଷ୍ଟି ହୋଇଥିଲା । କଂଗ୍ରେସ ଦେଶର ରାଜନୈତିକ କ୍ଷେତ୍ରରେ ରହିଥିବା ଦୁର୍ବଳତା ବିଷୟରେ ସ୍ୱର ଉତ୍ତୋଳନ କରୁଥିବା ବେଳେ ସାମାଜିକ ସମ୍ମିଳନୀ ହିନ୍ଦୁ ସମାଜ ବ୍ୟବସ୍ଥାରେ ରହିଥିବା ଅସଙ୍ଗତି ଓ କୁସଂସ୍କାରକୁ ଦୂର କରିବାକୁ ପ୍ରୟାସ କରୁଥିଲା । କିଛିବର୍ଷ ପାଇଁ କଂଗ୍ରେସ ଓ ସାମାଜିକ ସମ୍ମିଳନୀ ଦୁଇଟି ଲକ୍ଷ୍ୟ ଦିଗରେ ସମ୍ମିଳିତ ଭାବରେ କାର୍ଯ୍ୟ କରୁଥିଲେ । ଏପରିକି ଗୋଟିଏ ମଞ୍ଚ ଉପରେ ସେମାନେ ସେମାନଙ୍କର ବାର୍ଷିକ ଅଧିବେଶନ କରୁଥିଲେ । କିନ୍ତୁ ହଠାତ୍ ଏହି ଦୁଇଟି ଧାରା ଦୁଇଟି ଦଳରେ ପରିଣତ ହୋଇଗଲେ । ଗୋଟିଏ ରାଜନୈତିକ ସଂସ୍କାର ଦଳ ହେଲା ବେଳେ ଅନ୍ୟଟି ସମାଜ ସଂସ୍କାର ଦଳ ଭାବରେ ପରିଚିତ ହେଲା । ପରେ ଏହି ଦୁଇ ଗୋଷ୍ଠୀ ଭିତରେ ଗଭୀର ମତ ପାର୍ଥକ୍ୟ ଓ ବିବାଦ ସୃଷ୍ଟି ହେଲା । ରାଜନୈତିକ ସଂସ୍କାର ଗୋଷ୍ଠୀଟି ଜାତୀୟ କଂଗ୍ରେସକୁ ସମର୍ଥନ କଲାବେଳେ ସମାଜ ସଂସ୍କାର ଗୋଷ୍ଠୀଟି ସାମାଜିକ ସମ୍ମିଳନୀକୁ ସମର୍ଥନ କଲା । ଦୁଇଗୋଷ୍ଠୀ ଦୁଇଟି ପରସ୍ପର ବିରୋଧୀ ଦଳରେ ପରିଣତ ହୋଇଗଲେ । ସମାଜ ସଂସ୍କାର ଓ ରାଜନୈତିକ ସଂସ୍କାର ଭିତରେ କାହାକୁ ପ୍ରାଧାନ୍ୟ ଦିଆଯିବ ଏହାନେଇ ମତଭେଦ ହେଲା । ଗୋଟିଏ ଦଶନ୍ଧି ପାଇଁ

ଉଭୟ ଗୋଷ୍ଠୀ ନିଜ ନିଜର ଆଭିମୁଖ୍ୟକୁ ଗୁରୁତ୍ୱ ଦେଇ ନିଜ ନିଜ ଦିଗରେ କାର୍ଯ୍ୟ ପନ୍ଥା ନେଉଥିଲେ । କିନ୍ତୁ କାଳକ୍ରମେ ସାମାଜିକ ସମ୍ମିଳନୀ ଦ୍ରୁତ ଗତିରେ ହ୍ରାସ ପାଇବାକୁ ଲାଗିଲା । ସାମାଜିକ ସମ୍ମିଳନୀରେ ସଭାପତିତ୍ୱ କରୁଥିବା ବ୍ୟକ୍ତିଗଣ ଦୁଃଖପ୍ରକାଶ କରୁଥିଲେ ଯେ ଅଧିକାଂଶ ଶିକ୍ଷିତ ହିନ୍ଦୁ ରାଜନୈତିକ ପ୍ରଗତିକୁ ଯେତିକି ଗୁରୁତ୍ୱ ଦେଉଛନ୍ତି ସାମାଜିକ ସଂସ୍କାରକୁ ସେପରି କିଛି ଗୁରୁତ୍ୱ ଦେଉନାହାନ୍ତି ଓ ଏପରିକି ସେ ପ୍ରତି ବୀତସ୍ପୃହ ରହୁଛନ୍ତି । କଂଗ୍ରେସ ସମ୍ମିଳନୀରେ ଯୋଗ ଦେଉଥିବା ଲୋକଙ୍କର ସଂଖ୍ୟା ଅଧିକ ହେଉଥିବା ବେଳେ ଓ ଏପରିକି କଂଗ୍ରେସକୁ ସମର୍ଥନ କରୁଥିବା ଅଥଚ ସମ୍ମିଳନୀରେ ଯୋଗ ଦେଉ ନଥିବା ଲୋକଙ୍କ ସଂଖ୍ୟା ତତୋଧିକ ହେଉଥିବା ବେଳେ ସାମାଜିକ ସମ୍ମିଳନୀରେ ଯୋଗ ଦେଉଥିବା ସଂଖ୍ୟା ଅତି କମ୍ ହେଉଥିଲା । ସାମାଜିକ ସମ୍ମିଳନୀ ପାଇଁ ବୀତସ୍ପୃହତା କାଳକ୍ରମେ ଏପରି ହେଲା ଯେ ରାଜନୈତିକ କାର୍ଯ୍ୟ ସହ ସଂପୃକ୍ତ ଥିବା ବ୍ୟକ୍ତିଗଣ ସାମାଜିକ ସମ୍ମିଳନୀ ପ୍ରତି ବିମୁଖ ଓ ତା'ର ବିରୋଧୀ ହୋଇପଡ଼ିଲେ । ସାମାଜିକ ସମ୍ମିଳନୀ ପାଇଁ କଂଗ୍ରେସ ଏହାର ମଞ୍ଚକୁ ବ୍ୟବହାର କରିବାକୁ ଯେଉଁ ସୁଯୋଗ ଦେଉଥିଲା ଶ୍ରୀ ତିଳକଙ୍କ ନେତୃତ୍ୱରେ କଂଗ୍ରେସ ତାହା ମନା କରିଦେଲା । ଏପରିକି ସାମାଜିକ ସମ୍ମିଳନୀର କର୍ମକର୍ତ୍ତାଗଣ ଯେତେବେଳେ ଏକ ସ୍ୱତନ୍ତ୍ର ମଞ୍ଚ କରିବାକୁ ଚାହିଁଲେ ସେମାନଙ୍କୁ କଂଗ୍ରେସ ତରଫରୁ ଭୟ ପ୍ରଦର୍ଶନ କରାଯାଇ ସେମାନଙ୍କ ମଞ୍ଚକୁ ପୋଡ଼ିଦେବା ପାଇଁ ଧମକ ଦିଆଗଲା । ସମୟର ଆବର୍ତ୍ତନରେ ରାଜନୈତିକ ସଂସ୍କାର ଚାହୁଁଥିବା ରାଜନୈତିକ ଦଳ ତିଷ୍ଠି ରହିଲା, କିନ୍ତୁ ସାମାଜିକ ସମ୍ମିଳନୀ ଲୋପ ପାଇଲା ଓ ଏପରିକି ବିସ୍ମୃତ ହୋଇଗଲା । ଡବ୍ଲ୍ୟୁ.ସି. ବାନାର୍ଜୀ ୧୮୯୨ରେ ଆଲ୍ଲାହାବାଦଠାରେ କଂଗ୍ରେସର ଅଷ୍ଟମ ଅଧିବେଶନରେ ସଭାପତିତ୍ୱ କରି ସାମାଜିକ ସମ୍ମିଳନୀର ଯବନିକା ଟାଣିଦେଲେ । ତାଙ୍କର ଓ କଂଗ୍ରେସ ଦଳର ବକ୍ତବ୍ୟ ସାମାଜିକ ସମ୍ମିଳନୀର ମୃତ୍ୟୁ ଘଣ୍ଟି ବଜାଇଲା । ଏଠାରେ ବାନାର୍ଜୀଙ୍କର ବକ୍ତବ୍ୟରୁ ମୁଁ କିଞ୍ଚିତ୍ ଉଦ୍ଧାର କରୁଛି ।

"ଯେଉଁମାନେ ଆମ ସାମାଜିକ ବ୍ୟବସ୍ଥାର ପରିବର୍ତ୍ତନ ବ୍ୟତୀତ ରାଜନୈତିକ ସଂସ୍କାର ସମ୍ଭବ ନୁହଁ ବୋଲି କହୁଛନ୍ତି ସେମାନଙ୍କର କଥା ଅତି ହାସ୍ୟାସ୍ପଦ ମନେହୁଏ । ସାମାଜିକ ସଂସ୍କାର ଓ ରାଜନୈତିକ ସଂସ୍କାର ଭିତରେ ସାମାନ୍ୟତମ ସମ୍ବନ୍ଧ ଥିବା ମୁଁ

ଦେଖି ପାରୁନାହିଁ । ଆମ ସମାଜରେ ବିଧବାମାନେ ବିବାହ କରି ପାରୁ ନଥିବାରୁ ଓ ଅନ୍ୟ ଦେଶ ତୁଳନାରେ ଆମ ଦେଶର ଝିଅମାନେ ଅଳ୍ପ ବୟସରେ ବିବାହ କରୁଥିବାରୁ ଆମେ ରାଜନୈତିକ ସଂସ୍କାର ପାଇଁ ଯୋଗ୍ୟ ନୋହୁଁ ବୋଲି କହିବା ଆଦୌ ସମୀଚୀନ ନୁହେଁ । ଆମେ କୌଣସି ବନ୍ଧୁଙ୍କ ଘରକୁ ଗଲାବେଳେ ସାଥୀରେ ଆମମାନଙ୍କର ପତ୍ନୀ ବା ଝିଅମାନଙ୍କୁ ନେଉ ନଥିବାରୁ ଏବଂ ଆମର ଝିଅମାନଙ୍କୁ ଅକ୍‌ସଫୋର୍ଡ ବା କେମ୍ବ୍ରିଜ୍‌ରେ ପଢ଼ିବାକୁ ପଠାଉ ନଥିବାରୁ ଆମେ କ'ଣ ରାଜନୈତିକ ଅଧିକାର ପାଇବୁ ନାହିଁ ?" (ତାଙ୍କର ଏହି ବକ୍ତବ୍ୟକୁ ଉତ୍‌ଫୁଲ୍ଲିତ ହୋଇ ସମସ୍ତେ ସମର୍ଥନ କରିଥିଲେ ।)

ଶ୍ରୀ ବାନାର୍ଜୀ ରାଜନୈତିକ ସଂସ୍କାର ପରିପ୍ରେକ୍ଷୀରେ ଯାହା କହିଥିଲେ ମୁଁ ତାହା ଉଦ୍ଧାର କରିଛି । କଂଗ୍ରେସର ଏହି ବିଜୟରେ ସେତେବେଳେ ଅନେକ ଖୁସି ହୋଇଥିଲେ; କିନ୍ତୁ ଯେଉଁମାନେ ସାମାଜିକ ସଂସ୍କାରର ଗୁରୁତ୍ୱକୁ ଅନୁଭବ କରନ୍ତି ସେମାନେ ପ୍ରଶ୍ନ କରିବେ ଶ୍ରୀ ବାନାର୍ଜୀଙ୍କର ଯୁକ୍ତି ଯଥାର୍ଥ କି ? ଏଥିରୁ ଏହା କ'ଣ ପ୍ରମାଣିତ ହେଉଛି କି ଯେଉଁମାନଙ୍କର ବିଜୟ ହୋଇଛି ସେମାନେ ଠିକ୍ ବାଟରେ ଅଛନ୍ତି ? ରାଜନୈତିକ ସଂସ୍କାର ପରିପ୍ରେକ୍ଷୀରେ ସମାଜ ସଂସ୍କାରର କୌଣସି ଗୁରୁତ୍ୱ କ'ଣ ନାହିଁ ? ମୁଁ ଯଦି ଅନ୍ୟ ଦିଗରୁ ଘଟଣାକୁ ଉଲ୍ଲେଖ କରେ ତେବେ ବିଷୟଟିକୁ ସ୍ପଷ୍ଟ ଭାବରେ ବୁଝି ହେବ । ଅସ୍ପୃଶ୍ୟମାନଙ୍କ ପ୍ରତି ସମାଜରେ କିପରି ବ୍ୟବହାର ପ୍ରଦର୍ଶନ କରାଯାଉଥିଲା ସେ କ୍ଷେତ୍ରରେ କେତେକ ଘଟଣା ଏଠାରେ ଉପସ୍ଥାପନ କରୁଛି ।

ପେଶୱାମାନଙ୍କର ଶାସନ କାଳରେ ମରାଠା ରାଜ୍ୟର ନିୟମ ଅନୁଯାୟୀ ଜଣେ ଅସ୍ପୃଶ୍ୟ ଲୋକର ରାସ୍ତାରେ ଚାଲିବା ଅଧିକାର ମଧ ନଥିଲା । ଜଣେ ସବର୍ଣ୍ଣ ଲୋକ ଯେଉଁ ରାସ୍ତାରେ ଯାଏ ସେହି ରାସ୍ତାରେ ଅସ୍ପୃଶ୍ୟ ଲୋକଟି ଗଲେ ତା'ର ଛାଇ ସବର୍ଣ୍ଣ ହିନ୍ଦୁ ଉପରେ ପଡ଼ିଲେ ସେ ଅପବିତ୍ର ହୋଇଯିବ ବୋଲି ଭାବୁଥିଲା । କୌଣସି ଅସ୍ପୃଶ୍ୟ ଲୋକକୁ ଜାଣିବା ପାଇଁ ସେ ତା'ର ଅଣ୍ଟାରେ ବା ବେକରେ ଏକ କଳା ଫିତା ପିନ୍ଧିବା ଦରକାର ହେଉଥିଲା । ଏପରିକି ଜଣେ ସବର୍ଣ୍ଣ ହିନ୍ଦୁ ଅସ୍ପୃଶ୍ୟ ଲୋକକୁ ଭୁଲରେ ବି ଛୁଇଁବା ଦ୍ୱାରା ଅପବିତ୍ର ହେଉଥିଲା । ପେଶ୍ୱାର ରାଜଧାନୀ ପୁନାରେ ଏପରି ନିୟମ ଥିଲା, ଫଳରେ ଅସ୍ପୃଶ୍ୟ ଲୋକକୁ ତା'ର ଅଣ୍ଟାର ତଳକୁ ଏକ ଝାଡୁ ବାନ୍ଧି ଯିବାକୁ ପଡୁଥିଲା । ସେହି ଝାଡୁଦ୍ୱାରା ସେ ଚାଲିକରି ଯାଉଥିବା ରାସ୍ତା ପଛ ଆଡୁ ଝାଡୁ

ହୋଇଯାଇଥିଲା । ପୁନାରେ ଏପରି ମଧ୍ୟ ଥିଲା ପ୍ରତ୍ୟେକ ଅସ୍ପୃଶ୍ୟ ବ୍ୟକ୍ତି ତା'ର ବେକରେ ଏକ ମାଟି ପାତ୍ର ଓହଳାଇ ଯିବ । କାରଣ ଯଦି ସେ ଛେପ ପକାଏ ତେବେ ବେକରେ ଝୁଲୁଥିବା ପାତ୍ରରେ ହିଁ ପକାଇବ, ଭୂମିରେ ପକାଇ ପାରିବ ନାହିଁ । ସେ ରାସ୍ତାରେ ଛେପ ପକାଇଲେ ତାହା ଅନ୍ୟମାନଙ୍କୁ ଅପବିତ୍ର କରିଦେବ । ନିକଟରେ ଘଟିଥିବା ମଧ୍ୟ ଭାରତରେ ବଲାଇ ନାମକ ଗୋଟିଏ ଅସ୍ପୃଶ୍ୟ ଜାତିପ୍ରତି ହିନ୍ଦୁମାନଙ୍କର କ୍ରୂର ବ୍ୟବହାର ମୁଁ ଏଠାରେ ଉଲ୍ଲେଖ କରୁଛି । 'ଟାଇମ୍ସ ଅଫ୍ ଇଣ୍ଡିଆ' ଖବର କାଗଜରେ ୪-୧-୧୯୨୮ରେ ଏକ ସମ୍ବାଦ ପ୍ରକାଶ ପାଇଥିଲା । ଟାଇମସ୍ ଅଫ ଇଣ୍ଡିଆ ସମ୍ବାଦଦାତା ଲେଖିଥିଲେ ଯେ କନରିଆ, ବିଚୋକି, ଆପସି, ମାର୍ଡନା ଏବଂ ଏହିପରି ଇନ୍ଦୋରର ଆହୁରି ପନ୍ଦରଟି ଗ୍ରାମରେ କୋଇଟା, ରାଜପୁତ, ବ୍ରାହ୍ମଣ, ପଟେଲ ଓ ପଟୱାରୀ ଆଦି ଜାତିର ଲୋକମାନେ ନିଜ ନିଜ ଗ୍ରାମରେ ବାଲାଇ ଅସ୍ପୃଶ୍ୟ ଜାତିର ଲୋକମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସେମାନେ ଯଦି ସେମାନଙ୍କ ଗ୍ରାମମାନଙ୍କରେ ବାସ କରିବାକୁ ଚାହାନ୍ତି ତେବେ ସେମାନଙ୍କୁ ତଳ ନିୟମଗୁଡ଼ିକୁ ମାନିବାକୁ ହେବ ।

୧) ବାଲାଇ ଜାତିର ଲୋକମାନେ ସୁନା ରଙ୍ଗର ଧଡ଼ି ଥିବା କୌଣସି ଟୋପି ମୁଣ୍ଡରେ ପିନ୍ଧି ପାରିବେ ନାହିଁ ।

୨) ରଙ୍ଗୀନ ଧୋତି କିମ୍ବା ସୌଖୀନ ଧଡ଼ିଥିବା ଧୋତି ପିନ୍ଧିବେ ନାହିଁ ।

୩) କୌଣସି ହିନ୍ଦୁ ପରିବାରରେ କେହି ବ୍ୟକ୍ତି ମୃତ୍ୟୁବରଣ କଲେ ସେହି ସମ୍ବାଦ ଯେତେ ଦୂରରେ ଥିଲେ ବି ତାଙ୍କର ସମ୍ପର୍କୀୟଙ୍କ ପାଖରେ ପହଞ୍ଚାଇବେ ।

୪) ସମସ୍ତ ହିନ୍ଦୁ ବିଭାଘରରେ ଓ ବିବାହ ସମୟରେ ବାଲାଇମାନେ ବାଜା ବଜାଇବେ ।

୫) ବାଲାଇ ସ୍ତ୍ରୀଲୋକମାନେ ସୁନା ବା ରୂପାର କୌଣସି ଗହଣା ପିନ୍ଧିପାରିବେ ନାହିଁ । ସେମାନେ କୌଣସି ରଙ୍ଗୀନ ବା ସୌଖୀନ ଶାଢ଼ି ବା ଜାକେଟ୍ ପରିଧାନ କରିବେ ନାହିଁ ।

୬) ହିନ୍ଦୁ ମହିଳାମାନଙ୍କର ପ୍ରସବକାଳୀନ କାର୍ଯ୍ୟରେ ବାଲାଇ ସ୍ତ୍ରୀଲୋକମାନେ ଉପସ୍ଥିତ ରହି ଆବଶ୍ୟକ ସେବା କରିବେ ।

୭) ବାଲାଇମାନେ କୌଣସି ପାରିଶ୍ରମିକ ଦାବି ନକରି ହିନ୍ଦୁମାନଙ୍କର କାର୍ଯ୍ୟ କରିବେ ଓ ହିନ୍ଦୁମାନେ ଯାହା ଦେବେ ତାକୁ ଗ୍ରହଣ କରିବାକୁ ବାଧ୍ୟ ହେବେ ।

୮) ଯଦି ବାଲାଇମାନେ ଏହି ସର୍ତ୍ତଗୁଡ଼ିକରେ ରାଜି ହେବେ ନାହିଁ ତେବେ ସେମାନେ ଗାଁ ଛାଡ଼ିଦେଇ ଚାଲିଯିବେ । ବାଲାଇମାନେ ଯେତେବେଳେ ଏହି ସର୍ତ୍ତକୁ ଗ୍ରହଣ କଲେନାହିଁ ହିନ୍ଦୁମାନେ ତାଙ୍କ ବିରୁଦ୍ଧରେ ପଦକ୍ଷେପ ନେଲେ । ବାଲାଇମାନଙ୍କୁ ଗାଁର କୂଅରୁ ଜଳ ନେବାକୁ ବାରଣ କରାଗଲା । ସେମାନଙ୍କର ଗାଈ ଗୋରୁଙ୍କୁ ଗୋଚର ଜମିକୁ ଛାଡ଼ି ଦିଆଗଲା ନାହିଁ । ବାଲାଇମାନେ ହିନ୍ଦୁମାନଙ୍କର ଜମିର ବାଟ ଦେଇ ନିଜ ଜମିକୁ ଯିବାପାଇଁ ନିଷେଧ କରାଗଲା । ଯଦି ଜଣେ ବାଲାଇର ଜମିର ଚତୁଃପାର୍ଶ୍ୱରେ ହିନ୍ଦୁମାନଙ୍କର ଜମିଥାଏ ତେବେ ସେ ନିଜର ଜମିକୁ ଯିବାକୁ ଅଧିକାର ହରାଇଲା । ବାଲାଇମାନଙ୍କର ଜମି ଉପରେ ହିନ୍ଦୁମାନେ ସେମାନଙ୍କର ଗାଈ ଗୋରୁ ଚରାଇଲେ । ଏହି ବାସନ୍ଦ ବିରୁଦ୍ଧରେ ଦରବାରଠାରେ ସେମାନେ ଦରଖାସ୍ତ ଦେଲେ । ଯେହେତୁ ଠିକ୍ ସମୟରେ କୌଣସି ପଦକ୍ଷେପ ନିଆଗଲା ନାହିଁ ଓ ଏହି ଅତ୍ୟାଚାର ବଢ଼ି ଚାଲିଲା ଶହ ଶହ ବାଲାଇ ଲୋକମାନେ ନିଜର ସ୍ତ୍ରୀ ଓ ପିଲାଛୁଆଙ୍କୁ ଧରି ପୁରୁଷାନୁକ୍ରମେ ରହିଥିବା ଗାଁର ଭିଟାମାଟି ଛାଡ଼ି ଅନ୍ୟ କେତେକ ରାଜ୍ୟ ଯଥା- ଧର, ଦେୱାସ, ବାଗ୍‌ଲି, ଭୋପାଳ, ଗ୍ୱାଲିଅର ଇତ୍ୟାଦି ରାଜ୍ୟମାନଙ୍କର ଗ୍ରାମମାନଙ୍କୁ ଉଠିଆସିଲେ । ଏହି ନୂଆ ଗାଁ ମାନଙ୍କରେ ସେମାନଙ୍କର ଦଶା କ'ଣ ହେଲା ଏଠାରେ ଆଲୋଚନା କରିବା ଆବଶ୍ୟକ ନାହିଁ । ତାହା ସହଜରେ ଅନୁମେୟ । ଗୁଜୁରାଟର କବିତା ତାଲୁକରେ ଗତବର୍ଷ ଘଟିଥିବା ଘଟଣା ଦେଖାଯାଉ । ସେହି ଗ୍ରାମରେ ହିନ୍ଦୁମାନେ ଅସ୍ପୃଶ୍ୟ ଜାତିର ଲୋକମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ସରକାରଙ୍କ ଦ୍ୱାରା ପରିଚାଳିତ ଗ୍ରାମର ବିଦ୍ୟାଳୟକୁ ସେମାନଙ୍କର ପିଲାମାନେ ଆସିପାରିବେ ନାହିଁ । ଗୋଟିଏ ସରକାରୀ ପରିଚାଳିତ ବିଦ୍ୟାଳୟରେ ଅସ୍ପୃଶ୍ୟ ପିଲାମାନଙ୍କର ପଢ଼ିବାର ଅଧିକାରକୁ ହିନ୍ଦୁମାନେ କାଢ଼ି ନେଇଥିଲେ । ଗୁଜୁରାଟର ଅହମଦାବାଦ ଜିଲ୍ଲାରେ ଥିବା ଜାନୁ ଗ୍ରାମର ଘଟଣା ଦେଖାଯାଉ । ୧୯୩୫ ମସିହା ନଭେମ୍ବର ମାସରେ ସାମାନ୍ୟ ସ୍ୱଚ୍ଛଳ ଥିବା କେତେକ ଅସ୍ପୃଶ୍ୟ ସ୍ତ୍ରୀଲୋକ ପିତଳ ଗରାରେ ଘରକୁ ପାଣି ନେଲେ । ଅସ୍ପୃଶ୍ୟ

ସ୍ତ୍ରୀଲୋକମାନେ ପିତଳ ଗରା ବ୍ୟବହାର କରିବା ସବର୍ଣ୍ଣ ହିନ୍ଦୁମାନଙ୍କ ପାଇଁ ଅସମ୍ମାନ ଜନକ ଥିଲା । ଏହା ହିନ୍ଦୁମାନଙ୍କ ମର୍ଯ୍ୟାଦା ପ୍ରତି ଅପମାନ ମନେକରି ସେମାନଙ୍କର ଔଦ୍ଧତ୍ୟ ପାଇଁ ସେହି ସ୍ତ୍ରୀଲୋକମାନଙ୍କୁ ପ୍ରହାର କରାଗଲା । ସଂପ୍ରତି ଜୟପୁର ରାଜ୍ୟର ଚକବାଡ଼ା ଗ୍ରାମରେ ଘଟିଥିବା କେତେକ ଘଟଣା ସମ୍ବାଦ ପତ୍ରରେ ପ୍ରକାଶ ପାଇଛି । ସମ୍ବାଦ ଅନୁଯାୟୀ ଚକବାଡ଼ା ଗ୍ରାମର ଜଣେ ଅସ୍ପୃଶ୍ୟ ବ୍ୟକ୍ତି ତୀର୍ଥକରି ଯାଇଥିଲେ ଓ ଫେରି ତାଙ୍କର ବିଶ୍ୱାସ ଅନୁଯାୟୀ ନିଜ ଜାତିର ଲୋକମାନଙ୍କ ପାଇଁ ଏକ ଭୋଜି ଆୟୋଜନ କରିଥିଲେ । ଯେତେବେଳେ ସେମାନେ ରୋଷେଇବାସ ସାରି ଖାଇବାକୁ ଯା'ନ୍ତି ଶତାଧିକ ହିନ୍ଦୁ ଠେଙ୍ଗାବାଡ଼ି ଧରି ଭୋଜି ଜାଗାରେ ପହଞ୍ଚି ରୋଷେଇ ଖାଦ୍ୟକୁ ନଷ୍ଟ କରିଦେଇ ଖାଇବାକୁ ଯାଉଥିବା ଲୋକମାନଙ୍କୁ ପ୍ରହାର କରିଥିଲେ । ସେମାନେ ପ୍ରାଣ ବିକଳରେ ଖାଦ୍ୟ ଛାଡ଼ି ପଳାଇ ଯିବାବେଳେ ସେମାନଙ୍କୁ ଗୋଡ଼ାଇ ମାଡ଼ ଦେଇଥିଲେ । ସେମାନେ ଅସ୍ପୃଶ୍ୟ ଜାତିର ଏହି ନିରସ୍ତ୍ର ଲୋକମାନଙ୍କୁ କାହିଁକି ଆକ୍ରମଣ କରି ପ୍ରହାର କଲେ ? ଏହାର କାରଣ ଅସ୍ପୃଶ୍ୟମାନେ ଘିଅ ଖାଇବା ହିନ୍ଦୁମାନଙ୍କର ମର୍ଯ୍ୟାଦା ପ୍ରତି ଅସମ୍ମାନ ଜନକ ଥିଲା । ଘିଅ ଧନୀ ଲୋକମାନଙ୍କର ଏକ ବିଳାସପୂର୍ଣ୍ଣ ଖାଦ୍ୟ । କିନ୍ତୁ ଘିଅ ଖାଇବା ଏକ ସାମାଜିକ ପ୍ରତିଷ୍ଠାର ଚିହ୍ନ ବୋଲି କେହି କେବେ ଭାବିବ କି ? ଅସ୍ପୃଶ୍ୟମାନେ ଘିଅ ଖାଇବା ପାଇଁ ଆଗ୍ରହ କରି ସବର୍ଣ୍ଣ ଲୋକମାନଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରିଛନ୍ତି ବୋଲି ଚକବାଡ଼ାର ହିନ୍ଦୁମାନେ ଭାବି ସେମାନଙ୍କର ଏହି ଔଦ୍ଧତ୍ୟ ପାଇଁ ସେମାନଙ୍କ ଉପରେ ଆକ୍ରମଣ କରିଥିଲେ । ଏହାର ଅର୍ଥ ହେଉଛି ଜଣେ ଅସବର୍ଣ୍ଣ ବ୍ୟକ୍ତି ଘିଅ କିଣିବାକୁ ସମର୍ଥ ହେଲେ ବି ଏହା କରିପାରିବ ନାହିଁ, କାରଣ ଏହା ହିନ୍ଦୁମାନଙ୍କ ପାଇଁ ଅମର୍ଯ୍ୟାଦା ଜନକ । ଏହି ଘଟଣା ୧୯୩୬ ଏପ୍ରିଲ ୧ ତାରିଖ ବା ସେହି ପାଖାପାଖି ଘଟିଥିଲା ।

ଏହି କେତେକ ଘଟଣାକୁ ଉଲ୍ଲେଖ କଲାପରେ ବର୍ତ୍ତମାନ ସମାଜ ସଂସ୍କାରର ଆବଶ୍ୟକତାକୁ ବିଚାର କରାଯାଉ । ଶ୍ରୀ ବାନାର୍ଜୀଙ୍କର ବକ୍ତବ୍ୟ ପରିପ୍ରେକ୍ଷୀରେ ରାଜନୈତିକ ପରିବର୍ତ୍ତନ ଚାହୁଁଥିବା ହିନ୍ଦୁମାନଙ୍କୁ ଏହି ପ୍ରଶ୍ନ ପଚରା ଯାଇପାରେ - ଯେତେବେଳେ ନିଜ ଦେଶର ଅଗଣିତ ଅସ୍ପୃଶ୍ୟମାନଙ୍କୁ ଏପରିକି ବିଦ୍ୟାଳୟକୁ ଯିବାକୁ

ଅନୁମତି ମିଳୁ ନାହିଁ ସେତେବେଳେ ରାଜନୈତିକ କ୍ଷମତା ପାଇଁ ଆମେ ଯୋଗ୍ୟ କି ? ସର୍ବସାଧାରଣ କୂଅ ପୋଖରୀ ଅସ୍ପୃଶ୍ୟମାନଙ୍କୁ ବାରଣ କରାଯାଉଥିବା ବେଳେ ରାଜନୈତିକ କ୍ଷମତା ପାଇଁ ଆପଣମାନେ କେତେଦୂର ଉପଯୁକ୍ତ ? ଅସ୍ପୃଶ୍ୟମାନଙ୍କୁ ସାଧାରଣ ରାସ୍ତା ବ୍ୟବହାର କରିବାକୁ ବାରଣ କରାଯାଉଥିବା ବେଳେ, ସେମାନଙ୍କର କୌଣସି ସୌଖୀନ ପୋଷାକ ବା ଅଳଙ୍କାର ପିନ୍ଧିବାକୁ ଅନୁମତି ନଥିବା ବେଳେ ଏପରିକି ସେମାନଙ୍କର ରୁଚି ମୁତାବକ ଖାଇବା ପାଇଁ ହିନ୍ଦୁମାନେ ସେମାନଙ୍କୁ ବଞ୍ଚିତ କରୁଥିବା ବେଳେ ଆପଣମାନେ କେତେଦୂର ରାଜନୈତିକ କ୍ଷମତା ହାସଲ କରିବାକୁ ସମର୍ଥ ? ଏହିପରି ଅନେକ ପ୍ରଶ୍ନ ଏଠାରେ ଉତ୍‌ଥାପନ କରାଯାଇପାରେ । ଶ୍ରୀ ବାନାର୍ଜୀ ଏହି ପ୍ରଶ୍ନଗୁଡ଼ିକ୍‌ର କ'ଣ ଉତ୍ତର ଦେବେ ମୁଁ ତାହା କହିପାରିବି ନାହିଁ । କିନ୍ତୁ କୌଣସି ସୁବୁଦ୍ଧିସମ୍ପନ୍ନ ବ୍ୟକ୍ତି ଏହି ପ୍ରଶ୍ନମାନଙ୍କର ଆସ୍ତିସୂଚକ ଉତ୍ତର ଦେଇପାରିବେ ନାହିଁ । କଂଗ୍ରେସ ଲୋକମାନେ ମିଲ୍‌ଙ୍କ ମତ ଉଦ୍ଧାର କରି କହିଥାନ୍ତି ଯେ – ଗୋଟିଏ ରାଷ୍ଟ୍ର ଆଉ ଗୋଟିଏ ରାଷ୍ଟ୍ରକୁ ଶାସନ କରିବା ଯଥାର୍ଥ ନୁହେଁ । ସେମାନେ ସେହି ଯୁକ୍ତିରେ ସ୍ୱୀକାର କରିବା ଆବଶ୍ୟକ ଯେ ଗୋଟିଏ ଶ୍ରେଣୀ ଅନ୍ୟ ଗୋଟିଏ ଶ୍ରେଣୀ ଉପରେ ଶାସନ କରିବା ମଧ୍ୟ ଠିକ୍ ନୁହେଁ ।

ତେବେ ସମାଜ ସଂସ୍କାର ଦଳଟିର କାହିଁକି ପରାଜୟ ହେଲା ? ଏହି ପ୍ରଶ୍ନକୁ ବୁଝିବାକୁ ହେଲେ ସେହି ସଂସ୍କାରକମାନେ କେଉଁ ପ୍ରକାରର ସାମାଜିକ ସଂସ୍କାର ଆଣିବାକୁ ଚେଷ୍ଟା କରୁଥିଲେ ତାହା ବିଚାରକୁ ନେବା ଆବଶ୍ୟକ । ଏହି ପରିପ୍ରେକ୍ଷୀରେ ସାମାଜିକ ସଂସ୍କାରକୁ ଦୁଇଟି ପୃଷ୍ଠଭୂମିରେ ବିଚାର କରିବା ଦରକାର । ହିନ୍ଦୁ ପରିବାରର ସଂସ୍କାର ଆଣିବା ଓ ହିନ୍ଦୁ ସମାଜର ପୁନର୍ଗଠନ ଓ ପୁନର୍ବିନ୍ୟାସ କରି ସଂସ୍କାର ଆଣିବା ପୃଥକ ମନେହୁଏ । ପାରିବାରିକ ସଂସ୍କାର, ବିଧବା ବିବାହ, ବାଲ୍ୟ ବିବାହ ନିଷେଧ ଇତ୍ୟାଦି ପ୍ରଶ୍ନ ସହ ସଂଶ୍ଳିଷ୍ଟ ହେବାବେଳେ ସମାଜ ସଂସ୍କାର ଜାତିପ୍ରଥା ଓ ତା'ର ଆନୁଷଙ୍ଗିକ ମନ୍ଦ ବ୍ୟବସ୍ଥାର ବିଲୋପ ସହ ସଂପୃକ୍ତ ଅଟେ । ସାମାଜିକ ସମ୍ମିଳନୀ ଉଚ୍ଚ ବର୍ଣ୍ଣର ହିନ୍ଦୁ ପରିବାରମାନଙ୍କରେ କିଛି ସଂସ୍କାର ପାଇଁ ପ୍ରୟାସ କରିଥିଲା । ଏଥିରେ ଉଚ୍ଚ ଜାତିର ସଚେତନ ହିନ୍ଦୁମାନେ ସଂଶ୍ଳିଷ୍ଟ ରହିଥିଲେ । ସେମାନେ ଜାତିପ୍ରଥାକୁ ଉଚ୍ଛେଦ କରିବା ପାଇଁ କୌଣସି ଆବଶ୍ୟକତା ଅନୁଭବ କରି ନଥିଲେ ଓ ଏପରିକି ଏହାକୁ ପରିବର୍ତ୍ତନ କରିବା ପାଇଁ ବା ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ କୌଣସି ସାହସ ଦେଖାଇ ନଥିଲେ । ବିଧବା ବିବାହ, ବାଲ୍ୟ ବିବାହ ନିଷେଧ ଇତ୍ୟାଦି

କ୍ଷେତ୍ରରେ ରହିଥିବା ସାମାଜିକ ମନ୍ଦ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା ପାଇଁ ସେମାନେ ସ୍ୱତଃ ପ୍ରବୃତ୍ତ ଭାବରେ ଆଗଭର ହୋଇଥିଲେ । ଏହି ସମସ୍ୟା ସେମାନଙ୍କ ଭିତରେ ଥିବାରୁ ଓ ଏପରିକି ସେମାନେ ନିଜେ ଏହି ସମସ୍ୟାକୁ ଅଙ୍ଗେ ଲିଭାଉଥିବା ଯୋଗୁଁ ଏ ସବୁକୁ ପରିବର୍ତ୍ତନ କରିବା ପାଇଁ ସେମାନେ ଇଚ୍ଛା କରୁଥିଲେ । କିନ୍ତୁ ହିନ୍ଦୁ ସମାଜରେ ସାମଗ୍ରିକ ଭାବରେ ପରିବର୍ତ୍ତନ ଆଣିବା ପାଇଁ ସେମାନେ ଉଦ୍ୟମ କରି ନଥିଲେ । ମୋଟ ଉପରେ କହିଲେ ସେମାନଙ୍କର କାର୍ଯ୍ୟକ୍ରମ ପାରିବାରିକ ସ୍ତରରେ କେତେକ ସଂସ୍କାର ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ଅନମନୀୟ ଜାତିପ୍ରଥାକୁ ଭାଙ୍ଗିବା ପାଇଁ ସେମାନେ କୌଣସି ସାମାଜିକ ସଂସ୍କାରଜନିତ କାର୍ଯ୍ୟକ୍ରମକୁ ଲକ୍ଷ୍ୟ ଭାବରେ ଗ୍ରହଣ କରି ନଥିଲେ । ଗୋଟିଏ ଅତି ସୀମିତ ଲକ୍ଷ୍ୟ ଦିଗରେ କାର୍ଯ୍ୟ କରିବା ଯୋଗୁଁ ସମାଜ ସଂସ୍କାର ଦଳ ଅବଶେଷରେ ବିଲୁପ୍ତ ହେଲା ।

ବାସ୍ତବ ପକ୍ଷେ ସମାଜ ସଂସ୍କାର ବଦଳରେ ରାଜନୈତିକ ସଂସ୍କାର ପ୍ରାଧାନ୍ୟ ଲାଭ କଲା । ଏକଥା ମୁଁ ଜାଣେ ଯେ ମୋର ଏହି ଯୁକ୍ତି ସେଥିରେ କୌଣସି ପରିବର୍ତ୍ତନ ଆଣିପାରିବ ନାହିଁ କିନ୍ତୁ ଏହି ତର୍କର ଅନ୍ୟ ଏକ ମହତ୍ତ୍ୱ ରହିଛି । ସାମାଜିକ ସଂସ୍କାର ପ୍ରୟାସଟି କାହିଁକି ବିଫଳ ହେଲା ଏହା ଅନ୍ତତଃ ତାହା ହିଁ ଦର୍ଶାଉଛି । ଏଥିରୁ ଏହା ମଧ ବୁଝାପଡୁଛି ଯେ ରାଜନୈତିକ ସଂସ୍କାର ଦଳ ସମାଜ ସଂସ୍କାର ଦଳ ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ ମନେ ହୋଇଥିଲା । ରାଜନୈତିକ ସଂସ୍କାର ପୂର୍ବରୁ ସମାଜ ସଂସ୍କାର ଯେ ଆବଶ୍ୟକ ନୁହେଁ ଏହା ଗ୍ରହଣ କରିବା ପଶ୍ଚାତରେ ସମାଜ ସଂସ୍କାର ଏକ ସୀମିତ ଅର୍ଥରେ ପାରିବାରିକ ସଂସ୍କାରକୁ ବୁଝାଉଥିଲା । କିନ୍ତୁ ସମାଜ ସଂସ୍କାରକୁ ଏକ ବ୍ୟାପକତର ଅର୍ଥରେ ନେଇ ସାମାଜିକ ପୁନର୍ଗଠନ କରିବା କ୍ଷେତ୍ରରେ ରାଜନୈତିକ ସଂସ୍କାରକୁ ଗୁରୁତ୍ୱ ଦେଇ ସାମାଜିକ ସଂସ୍କାରକୁ ନ୍ୟୂନ କରାଯାଇପାରିବ ନାହିଁ । ରାଜନୈତିକ ପରିବର୍ତ୍ତନ ପାଇଁ ସାମାଜିକ ବ୍ୟବସ୍ଥାରେ ଯେ ପରିବର୍ତ୍ତନ ଆବଶ୍ୟକ ଏହା କୁହାଯାଇପାରେ । ଏପରିକି କାର୍ଲ ମାର୍କସଙ୍କର ବନ୍ଧୁ ଓ ସହଯୋଗୀ ଫର୍ଡ଼ିନାଣ୍ଡ ଲାସଲେଙ୍କ ପରି ବ୍ୟକ୍ତି ମତପ୍ରକାଶ କରିଛନ୍ତି ଯେ ରାଜନୈତିକ ସମ୍ବିଧାନ କରିବା ବେଳେ ସାମାଜିକ ବ୍ୟବସ୍ଥା ଓ ଶକ୍ତି ସମୂହକୁ ବିଚାରକୁ ନିଆଯିବା ଦରକାର । ୧୮୬୨ ମସିହାରେ ପ୍ରୁସିଆର ଏକ ସଭାରେ ସେ କହିଥିଲେ, "ସାମ୍ବିଧାନିକ ପ୍ରଶ୍ନଗୁଡ଼ିକ ପ୍ରାରମ୍ଭରେ କେବଳ ଅଧିକାରର ପ୍ରଶ୍ନ ନୁହେଁ ବରଂ ସାମର୍ଥ୍ୟର ପ୍ରଶ୍ନ ଅଟେ । ଏକ ଦେଶରେ ପ୍ରଚଳିତ ଥିବା

ସାମାଜିକ ଅବସ୍ଥା ଓ ଶକ୍ତି ସମୂହର ଭିତ୍ତିଭୂମି ଉପରେ ତାହାର ସାମ୍ବିଧାନିକ ସଫଳତା ନିର୍ଭର କରେ । ସୁତରାଂ ରାଜନୈତିକ ସମ୍ବିଧାନର ମହତ୍ତ୍ୱ ଓ ସ୍ଥାୟିତ୍ୱ ବାସ୍ତବ ସାମାଜିକ ବ୍ୟବସ୍ଥାର ମହତ୍ୱ ଉପରେ ନିର୍ଭର କରେ । ଅର୍ଥାତ୍ ଗୋଟିଏ ସମାଜରେ ପ୍ରଚଳିତ ଥିବା ବାସ୍ତବ ସାମାଜିକ ପରିସ୍ଥିତି ଉପରେ ରାଜନୈତିକ ସଫଳତା ନିର୍ଭର କରିଥାଏ ।" ପ୍ରୁସିଆର ଉଦାହରଣ ଦେବା ଆବଶ୍ୟକ ନାହିଁ । ଆମ ଦେଶରେ ମଧ୍ୟ ଏପରି ଘଟଣା ରହିଛି । ସରକାର ଦେଉଥିବା କମ୍ୟୁନାଲ ଆୱାଡ଼ର ତାତ୍ପର୍ଯ୍ୟ କ'ଣ ? ଏଥିରେ ବିଭିନ୍ନ ଶ୍ରେଣୀ ଓ ସଂପ୍ରଦାୟକୁ ନିର୍ଦ୍ଦିଷ୍ଟ ଅନୁପାତରେ ରାଜନୈତିକ କ୍ଷମତା ଦିଆଯାଉନାହିଁ କି ? ମୋ ମତରେ ରାଜନୈତିକ ସଂସ୍ଥାପନ କ୍ଷେତ୍ରରେ ସାମାଜିକ ସଂଗଠନକୁ ଗୁରୁତ୍ୱ ଦେବା ଏହାର ତାତ୍ପର୍ଯ୍ୟ ଅଟେ । ଯେଉଁ ରାଜନୈତିକ ବ୍ୟକ୍ତିଗଣ ଭାରତରେ ରାଜନୈତିକ ସମସ୍ୟା କ୍ଷେତ୍ରରେ ସାମାଜିକ ସମସ୍ୟାର କୌଣସି ପ୍ରଭାବ ନାହିଁ ବୋଲି କହୁଥିଲେ ସେମାନେ ସମ୍ବିଧାନର ରୂପରେଖ ଆଙ୍କିବାରେ ସାମାଜିକ ସମସ୍ୟାର ଗୁରୁତ୍ୱକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ସାମାଜିକ ସଂସ୍କାର ପ୍ରତି ରହିଥିବା ଉଦାସୀନତା ବା ଏହାକୁ ଗରୁତ୍ୱ ନ ଦେବାଦ୍ୱାରା ଏହାର ପ୍ରତିକ୍ରିୟା ସ୍ୱରୂପ କମ୍ୟୁନାଲ ଆୱାଡ଼ର ଯେ ଉଦ୍ଭବ ହୋଇଛି ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ପରୋକ୍ଷରେ ଏହାଦ୍ୱାରା ସମାଜ ସଂସ୍କାର ଦଳର ବିଜୟ ହୋଇଛି । ଯଦିବା ସେମାନେ ସେତେବେଳେ ସମର୍ଥନ ଲାଭ କରି ନଥିଲେ ତେବେ ସେମାନେ ସାମାଜିକ ସଂସ୍କାରର ଗୁରୁତ୍ୱକୁ ଦର୍ଶାଇବା ଦ୍ୱାରା ଠିକ୍ କରିଥିଲେ । ହୁଏତ ଏହିମତକୁ ଅନେକ ଗ୍ରହଣ କରିବେ ନାହିଁ । ସଂପ୍ରତି ଏହି ବିଚାର ରହିଛି ଓ ଏହା ବିଶ୍ୱାସ କରିବା ସୁଖପ୍ରଦ ଯେ କମ୍ୟୁନାଲ ଆୱାଡ ଏକ ଅସ୍ୱାଭାବିକ ଘଟଣା ଯାହାକି ସଂଖ୍ୟାଲଘୁ ଶ୍ରେଣୀ ଓ ପ୍ରଶାସନ ମଧ୍ୟରେ ହୋଇଥିବା ଏକ ଅସାଧୁ ବୁଝାମଣାରୁ ଉଦ୍ଭବ ହୋଇଛି । ମୁଁ କମ୍ୟୁନାଲ ଆୱାଡ଼ରେ ବିଶ୍ୱାସ କରୁନାହିଁ ବା ମୋର ମତ ପ୍ରତିଷ୍ଠା କରିବା କ୍ଷେତ୍ରରେ ତାହାକୁ ଆଧାର ଭାବରେ ନେଉନାହିଁ । ଏହି ପରିପ୍ରେକ୍ଷୀରେ ଆୟରଲାଣ୍ଡର କେତେକ ଘଟଣାକୁ ମୁଁ ଉଲ୍ଲେଖ କରୁଛି । ଆଇରିସ୍ ହୋମରୁଲର ଇତିହାସରୁ କ'ଣ ବୁଝାପଡୁଛି ? ଅଲଷ୍ଟରର ପ୍ରତିନିଧିମାନଙ୍କ ସହିତ ଦକ୍ଷିଣ ଆୟରଲାଣ୍ଡର ପ୍ରତିନିଧିମାନଙ୍କର ଯେଉଁ ବୁଝାମଣା ହୋଇଥିଲା ସେଥିରେ ଦକ୍ଷିଣ ଆୟରଲାଣ୍ଡର ପ୍ରତିନିଧି ମି. ରେଡ଼ମଣ୍ଡ ସମଗ୍ର ଆୟରଲାଣ୍ଡର ସାମ୍ବିଧାନିକ ନିୟମ ଭିତରକୁ ଅଲଷ୍ଟରବାସୀଙ୍କୁ ଆଣିବା ପାଇଁ ଅଲଷ୍ଟର ପ୍ରତିନିଧିମାନଙ୍କୁ କହିଥିଲେ,

"ଆପଣମାନେ ଯେ କୌଣସି ରାଜନୈତିକ ସୁରକ୍ଷା ଚାହିଁବେ ତାହା ଆପଣମାନଙ୍କୁ ଦିଆଯାଇପାରିବ ।" ଏଥିରେ ଅଲଷ୍ଟରର ପ୍ରତିନିଧିମାନେ ଉତ୍ତର ଦେଲେ, "ଆପଣଙ୍କର ସୁରକ୍ଷାକୁ ଧିକ୍ ! ଆମେ କେବେହେଲେ ବି କୌଣସି ସର୍ତ୍ତରେ ଆପଣମାନଙ୍କ ଦ୍ୱାରା ଶାସିତ ହେବୁନାହିଁ ।" ଭାରତବର୍ଷରେ ଯେଉଁମାନେ ସଂଖ୍ୟାଲଘୁ ଶ୍ରେଣୀକୁ ଦୋଷ ଦେଉଛନ୍ତି ସେମାନେ ଏହା ବୁଝିବା ଦରକାର ଯେ ଅଲଷ୍ଟରବାସୀମାନେ ଯେଉଁ ଭୂମିକା ନେଇଥିଲେ ଯଦି ଭାରତରେ ସଂଖ୍ୟାଲଘୁମାନେ ସେହି ପ୍ରକାର ଭୂମିକା ନେଇଥାନ୍ତେ ତେବେ ସଂଖ୍ୟାଗରିଷ୍ଠ ଜନଗଣଙ୍କର ଆଶା ଆକାଂକ୍ଷା କ'ଣ ହୋଇଥାନ୍ତା ! ଆଇରିସ୍ ହୋମ ରୁଲ କ୍ଷେତ୍ରରେ ଅଲଷ୍ଟରର ପ୍ରତିନିଧିମାନେ ଯେଉଁ ଭୂମିକା ନେଲେ ଭାରତବର୍ଷରେ ସେପରି ହୋଇନାହିଁ । ବରଂ ସଂଖ୍ୟାଲଘୁମାନେ ସଂଖ୍ୟାଗରିଷ୍ଠ ଲୋକଙ୍କଦ୍ୱାରା କେତେକ ସୁରକ୍ଷା ବିନିମୟରେ ଶାସିତ ହେବାକୁ ସମ୍ମତ ହୋଇଛନ୍ତି । କିନ୍ତୁ ଏହା ଗୋଟିଏ ଘଟଣା ମାତ୍ର । ପ୍ରଶ୍ନ ହେଉଛି ଅଲଷ୍ଟରର ପ୍ରତିନିଧିମାନେ ଏପରି ଭୂମିକା ନେଲେ କାହିଁକି । ଏହାର ଏକମାତ୍ର ଉତ୍ତର ହେଉଛି ଅଲଷ୍ଟର ଓ ଦକ୍ଷିଣ ଆୟରଲାଣ୍ଡ ମଧ୍ୟରେ ଏକ ଗୁରୁତର ସାମାଜିକ ସମସ୍ୟା ରହିଥିଲା । କ୍ୟାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟମାନଙ୍କ ମଧ୍ୟରେ ଜାତିଗତ ସମସ୍ୟା ଜନିତ ବିଭେଦ ଥିଲା । ତା'ର ପରିଣାମ ସ୍ୱରୂପ ଏହି ସ୍ଥିତି ଉତ୍ପନ୍ନ ହୋଇଥିଲା । ଆୟରଲାଣ୍ଡରେ ପ୍ରବର୍ତ୍ତିତ ହୋଇଥିବା ହୋମରୁଲକୁ ଅଲଷ୍ଟର ବାସୀମାନେ ରୋମ ରୁଲ ବୋଲି ଅଭିହିତ କରିଥିଲେ । ମୂଳକଥା ହେଉଛି କ୍ୟାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟମାନଙ୍କ ମଧ୍ୟରେ ଥିବା ଜାତିଗତ ବିଦ୍ୱେଷ ଏକ ରାଜନୈତିକ ସମାଧାନ ପାଇଁ ପ୍ରତିବନ୍ଧକ ହୋଇଥିଲା । ଅବଶ୍ୟ ଏହାର ଯଥାର୍ଥତାକୁ ସନ୍ଦେହ କରାଯାଇପାରେ । କାରଣ ଏ କ୍ଷେତ୍ରରେ ସାମ୍ରାଜ୍ୟବାଦୀ ଶକ୍ତିର ହାତ ରହିଥିଲା ବୋଲି କୁହାଯାଇପାରେ । କିନ୍ତୁ ମୁଁ ଦେଇଥିବା ଉଦାହରଣ ସମ୍ପୂର୍ଣ୍ଣ ନୁହେଁ । ରୋମର ଇତିହାସରୁ ମଧ୍ୟ ଦୃଷ୍ଟାନ୍ତ ଦିଆଯାଇପାରେ । ସେଠାରେ କୌଣସି ବାହ୍ୟ ବା ମନ୍ଦ ଶକ୍ତିର ହାତ ଥିବା କଥାକୁ କେହି ଦର୍ଶାଇପାରିବ ନାହିଁ । ଯେଉଁମାନେ ରୋମର ଇତିହାସକୁ ଅଧ୍ୟୟନ କରିଛନ୍ତି ସେମାନେ ନିଶ୍ଚିତ ଭାବରେ କହିପାରିବେ ଯେ ରୋମରେ ପ୍ରବର୍ତ୍ତିତ ହୋଇଥିବା ଗଣତାନ୍ତ୍ରିକ ସମ୍ବିଧାନ ସହିତ ଆମ ଦେଶରେ ପ୍ରବର୍ତ୍ତିତ ଥିବା କମ୍ୟୁନାଲ ଆୱାଡ଼ର ଅନେକ ବଳିଷ୍ଠ ସାମଞ୍ଜସ୍ୟ ରହିଛି । ରୋମରେ ଯେତେବେଳେ ରାଜତନ୍ତ୍ରର ବିଲୋପ ହେଲା ରାଜାଙ୍କର ସର୍ବୋଚ୍ଚ ଶକ୍ତି, ଯାହାକୁ ସେଠାରେ

'ଇମ୍ପେରିୟମ' କୁହାଯାଏ, ତାହା ରାଷ୍ଟ୍ର ପତିନିଧି ବା କନ୍‌ସଲ ଓ ଧର୍ମାଧ୍ୟକ୍ଷମାନଙ୍କ ମଧ୍ୟରେ ବାଣ୍ଟିଦିଆଗଲା । ପ୍ରତିନିଧିଙ୍କ ହାତରେ ରାଜାଙ୍କର ନିରପେକ୍ଷ କ୍ଷମତା ନ୍ୟସ୍ତ ହେବା ବେଳେ ଧର୍ମଗୁରୁଙ୍କୁ ରାଜାଙ୍କର ଧର୍ମୀୟ କ୍ଷମତା ପ୍ରଦାନ କରାଗଲା । ରିପବ୍ଲିକାନ ସମ୍ବିଧାନରେ ରାଷ୍ଟ୍ରର ପ୍ରତିନିଧି କ୍ଷେତ୍ରରେ ଦୁଇଟି ବିଭାଗ ଯଥା, ଆଭିଜାତ୍ୟ ବର୍ଗ ଓ ସାଧାରଣ ବର୍ଗ ରହିଲା । ଧର୍ମାଧ୍ୟକ୍ଷଙ୍କ ହାତରେ ରହିଥିବା ସାମ୍ବିଧାନିକ ଧର୍ମୀୟ କ୍ଷମତାକୁ ଉପଭୋଗ କରୁଥିବା ପୂଜକ ଶ୍ରେଣୀଙ୍କ ମଧ୍ୟରେ ଶ୍ରେଣୀ ବିଭାଜନ କରାଯାଇ ଏକ ଆଭିଜାତ୍ୟ ଶ୍ରେଣୀ ଓ ଏକ ସାଧାରଣ ଶ୍ରେଣୀ କରାଗଲା । ରୋମର ଗଣତାନ୍ତ୍ରିକ ସମ୍ବିଧାନରେ ରହିଥିବା ଏହି ବ୍ୟବସ୍ଥା, ଯାହାକି କମ୍ୟୁନାଲ ଆୱାର୍ଡ଼ ସହିତ ସମ୍ବନ୍ଧିତ, ଭିତରେ କାହିଁକି ଏପରି ସମନ୍ୱୟ ରଖାଗଲା ? ତା'ର ଉତ୍ତରରେ ଏହା କୁହାଯାଇପାରିବ ଯେ ଗଣତାନ୍ତ୍ରିକ ରୋମର ସମ୍ବିଧାନରେ ଏପରି ବ୍ୟବସ୍ଥା ରହିବା ପଶ୍ଚାତରେ ଆଭିଜାତ୍ୟ ଶ୍ରେଣୀ ଓ ସାଧାରଣ ବର୍ଗ ମଧ୍ୟରେ ଥିବା ସାମାଜିକ ବିଭେଦ ହିଁ ମୂଳ କାରଣ ଅଟେ । ସାଧାରଣ ଶ୍ରେଣୀ ଓ ସାଧାରଣ ବର୍ଗ ମଧ୍ୟରେ ଥିବା ସାମାଜିକ ବିଭେଦ ହିଁ ମୂଳ କାରଣ ଅଟେ । ସାଧାରଣ ଶ୍ରେଣୀ ଓ ଆଭିଜାତ୍ୟ ଶ୍ରେଣୀଙ୍କ ମଧ୍ୟରେ ରହିଥିବା ସାମାଜିକ ପାର୍ଥକ୍ୟ ଯୋଗୁଁ ଉଭୟଙ୍କ ଭିତରେ କ୍ଷମତାକୁ ବାଣ୍ଟି ଦିଆଗଲା । ଉପସଂହାରରେ ଏହା କହିବା ଠିକ୍ ହେବ ଯେ ରାଜନୈତିକ ସଂସ୍କାରକମାନେ ଯେ କୌଣସି ଭୂମିକା ନେଲେ ବି ଗୋଟିଏ ଦେଶର ସମ୍ବିଧାନ ପ୍ରସ୍ତୁତ କରିବାରେ ଦେଶରେ ପ୍ରଚଳିତ ଥିବା ସାମାଜିକ ବ୍ୟବସ୍ଥା ପ୍ରତି ଆଖିବୁଜି ଦେଇପାରିବେ ନାହିଁ ।

ରାଜନୈତିକ ସମ୍ବିଧାନ କ୍ଷେତ୍ରରେ ସାମାଜିକ ଓ ଧର୍ମୀୟ ସମସ୍ୟାକୁ ଯେ ବାଦ୍ ଦେଇହେବ ନାହିଁ ମୋର ଏହି ଉକ୍ତି ଏକ ବିଶେଷ ବକ୍ତବ୍ୟ ବୋଲି ପ୍ରତୀତ ହୋଇପାରେ । କିନ୍ତୁ ଗୋଟିକର ଅନ୍ୟ ଉପରେ ପ୍ରଭାବକୁ ଅସ୍ୱୀକାର କରିହେବ ନାହିଁ । ବରଂ ଇତିହାସରୁ ଏପରି ବହୁ ଦୃଷ୍ଟାନ୍ତ ମିଳିବ ଯେ ସାଧାରଣ ଭାବରେ ରାଜନୈତିକ ବିପ୍ଳବ ପଶ୍ଚାତରେ ସାମାଜିକ ଧର୍ମୀୟ ବିପ୍ଳବ ରହିଥାଏ । ଲୁଥର ଯେଉଁ ଧର୍ମୀୟ ସଂସ୍କାର ଆରମ୍ଭ କରିଥିଲେ ତାହା ଅଗ୍ରଭାଗରେ ରହି ୟୁରୋପୀୟ ଜନଗଣଙ୍କ ମଧ୍ୟରେ ରାଜନୈତିକ ମୁକ୍ତିର ବାର୍ତ୍ତା ପ୍ରଚାର କରିଥିଲା । ଇଂଲଣ୍ଡରେ ଆରମ୍ଭ ହୋଇଥିବା ପିଉରିଟାନିଜିମ୍ ବା ନୀତିବାଦ ରାଜନୈତିକ ମୁକ୍ତି ପାଇଁ ପଥ ପରିଷ୍କାର କରିଥିଲା । ଯାହା ପ୍ରଥମେ ଏକ ଧର୍ମୀୟ ଆନ୍ଦୋଳନ ଥିଲା ତାହା ପରେ ଏକ ନୂତନ ବିଶ୍ୱର ଆଦର୍ଶ ହେଲା । ଏପରିକି ଶେଷରେ ଏହା ଆମେରିକାର

ସ୍ୱାଧୀନତା ଆନ୍ଦୋଳନକୁ ସଫଳ କରାଇଲା । ଏହା ମଧ୍ୟ ମୁସଲମାନ ସାମ୍ରାଜ୍ୟ ବିଷୟରେ କୁହାଯାଇପାରେ । ପ୍ରଫେଟ୍ ମହମ୍ମଦଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଧର୍ମୀୟ ବିପ୍ଳବ ଯୋଗୁଁ ଆରବୀୟମାନେ ଏକ ରାଜନୈତିକ ଶକ୍ତିରେ ପରିଣତ ହେଲେ । ଭାରତର ଇତିହାସ ବି ଏହି ସିଦ୍ଧାନ୍ତକୁ ଗ୍ରହଣ କରିପାରିବ । ଚନ୍ଦ୍ରଗୁପ୍ତଙ୍କର ରାଜନୈତିକ ପୁନର୍ଗଠନ କ୍ଷେତ୍ରରେ ବୁଦ୍ଧଙ୍କର ଧର୍ମୀୟ ଓ ସାମାଜିକ କ୍ରାନ୍ତିର ପ୍ରଭାବ ରହିଥିଲା । ଶିବାଜୀ ଯେଉଁ ରାଜନୈତିକ ବିପ୍ଳବର ସୂତ୍ରପାତ କରିଥିଲେ ତାହା ପଶ୍ଚାତରେ ମହାରାଷ୍ଟ୍ରର କେତେକ ସାଧୁଙ୍କର ଧର୍ମୀୟ ଓ ସାମାଜିକ ସଂସ୍କାର ପ୍ରେରଣା ଯୋଗାଇ ଥିଲା । ଶିଖମାନଙ୍କର ରାଜନୈତିକ ପରିବର୍ତ୍ତନ ଗୁରୁନାନକଙ୍କ ଦ୍ୱାରା ହୋଇଥିବା ଧର୍ମୀୟ ଓ ସାମାଜିକ ପରିବର୍ତ୍ତନ ଯୋଗୁଁ ସମ୍ଭବ ହୋଇଥିଲା । ଏହିପରି ଅନେକ ଉଦାହରଣ ଦିଆଯାଇପାରେ ଓ ଏହି ଉଦାହରଣକୁ ସୁଦୀର୍ଘ କରିବାର ଆବଶ୍ୟକତା ନାହିଁ । ମୋଟ ଉପରେ କହିବାକୁ ଗଲେ ଜନଗଣଙ୍କର ରାଜନୈତିକ ସମ୍ପ୍ରସାରଣ ବା ବିକଳ୍ପ ପଶ୍ଚାତରେ ମୁକ୍ତ ମନ ଓ ଉନ୍ନତ ଦୃଷ୍ଟି ରହିବା ଦରକାର । ମାନସିକତାରେ ପରିବର୍ତ୍ତନ ଦ୍ୱାରା ରାଜନୈତିକ ପୁନର୍ବିନ୍ୟାସ ସମ୍ଭବ ହୋଇଥାଏ ।

(୩)

## ସମାଜବାଦ ଓ ସମାଜ ସଂସ୍କାର

ବର୍ତ୍ତମାନ ସମାଜବାଦୀମାନଙ୍କ ସମ୍ପର୍କରେ ଆଲୋଚନା କରାଯାଉ । ସେମାନେ ସାମାଜିକ ବ୍ୟବସ୍ଥାରୁ ଉତ୍ପନ୍ନ ସମସ୍ୟାକୁ ଅସ୍ୱୀକାର କରିପାରିବେ କି ? ଭାରତରେ ସମାଜବାଦୀମାନେ ପାଶ୍ଚାତ୍ୟ ସମାଜବାଦୀମାନଙ୍କ ପରି ଭାରତ ଇତିହାସର ଘଟଣା ପ୍ରବାହକୁ ଅର୍ଥନୈତିକ ବ୍ୟାଖ୍ୟା ମାଧ୍ୟମରେ ବୁଝାଇଥାନ୍ତି । ସେମାନଙ୍କ ମତରେ ମଣିଷର ସାମାଜିକ ଜୀବନ, କାର୍ଯ୍ୟକଳାପ, ଆଶା ଆକାଂକ୍ଷା ଇତ୍ୟାଦି ଅର୍ଥନୈତିକ ବ୍ୟବସ୍ଥାର ପରିଣାମ ବା ଏହାଦ୍ୱାରା ନିୟନ୍ତ୍ରିତ । ପୁଞ୍ଜି ହେଉଛି ସମସ୍ତ କ୍ଷମତାର କେନ୍ଦ୍ର । ସୁତରାଂ ସେମାନଙ୍କ ମତରେ ରାଜନୈତିକ ଓ ସାମାଜିକ ସଂସ୍କାରଗୁଡ଼ିକ କେବଳ ଭ୍ରମ ମାତ୍ର ଏବଂ ଅର୍ଥନୈତିକ ସଂସ୍କାର ଜନିତ ସମବଣ୍ଟନ ଓ ସମ୍ପତ୍ତିଗତ ଅଧିକାର ଯେ କୌଣସି ସଂସ୍କାର ଅପେକ୍ଷା ମହତ୍ତ୍ୱପୂର୍ଣ୍ଣ । ସମାଜବାଦୀମାନଙ୍କର ଅର୍ଥନୈତିକ ସଂସ୍କାର ଉପରେ ଏହି ପ୍ରାଧାନ୍ୟର ସିଦ୍ଧାନ୍ତଗୁଡ଼ିକୁ ବିବାଦୀୟ ବୋଲି ନିଆଯାଇପାରେ । ଜଣେ ଯୁକ୍ତି କରିପାରେ ଯେ ମଣିଷର ଅର୍ଥନୈତିକ ଉଦ୍ଦେଶ୍ୟ ତା ଜୀବନର ଏକମାତ୍ର ଉଦ୍ଦେଶ୍ୟ

ନୁହେଁ । ସମାଜବିଜ୍ଞାନର କୌଣସି ଛାତ୍ର ଅର୍ଥନୈତିକ କ୍ଷମତାକୁ ସମସ୍ତ କ୍ଷମତାର ମୂଳ ବୋଲି ଗ୍ରହଣ କରିବେ ନାହିଁ । ଜଣେ ବ୍ୟକ୍ତିର ସାମାଜିକ ସ୍ଥିତି ତା'ର କ୍ଷମତା ଓ ଆଧିପତ୍ୟ ପାଇଁ ଏପରିକି ନିର୍ଣ୍ଣାୟକ ହୋଇପାରେ । ଏହାର ପ୍ରମାଣ ସ୍ୱରୂପ ଏହା କୁହାଯାଇପାରେ ଯେ ମହାତ୍ମାମାନେ ସାଧାରଣ ଲୋକମାନଙ୍କ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରିପାରନ୍ତି । ଭାରତରେ କପର୍ଦ୍ଦକଶୂନ୍ୟ ସାଧୁ ଓ ଫକୀରମାନଙ୍କୁ କାହିଁକି ଅଗଣିତ ଲୋକମାନେ ମାନନ୍ତି ବା ସମ୍ମାନ କରନ୍ତି ? ଅଗଣିତ ଗରିବ ଲୋକ ନିଜର ସଞ୍ଚିତ ବସ୍ତୁ ବା ଭୂଷଣ ବିକି ବନାରସ ବା ମକ୍‌କା ଯିବାକୁ ଉଦ୍ୟମ କରନ୍ତି ! ଧର୍ମ ଯେ ବେଳକେ କ୍ଷମତାର କେନ୍ଦ୍ରବିନ୍ଦୁ ହୋଇଥାଏ ତାହା ଭାରତୀୟ ଇତିହାସ ପରିପ୍ରେକ୍ଷୀରେ ବୁଝାଯାଇ ପାରିବ । ରୋମ ସାଧାରଣତନ୍ତ୍ରରେ ସାଧାରଣ ଲୋକମାନେ କ୍ଷମତାରେ ଅଂଶୀଦାର ହେବାପାଇଁ ଅନେକ ସଂଗ୍ରାମ କରିଛନ୍ତି । ରୋମର ସାଧାରଣ ଶ୍ରେଣୀର ଲୋକମାନେ ସେମାନଙ୍କୁ ନେଇ ଗଠିତ ନିର୍ବାଚନ ମଣ୍ଡଳ ଦ୍ୱାରା ସେମାନଙ୍କର ନିର୍ବାଚିତ ପ୍ରତିନିଧି ଶାସନ ବ୍ୟବସ୍ଥାରେ ରହିବା ପାଇଁ ସଂଗ୍ରାମ କରିଛନ୍ତି । ଶାସନ କାର୍ଯ୍ୟରେ ଆଭିଜାତ୍ୟ ଶ୍ରେଣୀର ମନୋନୀତ ପ୍ରତିନିଧି ସେମାନଙ୍କ ପ୍ରତି ପାତର ଅନ୍ତର ନୀତି ପ୍ରୟୋଗ କରୁଥିବାରୁ ସାଧାରଣ ଲୋକମାନେ ନିଜର ଏକ ପ୍ରତିନିଧିଙ୍କୁ ପଠାଇବାକୁ କ୍ଷମତା ହାସଲ କରିଛନ୍ତି । ସାଧାରଣତନ୍ତ୍ର ରୋମର ସମ୍ବିଧାନରେ ଜଣେ ପ୍ରତିନିଧିଙ୍କର ଅନ୍ୟ ଜଣେ ପ୍ରତିନିଧିଙ୍କ କ୍ଷମତା ବିରୁଦ୍ଧରେ ଭିଟୋ ପ୍ରୟୋଗ କରିବାର ଅଧିକାର ଥିଲା । ସୁତରାଂ ସେଠାରେ ଆଭିଜାତ୍ୟ ବର୍ଗଙ୍କର ଆଧିପତ୍ୟ ବିରୁଦ୍ଧରେ ସାଧାରଣ ଶ୍ରେଣୀର ଏହା ଯେ ଏକ ବିଜୟ ଏହା କୁହାଯାଇପାରେ । କିନ୍ତୁ ପ୍ରକୃତରେ ସାଧାରଣ ଶ୍ରେଣୀର ପ୍ରତିନିଧି ମନୋନୟନ କ'ଣ ଏକ ବିଜୟ ? ଏହାର ଉତ୍ତର ହେଉଛି ନକାରାତ୍ମକ । ସାଧାରଣ ବର୍ଗର ଲୋକମାନେ କେବେ ହେଲେ ଏପରି ଜଣେ ଦକ୍ଷ ପ୍ରତିନିଧି ବାଛିପାରୁ ନଥିଲେ ଯେ କି ଆଭିଜାତ୍ୟ ଶ୍ରେଣୀର ପ୍ରତିନିଧିଙ୍କ ପାଖରେ ନିଜ ଶ୍ରେଣୀ ପାଇଁ ସୁବିଧା ସୁଯୋଗ ହାସଲ କରିପାରିବ । ସାଧାରଣ ବର୍ଗର ଲୋକମାନେ ଜଣେ ଦକ୍ଷ ପ୍ରତିନିଧି ବାଛି ପାରୁଥାନ୍ତେ, ଯେହେତୁ ସେମାନେ ଗୋଟିଏ ନିର୍ବାଚନ ମଣ୍ଡଳୀ ଗଠନ କରିପାରୁଥିଲେ । ତେବେ ପ୍ରଶ୍ନ ହେଉଛି ସେମାନେ କାହିଁକି ଜଣେ ଶକ୍ତିଶାଳୀ ପ୍ରତିନିଧିଙ୍କୁ ପଠାଇ ପାରୁ ନଥିଲେ ? ସେଠାରେ ଲୋକମାନଙ୍କର ମାନସିକତାରେ ଧର୍ମର ଯେଉଁ ଗୁରୁତ୍ୱ ରହିଥିଲା ତାହା ଯୋଗୁଁ ଏହା ସମ୍ଭବ ହେଉ

ନଥିଲା । ସମଗ୍ର ରୋମ ଜନଗଣଙ୍କ ଭିତରେ ଏହି ବିଶ୍ୱାସ ବଦ୍ଧମୂଳ ଥିଲା ଯେ କୌଣସି ପ୍ରତିନିଧି ଦେବୀ ଡେଲଫିଙ୍କ ଐଶ୍ୱରୀୟ ସ୍ୱୀକୃତି ନ ପାଇଲେ ସେ ଜନଗଣଙ୍କର ପ୍ରତିନିଧି ହୋଇ କାର୍ଯ୍ୟକରି ପାରିବେ ନାହିଁ । ଡେଲ୍‌ଫି ଦେବୀଙ୍କର ମନ୍ଦିରରେ ସମସ୍ତ ପୂଜକ ଆଭିଜାତ୍ୟ ବର୍ଗର ଥିଲେ । ସୁତରାଂ ଯେତେବେଳେ ସାଧାରଣ ଶ୍ରେଣୀର ଲୋକମାନେ ସେମାନଙ୍କ ଭିତରୁ ଆଭିଜାତ୍ୟ ଶ୍ରେଣୀର ଲୋକମାନଙ୍କ ତିକ୍ତତା ଥିବା କୌଣସି ଦକ୍ଷ ବ୍ୟକ୍ତିଙ୍କୁ ପ୍ରତିନିଧି ଭାବରେ ବାଛୁଥିଲେ, ଯାହାଙ୍କୁ ସାଂପ୍ରତିକ ଭାରତୀୟ ଅର୍ଥରେ ସାଂପ୍ରଦାୟିକ କୁହାଯାଇ ପାରିବ, ତାଙ୍କୁ ଐଶ୍ୱରୀୟ ସ୍ୱୀକୃତି ମିଳୁ ନଥିଲା । ତାଙ୍କ ସପକ୍ଷରେ ଦେବୀ ଡେଲ୍‌ଫିଙ୍କର ଯେ ଆଶୀର୍ବାଦ ନାହିଁ ପୂଜକ ଶ୍ରେଣୀଙ୍କର ଏହି ମତକୁ ଆପ୍ତବାଣୀ ଭାବରେ ସମସ୍ତେ ଗ୍ରହଣ କରି ନେଉଥିଲେ । ସାଧାରଣ ବର୍ଗର ଲୋକମାନଙ୍କୁ ସେମାନଙ୍କର ଅଧିକାରରୁ ଏହିପରି ବଞ୍ଚିତ କରାଯାଉଥିଲା । କିନ୍ତୁ ଏଠାରେ ଏହା ଉଲ୍ଲେଖ କରିବା ଆବଶ୍ୟକ ଯେ, ସାଧାରଣ ଶ୍ରେଣୀର ଲୋକମାନେ ଏପରି ପ୍ରତାରିତ ହେବାକୁ ଅନ୍ୟାୟ ମନେ କରୁ ନଥିଲେ । କାରଣ ଆଭିଜାତ୍ୟ ଶ୍ରେଣୀର ଲୋକମାନଙ୍କ ପରି ସେମାନେ ମଧ୍ୟ ଏହି ଦୃଷ୍ଟିକୋଣ ପୋଷଣ କରୁଥିଲେ ଯେ ଦେବତାଙ୍କର ଆଶୀର୍ବାଦ ନପାଇ କେବଳ ଲୋକମାନଙ୍କ ଦ୍ୱାରା ମନୋନୀତ ହେଲେ ଜଣେ ନିଜର କର୍ତ୍ତବ୍ୟ ସମ୍ପାଦନ ପାଇଁ ପଦବୀରେ ରହିବାକୁ ଯୋଗ୍ୟ ନୁହେଁ । 'ସେମାନଙ୍କ ଦ୍ୱାରା ମନୋନୀତ ବ୍ୟକ୍ତି ସେମାନଙ୍କର ପ୍ରତିନିଧି ହୋଇପାରିବେ ଏଥିପାଇଁ କୌଣସି ଦେବୀଙ୍କ ସ୍ୱୀକୃତିର ଆବଶ୍ୟକତା ନାହିଁ' ବୋଲି ଯଦି ସାଧାରଣ ଶ୍ରେଣୀର ଲୋକମାନେ ଗ୍ରହଣ କରୁଥାନ୍ତେ, ତେବେ ସେମାନଙ୍କର ରାଜନୈତିକ ଅଧିକାରକୁ ସେମାନେ ଯଥାର୍ଥରେ ସାବ୍ୟସ୍ତ କରି ପାରିଥାନ୍ତେ । କିନ୍ତୁ ଏହା ସମ୍ଭବ ନଥିଲା । ଫଳରେ ସେମାନେ ଏପରି ଜଣେ ପ୍ରତିନିଧିଙ୍କୁ ବାଛୁଥିଲେ ଯେକି ଦେବୀଙ୍କ ଦ୍ୱାରା ଗ୍ରହଣୀୟ ହୋଇପାରିବ । ଯାହାର ଯଥାର୍ଥ ତାତ୍ପର୍ଯ୍ୟ ହେଉଛି ସେ ଆଭିଜାତ୍ୟ ଶ୍ରେଣୀଦ୍ୱାରା ଗ୍ରହଣଯୋଗ୍ୟ ହେଉଥିବ । ନିଜର ଧର୍ମ ବିଶ୍ୱାସକୁ ପରିହାର କରିବା ପରିବର୍ତ୍ତେ ସେମାନେ ନିଜର ଅଧିକାରକୁ, ଯାହାପାଇଁ ସେମାନେ ଏତେ ସଂଗ୍ରାମ କରିଥିଲେ, ପରିତ୍ୟାଗ କରୁଥିଲେ । ଏଥିରୁ ଏହା ବୁଝାପଡୁନାହିଁ କି, ଧର୍ମ କ୍ଷମତାର ସୂତ୍ରଧର ହୋଇପାରିବ ? ଅର୍ଥାତ୍, ଅର୍ଥ ଯେପରି କ୍ଷମତା ପାଇଁ ବିନିଯୋଗ ହୋଇପାରେ, ଧର୍ମ ମଧ୍ୟ ସେହିପରି ବିନିଯୋଗ ହୋଇପାରିବ । ସମାଜବାଦୀମାନେ ନିଜ ବିଚାରରେ ଏକ

ତ୍ରୁଟିପୂର୍ଣ୍ଣ ସିଦ୍ଧାନ୍ତକୁ ଗ୍ରହଣ କରିଥାନ୍ତି । ପାଶ୍ଚାତ୍ୟ ସମାଜରେ ପୁଞ୍ଜି ଯେପରି କ୍ଷମତାର ଆଧାର ହୋଇଛି, ସେମାନେ ଭାରତ ପରିପ୍ରେକ୍ଷୀରେ ତାହା ମଧ୍ୟ ସତ୍ୟବୋଲି ଭାବନ୍ତି । 'କ୍ଷମତା ଓ ଆଧିପତ୍ୟ ପାଇଁ ଧର୍ମ, ସାମାଜିକ ପ୍ରତିଷ୍ଠା ଓ ସମ୍ପତ୍ତି ଆଧାର ହୋଇଥାଏ । ଧର୍ମ, ସାମାଜିକ ପ୍ରତିଷ୍ଠା ବା ପୁଞ୍ଜି ଯେ କୌଣସିଟି ସାହାଯ୍ୟରେ ଅନ୍ୟମାନଙ୍କର ସ୍ୱାଧୀନତାକୁ ସଂକୁଚିତ କରାଯାଇପାରେ । ଏକ ସମୟରେ ଗୋଟିକର ମହତ୍ତ୍ୱ ଅନ୍ୟ ତୁଳନାରେ ଅଧିକ ହେବାବେଳେ ଅନ୍ୟ ସମୟରେ ଅନ୍ୟ ଗୋଟିକର ମହତ୍ତ୍ୱ ହୁଏତ ଅଧିକ ହୋଇଥାଏ । ସେମାନଙ୍କ ମଧ୍ୟରେ ଏତିକି ମାତ୍ର ପାର୍ଥକ୍ୟ ପରିଲକ୍ଷିତ ହୁଏ । ଯଦି ସ୍ୱାଧୀନତାକୁ ଲକ୍ଷ୍ୟ ଭାବରେ ନିଆଯାଏ ଓ ସ୍ୱାଧୀନତାର ଅର୍ଥ ଜଣଙ୍କର ଅନ୍ୟ ଉପରେ ପ୍ରଭୁତ୍ୱର ବିନାଶକୁ ବୁଝାଏ, ତେବେ ଅର୍ଥନୈତିକ ସଂସ୍କାର ଯେ ସାମାଜିକ ପରିବର୍ତ୍ତନର ଏକମାତ୍ର ଲକ୍ଷ୍ୟ ଏହା କହିବା ଠିକ୍ ନୁହେଁ । ଯଦି କ୍ଷମତା ଓ ପ୍ରଭୁତ୍ୱ ଦ୍ୱାରା ଏକ ସମାଜରେ କୌଣସି ସମୟରେ ଅନ୍ୟର ସ୍ୱାଧୀନତାକୁ ସଙ୍କୁଚିତ କରାଯାଏ ଓ ଏହି ପ୍ରଭୁତ୍ୱ ସାମାଜିକ ଏବଂ ଧର୍ମଗତ କାରଣରୁ ସୃଷ୍ଟି ହେଉଥାଏ, ତେବେ ସେ କ୍ଷେତ୍ରରେ ସାମାଜିକ ଓ ଧର୍ମୀୟ ସଂସ୍କାରକୁ ସଂସ୍କାର ପ୍ରକ୍ରିୟାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଦେବା ଯଥାର୍ଥ ହେବ ।

ଫଳରେ ଭାରତରେ ସମାଜବାଦୀମାନେ ଐତିହାସିକ ବିକାଶଧାରାର ଯେଉଁ ଅର୍ଥନୈତିକ ବ୍ୟାଖ୍ୟା ଦିଅନ୍ତି ତାହାକୁ ସମାଲୋଚନା କରାଯାଇ ପାରିବ । ସୁତରାଂ ଇତିହାସର କେବଳ ଅର୍ଥନୈତିକ ବ୍ୟାଖ୍ୟା ଯଥାର୍ଥ ମନେହୁଏ ନାହିଁ । ସମ୍ପତ୍ତି କ୍ଷେତ୍ରରେ ସମତା ରହିଲେ ସମାଜର ସବୁ ସମସ୍ୟା ସମାଧାନ ହୋଇଯିବ ଏବଂ ଏହି ଆର୍ଥିକ ସମତା ଆଣିବା ସାମାଜିକ ସଂସ୍କାରର ଯେ ମୂଳ ଲକ୍ଷ୍ୟ ଏହା କହିବା ସମୀଚୀନ ନୁହେଁ । ମୁଁ ଏଠାରେ ସମାଜବାଦୀମାନଙ୍କୁ ପଚାରିବାକୁ ଚାହେଁ ସାମାଜିକ ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ ନ ଆଣି ଅର୍ଥନୈତିକ ସଂସ୍କାର ଅଣାଯାଇ ପାରିବ କି ? ଭାରତର ସମାଜବାଦୀମାନେ ଏହି ପ୍ରଶ୍ନକୁ ଗୁରୁତ୍ୱର ସହ ବିଚାର କରୁଥିବା ମନେହୁଏ ନାହିଁ । ଏହା କରିବାବେଳେ ମୁଁ ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରୁନାହିଁ । ମୁଁ ଏଠାରେ ମୋର ଜଣେ ବନ୍ଧୁଙ୍କ ପାଖକୁ ଜଣେ ପ୍ରଖ୍ୟାତ ସମାଜବାଦୀ ଦେଇଥିବା ଏକ ପତ୍ରର କେତେକ ଅଂଶ ଉଦ୍ଧାର କରୁଛି । ସେ ଲେଖିଛନ୍ତି, "ଯେତେବେଳ ପର୍ଯ୍ୟନ୍ତ ଗୋଟିଏ ଶ୍ରେଣୀର ଅନ୍ୟ ଶ୍ରେଣୀ ଉପରେ ଏପରି ଅତ୍ୟାଚାର ଚାଲିଥିବ ବା ଗୋଟିଏ ଶ୍ରେଣୀ

ଅନ୍ୟକୁ ଦମନ କରି ରଖିଥିବ ସେ ପର୍ଯ୍ୟନ୍ତ ଭାରତରେ ଯେ ଏକ ମୁକ୍ତ ସମାଜ ଗଠନ ହୋଇପାରିବ ଏହା ମୁଁ ବିଶ୍ୱାସ କରୁନାହିଁ । ଜଣେ ସମାଜବାଦୀ ଭାବରେ ସମାଜବାଦର ସିଦ୍ଧାନ୍ତକୁ ଗ୍ରହଣ କରି ମୁଁ ବିଶ୍ୱାସ କରୁଛି ଯେ ସମସ୍ତ ଶ୍ରେଣୀମାନଙ୍କ ଭିତରେ ଓ ସେମାନଙ୍କ ସମ୍ବନ୍ଧ କ୍ଷେତ୍ରରେ ପୂର୍ଣ୍ଣ ସମତା ରହିବା ଆବଶ୍ୟକ । ମୋର ବିଶ୍ୱାସ ଅନ୍ୟାନ୍ୟ ଓ ଏହି ସମସ୍ୟାକୁ ସମାଧାନ କରିବା କ୍ଷେତ୍ରରେ ସମାଜବାଦ ହେଉଛି ଏକମାତ୍ର ସଠିକ୍ ପନ୍ଥା ।" ମୁଁ ଏ କ୍ଷେତ୍ରରେ ପ୍ରଶ୍ନ କରିବାକୁ ଚାହେଁ ଯେ "ସମାଜବାଦୀମାନେ ସମସ୍ତ ଶ୍ରେଣୀ ମଧ୍ୟରେ ଓ ସାମାଜିକ ସମ୍ପର୍କ କ୍ଷେତ୍ରରେ ପୂର୍ଣ୍ଣ ସମତା ରହିବା ଦରକାର ବୋଲି କହିବା କ'ଣ ଯଥେଷ୍ଟ କି ?" ଏହା ଯଥେଷ୍ଟ ବୋଲି କହିବା ଦ୍ୱାରା ସମାଜବାଦ ଯେ ଠିକ୍ ଭାବରେ ବୁଝାଯାଉଛି ତାହା ନୁହେଁ । ସମାଜବାଦକୁ ଯଦି ଏକ ସୁଦୂର ଆଦର୍ଶ ପରିବର୍ତ୍ତେ ଏକ ବ୍ୟାବହାରିକ ଲକ୍ଷ୍ୟ ଭାବରେ ନିଆଯିବ, ତେବେ ଜଣେ ସମାଜବାଦୀଙ୍କର ସମତାରେ ବିଶ୍ୱାସ ବଡ଼କଥା ନୁହେଁ । ଗୋଟିଏ ଶ୍ରେଣୀ ଅନ୍ୟ ଶ୍ରେଣୀ ଉପରେ ଅତ୍ୟାଚାର କରିବା ବା ଅନ୍ୟକୁ ଦମନ କରି ରଖିବା ପଶ୍ଚାତରେ ଯେଉଁ ବ୍ୟବସ୍ଥା ବା ନିୟମ ରହିଛି ତାହାକୁ କିପରି ପରିବର୍ତ୍ତନ କରାଯାଇପାରିବ ତାହା ହିଁ ମୂଳ ପ୍ରଶ୍ନ । ଯେଉଁ ମାନସିକତା ଦ୍ୱାରା ପରିଚାଳିତ ହେବା ଯୋଗୁଁ ଅତ୍ୟାଚାର ଓ ଶୋଷଣ ସମାଜକୁ ଶ୍ରେଣୀ ବିଭକ୍ତ କରିଦେଇଛି, ସେହି ମାନସିକତାର ପରିବର୍ତ୍ତନ ହେବା ଆବଶ୍ୟକ । ସମାଜବାଦର ଲକ୍ଷ୍ୟ ହାସଲ କରିବା ପାଇଁ ଯେଉଁ ଉପାଦାନ ଆବଶ୍ୟକ ତାହା ବିଶ୍ଳେଷଣ କରିବା ଦ୍ୱାରା ମୋର ମତଟି ସ୍ପଷ୍ଟ ହୋଇପାରିବ । ସମାଜବାଦୀମାନେ ଯେଉଁ ଅର୍ଥନୈତିକ ସଂସ୍କାରର କଥା କହୁଛନ୍ତି ଗୋଟିଏ ବିପ୍ଳବ ଦ୍ୱାରା କ୍ଷମତାକୁ ନିୟନ୍ତ୍ରଣ କରା ନଗଲେ ତାହା ସମ୍ଭବ ହେବ ନାହିଁ । ସେହି କ୍ଷମତାକୁ ସର୍ବହରାମାନେ (ପ୍ରୋଲେଟ୍ରିଆଟ୍) ନିୟନ୍ତ୍ରଣ କରିବା ଚାହି । ମୋର ପ୍ରଶ୍ନ ହେଉଛି ଭାରତରେ ସର୍ବହରାମାନେ ଏକତ୍ରିତ ହୋଇ ଏପରି ଏକ ବିପ୍ଳବ ଆଣିପାରିବେ କି ? ଏପରି ଏକ କାର୍ଯ୍ୟ ପାଇଁ ଭାବନା କିପରି ସୃଷ୍ଟି ହେବ ? ମୋ ମତରେ ଅନ୍ୟାନ୍ୟ ସ୍ଥିତି ସମାନ ରହିଲେ ସେପରି ଭାବନା ସେତେବେଳେ ସୃଷ୍ଟି ହେବ ଯେତେବେଳେ ଜଣେ ବ୍ୟକ୍ତି ଯେଉଁମାନଙ୍କ ସହିତ ମିଶି କାର୍ଯ୍ୟ କରିବ ସେମାନେ ସମାନତା, ଭ୍ରାତୃତ୍ୱ ଓ ସର୍ବୋପରି ସାମାଜିକ ନ୍ୟାୟକୁ ଗ୍ରହଣ କରୁଥିବେ । ସମ୍ପତ୍ତିର ସମାନତା ପାଇଁ ଲୋକମାନେ ଏକ ବିପ୍ଳବରେ ଯୋଗ

ଦେବେ ନାହିଁ ଯଦି ସେମାନଙ୍କର ଏହି ବିଶ୍ୱାସ ନ ରହେ ଯେ ବିପ୍ଲବ ବା ପରିବର୍ତ୍ତନ ପରେ ସେମାନଙ୍କୁ ସମାନ ଦୃଷ୍ଟିରେ ଗ୍ରହଣ କରାଯିବ ଏବଂ ଧର୍ମ ଓ ଜାତି ନାମରେ କୌଣସି ବିଭେଦ କରାଯିବ ନାହିଁ। ବିପ୍ଲବକୁ ପରିଚାଳିତ କରୁଥିବା ଜଣେ ସମାଜବାଦୀ କେବଳ ଜାତି ପ୍ରଥାରେ ବିଶ୍ୱାସ କରନ୍ତି ନାହିଁ କହିବା ଯଥେଷ୍ଟ ନୁହେଁ। ବରଂ ଏହି ପ୍ରତିଶ୍ରୁତି ଏକ ଗଭୀରତମ ପ୍ରଦେଶରୁ ଆସିବା ଦରକାର। ବିପ୍ଲବରେ ଯୋଗ ଦେଇଥିବା ସହ ବିପ୍ଲବୀମାନଙ୍କର ମାନସିକତାରେ ଏହି ପରିବର୍ତ୍ତନ ଆସିବା ଆବଶ୍ୟକ ଯେ ସମସ୍ତ ଦେଶବାସୀ ବ୍ୟକ୍ତିଗତ ବ୍ୟବହାର କ୍ଷେତ୍ରରେ ସମାନ ଓ ପରସ୍ପରର ଭାଇ ଭାଇ। ଭାରତ ବର୍ଷରେ ସର୍ବହରାମାନେ ଧନୀ ଦରିଦ୍ର ଭିତରେ ଥିବା ପାର୍ଥକ୍ୟ ବ୍ୟତୀତ ଅନ୍ୟ କୌଣସି ପାର୍ଥକ୍ୟକୁ ଗ୍ରହଣ କରନ୍ତି ନାହିଁ କି ? ଏହା କ'ଣ ସତ୍ୟ ଯେ ଭାରତବର୍ଷରେ ଗରିବ ଲୋକମାନେ ଜାତି-ଜାତି, ସଂପ୍ରଦାୟ-ସଂପ୍ରଦାୟ ମଧ୍ୟରେ କୌଣସି ଉଚ୍ଚ ନୀଚ ଭେଦଭାବ କରନ୍ତି ନାହିଁ ? ଯଦି ସେମାନେ କରନ୍ତି, ତେବେ ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସେମାନେ କିପରି ସଂଘବଦ୍ଧ ହୋଇପାରିବେ ବା ସାମ୍ମୁଖ୍ୟ ଗଠନ କରିପାରିବେ ? ଯଦି ସର୍ବହରାମାନେ ଏକ ସମ୍ମିଳିତ ଶକ୍ତି ନହେବେ ତେବେ ସେମାନେ କୌଣସି ବିପ୍ଲବ ଆଣି ପାରିବେ କି ? ଯଦି ଯୁକ୍ତି ପାଇଁ କଳ୍ପନା କରାଯାଏ ଯେ ଆକସ୍ମିକ ଭାବେ ଏକ ବିପ୍ଲବ ସଂଘଟିତ ହୋଇ ସମାଜବାଦୀ ମାନେ କ୍ଷମତାସୀନ ହୁଅନ୍ତି, ତେବେ ଭାରତରେ ପ୍ରବର୍ତ୍ତିତ ଥିବା ସାମାଜିକ ବ୍ୟବସ୍ଥାରୁ ଉଦ୍ଭବ ସମସ୍ୟାଗୁଡ଼ିକ ପ୍ରତି ସେମାନେ ଉଦାସୀନ ରହିବେ କି ? ଯେତେବେଳ ପର୍ଯ୍ୟନ୍ତ ସେମାନେ ପରସ୍ପର ଭିତରେ ଉଚ୍ଚ ନୀଚ ଭେଦଭାବକୁ ଏପରି ଦୃଢ଼ ଭାବରେ ଧରି ରଖିଥିବେ ଭାରତ ବର୍ଷରେ ଏକ ସମାଜବାଦୀ ରାଷ୍ଟ୍ର ମୁହୂର୍ତ୍ତକ ପାଇଁ ମଧ୍ୟ କାର୍ଯ୍ୟକାରୀ ହୋଇପାରିବ ନାହିଁ। ଯଦି ସମାଜବାଦୀମାନେ ସମାଜବାଦକୁ କେବଳ କଥାରେ ସୀମିତ ନରଖି କାର୍ଯ୍ୟ କ୍ଷେତ୍ରରେ ରୂପାନ୍ତରିତ କରିବାକୁ ଚାହାନ୍ତି, ତେବେ ସେମାନେ ସାମାଜିକ ସଂସ୍କାରର ମହତ୍ତ୍ୱ ଓ ମୌଳିକତାକୁ ସବୁଠାରୁ ଅଧିକ ଗୁରୁତ୍ୱ ଦେବା ଆବଶ୍ୟକ, ଅର୍ଥାତ୍ ଭାରତ ବର୍ଷରେ ଯେଉଁ ସାମାଜିକ ବ୍ୟବସ୍ଥା ରହିଛି ତାହାର ପରିବର୍ତ୍ତନ ପାଇଁ ଉଦ୍ୟମ ନକଲେ ଦେଶରେ କୌଣସି ସମାଜବାଦୀ ଆନ୍ଦୋଳନ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବ ନାହିଁ। ଅର୍ଥାତ୍ ଭାରତରେ ପ୍ରବର୍ତ୍ତିତ ଥିବା ସାମାଜିକ ବ୍ୟବସ୍ଥାକୁ ପରିବର୍ତ୍ତନ କରିବାକୁ ପ୍ରୟାସ

ନହେଲେ କୌଣସି ବିପ୍ଳବ ସଂଘଟିତ ହୋଇପାରିବ ନାହିଁ । ଯଦି ବି ସୌଭାଗ୍ୟବଶତଃ କୌଣସି ବିପ୍ଳବ ହୁଏ, ତେବେ ତାହାକୁ ଦୃଢ଼ ଭାବରେ ଧରି ରଖିବା ଦରକାର ହେବ କାରଣ ତାହା ନହେଲେ ସମାଜବାଦର ଲକ୍ଷ୍ୟ ହାସଲ ହେବନାହିଁ । ସମାଜବାଦର ଲକ୍ଷ୍ୟ ପୂରଣ ପାଇଁ ଜାତିପ୍ରଥାର ବିନାଶ ଘଟାଇବାକୁ ହେବ । ଅର୍ଥାତ୍ ସମାଜବାଦୀ ବିପ୍ଳବ ପୂର୍ବରୁ ଜାତିପ୍ରଥାର ବିଲୋପ ନ ହେଲେ ବିପ୍ଳବ ପରେ ବି ଏହାକୁ ଉଚ୍ଛେଦ କରିବାକୁ ହେବ । ଯେ ପର୍ଯ୍ୟନ୍ତ ଜାତି ରାକ୍ଷସ ଆମ ସମ୍ମୁଖରେ ରହିଛି ସେ ପର୍ଯ୍ୟନ୍ତ ସମତା ଭିତ୍ତିକ ବିପ୍ଳବ ଆସିପାରିବ ନାହିଁ । ଏହି ରାକ୍ଷସର ମୃତ୍ୟୁ ନ ହେଲେ ଯେକୌଣସି ସଂସ୍କାର ତାହା ରାଜନୈତିକ ହେଉ ବା ଅର୍ଥନୈତିକ ହେଉ, ସମ୍ଭବପର ହେବ ନାହିଁ ।

(୪)

## ଶ୍ରମ ବିଭାଜନ ବନାମ ସାମାଜିକ ବିଭାଜନ

ଅନୁଶୋଚନାର ବିଷୟ ଯେ, ଏ ପର୍ଯ୍ୟନ୍ତ ବି ଜାତିପ୍ରଥାର ସମର୍ଥକ ଅଛନ୍ତି । ଜାତିପ୍ରଥାକୁ ବିଭିନ୍ନ କାରଣରୁ ସମର୍ଥନ ଦିଆଯାଏ । କେତେକ କହନ୍ତି ଯେ, ଏହା ହେଉଛି ଏକ ପ୍ରକାରର ଶ୍ରମ ବିଭାଜନ । ଯେ କୌଣସି ଆଧୁନିକ ସଭ୍ୟ ସମାଜରେ ଶ୍ରମ ବିଭାଜନ ରହିବା ଅବଶ୍ୟମ୍ଭାବୀ; ସେହିପରି ଜାତିପ୍ରଥା ହେଉଛି ଏକ ଶ୍ରମ ବିଭାଜନ ଓ ଏଥିରେ କୌଣସି ଅସଙ୍ଗତି ନାହିଁ । ଏହି ପରିପ୍ରେକ୍ଷୀରେ ଏହା କହିବା ଠିକ୍ ହେବ ଯେ ଜାତିପ୍ରଥା କେବଳ ଶ୍ରମ ବିଭାଜନ ନୁହେଁ ଏହା ହେଉଛି ଶ୍ରମିକମାନଙ୍କର ବିଭାଜନ । କୌଣସି ସଭ୍ୟ ସମାଜରେ ଶ୍ରମ ବିଭାଜନ ରହିବା ନିଃସନ୍ଦେହ, କିନ୍ତୁ କୌଣସି ସଭ୍ୟ ସମାଜରେ ଶ୍ରମ ବିଭାଜନ ସହିତ ଶ୍ରମିକମାନଙ୍କ ମଧ୍ୟରେ ଏପରି କଠୋର ସାମାଜିକ ବିଭାଜନ ନଥାଏ । ଜାତିପ୍ରଥା କହିଲେ ଉଚ୍ଚନୀଚ ଅନୁକ୍ରମରେ ଶ୍ରମିକମାନଙ୍କର ବିଭାଜନକୁ ବୁଝାଏ ଯାହାକି ଶ୍ରମ ବିଭାଜନ ଠାରୁ ପୃଥକ୍ । ଏଥିରୁ ଗୋଟିଏ ଶ୍ରେଣୀ ଅନ୍ୟ ଶ୍ରେଣୀ ତୁଳନାରେ ଉପରେ ବା ତଳେ ଥାଇପାରେ । କୌଣସି ଦେଶରେ ଶ୍ରମ ବିଭାଜନ ସହ ଶ୍ରମିକମାନଙ୍କର ଉଚ୍ଚ ନୀଚ ଅନୁକ୍ରମରେ ସାମାଜିକ ବିଭାଜନ ଦେଖିବାକୁ ମିଳେ ନାହିଁ । ଯେଉଁମାନେ ଜାତିପ୍ରଥାକୁ ଶ୍ରମ ବିଭାଜନ ନିୟମ ଉପରେ ପର୍ଯ୍ୟବସିତ ବୋଲି କହିଥାନ୍ତି

ସେମାନଙ୍କ ବିରୁଦ୍ଧରେ ଅନ୍ୟ ଏକ ସମାଲୋଚନା ମଧ୍ୟ ଦିଆଯାଇପାରେ । ଏହି ବିଭାଜନ ଏକ ସ୍ୱତଃପ୍ରବୃତ୍ତ ବିଭାଜନ ନୁହେଁ କିମ୍ବା ଏହି ବିଭାଜନ କୌଣସି ପ୍ରାକୃତିକ ଅଭିରୁଚି ଉପରେ ମଧ୍ୟ ପର୍ଯ୍ୟବସିତ ନୁହେଁ । ସାମାଜିକ ଓ ବ୍ୟକ୍ତିଗତ ଦକ୍ଷତା ଭିତରେ ଜଣେ ବ୍ୟକ୍ତି ନିଜର ବୃତ୍ତି ସ୍ଥିର କରିବା ପାଇଁ ସମାଜରେ ଅନ୍ୟମାନଙ୍କ ସହ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହୋଇଥାଏ । ନିଜର ସାମର୍ଥ୍ୟ ଅନୁଯାୟୀ ବ୍ୟକ୍ତି କୌଣସି ବୃତ୍ତି ଗ୍ରହଣ କରିପାରେ । କିନ୍ତୁ ଜାତି ବ୍ୟବସ୍ଥାରେ ଏହି ନିୟମର ଉଲ୍ଲଂଘନ ହୁଏ । କାରଣ ଜାତି ବ୍ୟବସ୍ଥାରେ ବ୍ୟକ୍ତିର ବୃତ୍ତି ତା'ର ସାମର୍ଥ୍ୟ ବା ଅର୍ଜନ କରିଥିବା କୌଶଳ ଉପରେ ନିର୍ଭର କରେନାହିଁ, ବରଂ ତା'ର ବାପା ମା'ଙ୍କର ସାମାଜିକ ସ୍ଥିତିକୁ ନେଇ ତା'ର ବୃତ୍ତି ପୂର୍ବରୁ ସ୍ଥିର ହୋଇଥାଏ । ଅନ୍ୟ ଏକ ଦୃଷ୍ଟିରୁ ଦେଖିଲେ ଜାତିପ୍ରଥାରୁ ଉତ୍ପନ୍ନ ବୃତ୍ତିମାନଙ୍କର ଏପରି ସ୍ତର ବିନ୍ୟାସ ସମାଜ ପାଇଁ ଅତ୍ୟନ୍ତ କ୍ଷତିକାରକ ମନେହୁଏ । କୌଣସି ସମାଜରେ ଶିଳ୍ପ କେବେହେଲେ ଗତିହୀନ ସ୍ଥିତାବସ୍ଥାକୁ ବୁଝାଏ ନାହିଁ, ବରଂ ଏଥିରେ ସର୍ବଦା ପରିବର୍ତ୍ତନ ହେଉଥାଏ । ସେହିପରି କୌଣସି ବ୍ୟକ୍ତି ନିଜର ସାମର୍ଥ୍ୟ ଓ ଦକ୍ଷତା ଅନୁଯାୟୀ ନିଜର ବୃତ୍ତିକୁ ପରିବର୍ତ୍ତନ କରିପାରେ । ପରିବର୍ତ୍ତନ ପରିସ୍ଥିତିରେ ଯଦି ବ୍ୟକ୍ତି ସମାଜରେ ନିଜର ବୃତ୍ତି ନିଜ ମନ ମୁତାବକ ସ୍ଥିର କରିବାରେ ସ୍ୱାଧୀନତା ନପାଏ, ତେବେ ସେ ନିଜ ଜୀବନର ଆବଶ୍ୟକତା ପୂରଣ କରିବାକୁ ସମର୍ଥ ହୁଏନାହିଁ । ଜାତିପ୍ରଥା ହିନ୍ଦୁମାନଙ୍କୁ ସେମାନଙ୍କ ଜାତିର ବାହାରେ ଅର୍ଥାତ୍ ବଂଶାନୁକ୍ରମିକ ବୃତ୍ତିକୁ ଛାଡ଼ି ଅନ୍ୟ ବୃତ୍ତି ଗ୍ରହଣ କରିବାରେ ସୁଯୋଗ ଦିଏନାହିଁ । ଯଦି ଜଣେ ହିନ୍ଦୁ କୌଣସି ନୂଆ ବୃତ୍ତି ଗ୍ରହଣ କରିବା ପରିବର୍ତ୍ତେ ତା ଜାତିର ବୃତ୍ତି ଭିତରେ ଆବଦ୍ଧ ରହି ଭୋକ ଉପାସରେ ରହେ, ତେବେ ଏହା କେବଳ ଜାତିପ୍ରଥାର ରୁଦ୍ଧ ବ୍ୟବସ୍ଥା ଯୋଗୁଁ ହୋଇଥାଏ । ସମାଜରେ ଲୋକମାନଙ୍କୁ ନିଜର ଜାତିଗତ କୌଳିକ ବୃତ୍ତି ବାହାରେ ଅନ୍ୟ କୌଣସି ବୃତ୍ତି ଅବଲମ୍ବନ କରିବାକୁ ସୁଯୋଗ ନ ମିଳିବାରୁ ଦେଶରେ ବେକାରି ସମସ୍ୟା ବୃଦ୍ଧି ହେବା ଦେଖାଯାଏ । ଜାତିପ୍ରଥାର ଶ୍ରମ ବିଭାଜନ ନିୟମ ଏକ ଗୁରୁତର ତ୍ରୁଟିରେ ମଧ୍ୟ ଆକ୍ରାନ୍ତ । ଜାତିପ୍ରଥାରେ ଯେଉଁ ଶ୍ରମ ବିଭାଜନ ନିୟମ କଥା କୁହାଯାଏ, ତାହା ବ୍ୟକ୍ତିର ଅଭିରୁଚି ଉପରେ ଆଧାରିତ ନୁହେଁ । ବ୍ୟକ୍ତିଗତ ଅଭିରୁଚି, ପସନ୍ଦ ବା ଦକ୍ଷତାର ଏଥିରେ ସ୍ଥାନ ନଥାଏ । ବରଂ ଏହା ପୂର୍ବ ନିର୍ଦ୍ଧାରିତ ଭାଗ୍ୟବାଦର ନିୟମ ଉପରେ ପର୍ଯ୍ୟବସିତ । ସାମାଜିକ ଦକ୍ଷତା ବିଚାରରେ ଶିଳ୍ପ ସଭ୍ୟତାର କେତେକ ମନ୍ଦ ପରିଣାମ ଆମେ ଦେଖୁଛେ । ଶିଳ୍ପ ସଭ୍ୟତାର କୁପରିଣାମ ଦାରିଦ୍ର୍ୟ ଓ ଦୁଃଖ ଯନ୍ତ୍ରଣା

ନୁହେଁ; ବରଂ କେତେକ ବ୍ୟକ୍ତି ଏପରି କେତେକ ବୃତ୍ତିକୁ ଗ୍ରହଣ କରିଥାନ୍ତି ଯାହା ପ୍ରତି ସେମାନଙ୍କର କୌଣସି ଆଗ୍ରହ ନଥାଏ । ଫଳରେ ସେମାନେ ଅବଲମ୍ବନ କରୁଥିବା ବୃତ୍ତିରୁ କୌଣସି ଆନନ୍ଦ ଅନୁଭବ କରନ୍ତି ନାହିଁ । ସେମାନେ ନିଜର କାର୍ଯ୍ୟପ୍ରତି ଅବହେଳା କରିଥାନ୍ତି, ସୁଯୋଗ ପାଇଲେ ଏହାକୁ ଏଡ଼ାଇ ଯାନ୍ତି ଓ ଏହା ପ୍ରତି ବିତୃଷ୍ଣ ରହନ୍ତି । ଭାରତ ବର୍ଷରେ ଏପରି କେତେକ ବୃତ୍ତି ରହିଛି ଯେଉଁଗୁଡ଼ିକୁ ସର୍ବଦା ନିମ୍ନ ଦୃଷ୍ଟିରେ ଦେଖାଯାଇଛି । ଫଳରେ ସେହି କେତେକ କର୍ମରେ ପ୍ରବୃତ୍ତ ଥିବା ବ୍ୟକ୍ତିଗଣ ସେହି କାର୍ଯ୍ୟକୁ କରୁଥିଲେ ବି ସେ ପ୍ରତି କୌଣସି ଆନ୍ତରିକତା ରଖନ୍ତି ନାହିଁ । ସେମାନେ ସର୍ବଦା ସେହି ବୃତ୍ତିକୁ ପରିତ୍ୟାଗ କରି ଅନ୍ୟ ବୃତ୍ତି ଗ୍ରହଣ କରିବାକୁ ଇଚ୍ଛା କରନ୍ତି । କାରଣ ସେମାନଙ୍କର ବୃତ୍ତି ସେମାନଙ୍କ ପାଇଁ ଏକ ଅଭିଶାପ ବୋଲି ସେମାନେ ଗ୍ରହଣ କରୁଥାନ୍ତି । ଏହାର କାରଣ ହେଉଛି ହିନ୍ଦୁ ଧର୍ମରେ କେତେକ କାର୍ଯ୍ୟକୁ ସାମାଜିକ ସ୍ତରରେ ଅତି ନ୍ୟୂନ ଦୃଷ୍ଟିରେ ଦେଖାଯାଏ । ଗୋଟିଏ ବ୍ୟବସ୍ଥାରେ ଯେଉଁଠି ମଣିଷର ଶ୍ରମ ପାଇଁ କୌଣସି ଆନ୍ତରିକତା କିମ୍ବା ଅଭିରୁଚି ନଥାଏ କେବଳ ଜଣେ ତାହା ବାଧ୍ୟ ହୋଇ କରୁଥାଏ, ସେହି ବ୍ୟବସ୍ଥାକୁ ଆମେ କେତେଦୂର ଉନ୍ନତ କହିପାରିବା ! ଜାତିପ୍ରଥାକୁ ଏକ ଆର୍ଥିକ ସଙ୍ଗଠନ ଭାବରେ ଯଦି ବି ଗ୍ରହଣ କରାଯାଏ, ତେବେ ଏହା ଏକ କ୍ଷତିକାରକ ଅନୁଷ୍ଠାନ ଅଟେ, କାରଣ ଏଥିରେ ବ୍ୟକ୍ତିର ସହଜାତ ସାମର୍ଥ୍ୟ ଓ ପ୍ରାକୃତିକ ଆଗ୍ରହକୁ ପ୍ରଚଳିତ ସାମାଜିକ ନିୟମ ପାଖରେ ବଳି ପଡ଼ିବାକୁ ହୁଏ ।

(୫)

## ରକ୍ତର ଶୁଦ୍ଧତା ଓ ଜାତିପ୍ରଥା

କେତେକ ଜାତିପ୍ରଥାକୁ ସମର୍ଥନ କରିବାକୁ ଯାଇ ଜୀବ ବିଜ୍ଞାନର ସାହାଯ୍ୟ ନେଇଥାନ୍ତି । ଜାତି ଓ ରକ୍ତର ଶୁଦ୍ଧତାକୁ ରକ୍ଷା କରିବାକୁ ଯାଇ ଜାତିପ୍ରଥା ଉଦ୍ଦିଷ୍ଟ ବୋଲି ଯୁକ୍ତି କରାଯାଏ । ନୃଜାତି ବିଜ୍ଞାନୀମାନଙ୍କ ମତରେ ପୃଥିବୀରେ କୌଣସି ଜାଗାରେ ଏକ ଶୁଦ୍ଧ ଅନୁବଂଶ ବା ଜାତି (Race) ରହିବା ସମ୍ଭବ ହୋଇନାହିଁ । ପୃଥିବୀର ପ୍ରତ୍ୟେକ ଜାଗାରେ ଅନୁବଂଶ ଓ ଜନଶାଖାମାନଙ୍କ ମଧ୍ୟରେ ମିଶ୍ରଣ ଅତି ସ୍ପଷ୍ଟ ମନେହୁଏ । ଡି.ଆର. ଭଣ୍ଡାରକର ତାଙ୍କର "ହିନ୍ଦୁ ଜନଗଣଙ୍କ ଭିତରେ ବିଦେଶୀ

ଉପାଦାନ" ନିବନ୍ଧରେ କହିଛନ୍ତି, "ଭାରତ ବର୍ଷରେ ଏପରି କୌଣସି ଗୋଟିଏ ଶ୍ରେଣୀ ବା ବଂଶ ମିଳିବ ନାହିଁ ଯାହା ସହିତ ବିଦେଶୀ ଜନଶାଖାର ମିଶ୍ରଣ ହୋଇନାହିଁ । ଯୁଦ୍ଧ ବିଦ୍ୟାରେ ନିପୁଣ ମରାଠା କ୍ଷତ୍ରିୟ ଶ୍ରେଣୀ ଓ ରାଜପୁତମାନଙ୍କ ଭିତରେ ଯେ ମିଶ୍ରଣ ଦେଖାଯାଏ ତାହା ନୁହେଁ ବରଂ ବ୍ରାହ୍ମଣମାନଙ୍କ ଭିତରେ ଏହି ମିଶ୍ରଣ ସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହୁଏ; ଯଦିବା ବ୍ରାହ୍ମଣମାନେ ନିଜର ଭ୍ରମାତ୍ମକ କଳ୍ପନାରେ ନିଜକୁ ବିଦେଶୀ ମିଶ୍ରଣଠାରୁ ଏକ ଶୁଦ୍ଧ ଶ୍ରେଣୀ ବୋଲି କଳ୍ପନା କରିଥାନ୍ତି । ଜାତିପ୍ରଥା ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ମିଶ୍ରଣକୁ ପ୍ରତିହତ କରି ପ୍ରତ୍ୟେକ ଗୋଷ୍ଠୀର ଶୁଦ୍ଧତାକୁ ରକ୍ଷା କରିବା ପାଇଁ ଉଦ୍ଦିଷ୍ଟ ହୋଇନାହିଁ । ଅନ୍ୟ ଭାବରେ କହିଲେ, ଗୋଷ୍ଠୀମାନଙ୍କର ବଂଶଗତ ଶୁଦ୍ଧତାକୁ ରକ୍ଷା କରିବା ପାଇଁ ଜାତିପ୍ରଥା ସୃଷ୍ଟି ହୋଇନାହିଁ । ଭାରତବର୍ଷରେ ଗୋଷ୍ଠୀ ଗୋଷ୍ଠୀ ଓ ବିଭିନ୍ନ ଜନଶାଖାମାନଙ୍କର ରକ୍ତ ଓ ସଂସ୍କୃତିର ମିଶ୍ରଣର ବହୁବର୍ଷ ପରେ ଜାତିପ୍ରଥା ସୃଷ୍ଟି ହୋଇଛି । ଜାତିପ୍ରଥାକୁ ନେଇ ଜାତିମାନଙ୍କର ଶୁଦ୍ଧତା କିମ୍ବା ସେମାନଙ୍କର ଆନୁବଂଶିକ ପବିତ୍ରତା କଥା ଭାବିବା ଘଟଣାବଳୀର ପୂର୍ଣ୍ଣ ବିରୋଧ କହିଲେ ଅତ୍ୟୁକ୍ତି ହେବନାହିଁ । ପଞ୍ଜାବର ବ୍ରାହ୍ମଣମାନଙ୍କ ମଧ୍ୟରେ କ'ଣ ଆନୁବଂଶିକ ସମାନତା ରହିଛି ? ସେହିପରି ବଙ୍ଗର ଅସ୍ପୃଶ୍ୟ ଓ ତାମିଲନାଡୁର ଅସ୍ପୃଶ୍ୟମାନଙ୍କ ମଧ୍ୟରେ କ'ଣ ସାମଞ୍ଜସ୍ୟ ରହିଛି ? ପଞ୍ଜାବର ବ୍ରାହ୍ମଣ ଓ ଚମାରମାନଙ୍କ ମଧ୍ୟରେ କୌଣସି ଆନୁବଂଶିକ ପ୍ରଭେଦ ରହିଛି କି ? ସେହିପରି ତାମିଲନାଡୁର ବ୍ରାହ୍ମଣ ଓ ପରିହାମାନଙ୍କ ମଧ୍ୟରେ କିଛି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ କି ? ପଞ୍ଜାବର ବ୍ରାହ୍ମଣମାନେ ଯେଉଁ ଆନୁବଂଶିକ ଜନଶାଖାରୁ ସୃଷ୍ଟି ସେଠିକାର ଚମାରମାନେ ମଧ୍ୟ ସେହି ଜନ ସମୂହରୁ ସୃଷ୍ଟି । ସେହିପରି ତାମିଲନାଡୁର ବ୍ରାହ୍ମଣ ଓ ପରିହା ଉଭୟଙ୍କର ଜାତିଗତ ଉତ୍ସ ସମାନ । ଜାତି ବ୍ୟବସ୍ଥା କୌଣସି ଆନୁବଂଶିକ ଭିନ୍ନତା ବା ବିଭାଜନକୁ ବୁଝାଏ ନାହିଁ । ଏହା ଗୋଟିଏ ଜନଶାଖାର ବା ଅନୁବଂଶର ସାମାଜିକ ବିଭାଜନକୁ ବୁଝାଏ । ଏହି କଥାକୁ ବିଚାରକୁ ନେଇ ଏହି ପ୍ରଶ୍ନ ପଚରାଯାଇ ପାରିବ ଯେ ଯଦି ଭିନ୍ନ ଭିନ୍ନ ଜାତିରେ ବିବାହଦ୍ୱାରା ସେମାନଙ୍କ ମଧ୍ୟରେ ରକ୍ତ ସମ୍ବନ୍ଧ ସ୍ଥାପିତ ହୁଏ, ତେବେ ଏହି ଆନ୍ତର୍ଜାତି ବିବାହ ଦ୍ୱାରା କିଛି ଅସୁବିଧା ହେବ କି ? ମଣିଷ ଓ ପଶୁ ଭିତରେ ଏପରି ମୌଳିକ ପାର୍ଥକ୍ୟ ରହିଛି ଯଦ୍ଦ୍ୱାରା ବିଜ୍ଞାନରେ ସେମାନଙ୍କୁ ଦୁଇଟି ପୃଥକ୍ ଜୀବରେ ବିଭକ୍ତ କରାଯାଏ । ଏପରି ଯେଉଁ ବୈଜ୍ଞାନିକମାନେ ଆନୁବଂଶିକ ଶୁଦ୍ଧତାରେ ବିଶ୍ୱାସ କରନ୍ତି ସେମାନେ ବିଭିନ୍ନ ଜନଶାଖାଗୁଡ଼ିକ ମଧ୍ୟରେ ମୌଳିକ ପ୍ରଭେଦ ଥିବା ଦର୍ଶାଇ ସେମାନଙ୍କୁ ଭିନ୍ନ ଭିନ୍ନ

ଜୀବ (species) ବୋଲି କହିପାରିବେ ନାହିଁ । ସମସ୍ତ ମଣିଷ ହେଉଛନ୍ତି ଗୋଟିଏ ଶ୍ରେଣୀର ଜୀବ ଯଦିବା ସେମାନଙ୍କ ଭିତରେ କେତେକ ବିବିଧତା ରହିଛି । ସୁତରାଂ ସେମାନଙ୍କ ମଧ୍ୟରେ ପ୍ରଜନନ ସମ୍ଭବ ଓ ସେମାନଙ୍କର ସନ୍ତାନ ସନ୍ତତି ମଧ୍ୟ ପ୍ରଜନନ କ୍ଷମ । ବେଳକେ ସୁପ୍ରଜନନ ଓ ବଂଶାନୁକ୍ରମିକ ନିୟମ କଥା କୁହାଯାଇ ଜାତିପ୍ରଥାକୁ ରକ୍ଷାକରିବା ସପକ୍ଷରେ କେତେକ ଅବାନ୍ତର କଥା କୁହାଯାଏ । ଯଦି ଜାତିପ୍ରଥା ମୌଳିକ ସୁପ୍ରଜନନ ନିୟମ ଉପରେ ପର୍ଯ୍ୟବସିତ, ତେବେ ଏହାର ସମାଲୋଚନା କରାଯାଇପାରିବ ନାହିଁ । କାରଣ ଏକ ଉନ୍ନତ ପ୍ରଜନନ ବ୍ୟବସ୍ଥା ଦ୍ୱାରା ଜାତିର ଭାବୀ ବଂଶଧରମାନଙ୍କୁ ଉନ୍ନତ କରିବାକୁ କେହି ବିରୋଧ କରିବେ ନାହିଁ । କିନ୍ତୁ ଜାତିପ୍ରଥା ଦ୍ୱାରା କିପରି ଉନ୍ନତ ପ୍ରଜନନ ହୋଇପାରିବ ତାହା ବୁଝାପଡ଼େ ନାହିଁ, ବରଂ ସୁପ୍ରଜନନ କ୍ଷେତ୍ରରେ ଜାତିପ୍ରଥା ନକାରାତ୍ମକ ମନେହୁଏ । ଜାତିପ୍ରଥା ଦ୍ୱାରା ଜାତି ଜାତି ମଧ୍ୟରେ ଆନ୍ତର୍ବିବାହକୁ ବାରଣ କରାଯାଏ । ଏହାଦ୍ୱାରା କୌଣସି ଜାତିରେ କେଉଁ ନିର୍ଦ୍ଦିଷ୍ଟ ଦୁଇଜଣ ବ୍ୟକ୍ତି ବିବାହ କରିବେ, ତାହା ସ୍ଥିର କରାଯାଏ ନାହିଁ । ଯଦି ଜାତିପ୍ରଥା ସୁପ୍ରଜନନ ନିୟମ ଉପରେ ପର୍ଯ୍ୟବସିତ, ତେବେ ଉପଜାତି ଗୁଡିକର ସୃଷ୍ଟି ମଧ୍ୟ ସେହି ନିୟମରୁ ଉତ୍ପନ୍ନ ହେବା ଆବଶ୍ୟକ । କିନ୍ତୁ ଉପଜାତି ଗୁଡ଼ିକର ଉତ୍ପତ୍ତି ସୁପ୍ରଜନନ ନିୟମ ଉପରେ ଆଧାରିତ ବୋଲି କୌଣସି ଯୁକ୍ତି ଦିଆଯାଇପାରିବ କି ? ଏ କ୍ଷେତ୍ରରେ କୌଣସି ଯୁକ୍ତି ଦେବା ଅତ୍ୟନ୍ତ ହାସ୍ୟାସ୍ପଦ । ଯଦି ଜାତିପ୍ରଥାଦ୍ୱାରା ଏକ ଆନୁବଂଶିକ ଶ୍ରେଣୀକୁ ବୁଝାଯାଏ, ତେବେ ଉପଜାତିଗୁଡ଼ିକ ଭିତରେ ଥିବା ପାର୍ଥକ୍ୟ ଆନୁବଂଶିକ ପାର୍ଥକ୍ୟକୁ ବୁଝାଇବ ନାହିଁ, କାରଣ ଉପଜାତିଗୁଡ଼ିକ ଏହି ପ୍ରକଳ୍ପ ଭିତରେ ଏକ ନିର୍ଦ୍ଦିଷ୍ଟ ଅନୁବଂଶରୁ ଉଦ୍ଭବ । ସୁତରାଂ ଉପଜାତିମାନଙ୍କ ଭିତରେ ଏକତ୍ର ଭୋଜନ ବା ବିବାହ ନେଇ ବାରଣ କୌଣସି ଆନୁବଂଶିକ ଶୁଦ୍ଧତା ବା ରକ୍ତର ପବିତ୍ରତା ପାଇଁ ଉଦ୍ଦିଷ୍ଟ ନୁହେଁ । ଯଦି ଉପଜାତିଗୁଡ଼ିକ କୌଣସି ସୁପ୍ରଜନନ ନିୟମ ଉପରେ ଆଧାରିତ ନୁହେଁ ବା ସେଥିରୁ ସୃଷ୍ଟି ହୋଇନାହିଁ, ତେବେ ଜାତି ବ୍ୟବସ୍ଥା ଯେ ସୁପ୍ରଜନନ ନିୟମ ଉପରେ ଆଧାରିତ ତାହା କହିବା ଅବାନ୍ତର । ଯଦି ସୁପ୍ରଜନନ ନିୟମ ଉପରେ ଜାତିପ୍ରଥାକୁ ପର୍ଯ୍ୟବସିତ କରାଯାଏ ତେବେ ଆନ୍ତର୍ଜାତି ବିବାହକୁ ବାରଣ କରିବା ଅର୍ଥପୂର୍ଣ୍ଣ, କିନ୍ତୁ ଜାତି ଜାତି କିମ୍ବା ଜାତିର ଉପଜାତିମାନଙ୍କ ମଧ୍ୟରେ ଏକତ୍ର ଭୋଜନକୁ ନିଷେଧ କରିବାର କିଛି କାରଣ ଅଛି କି ? ଏକତ୍ର ଭୋଜନ ଦ୍ୱାରା ରକ୍ତରେ କୌଣସି ପରିବର୍ତ୍ତନ ହୁଏ ନାହିଁ । ଫଳରେ

ଜାତିପ୍ରଥାର କୌଣସି ବୈଜ୍ଞାନିକ ଭିତ୍ତି ନାହିଁ, ଏହା ନିଃସନ୍ଦେହ ମନେହୁଏ । ପରନ୍ତୁ ଯେଉଁମାନେ ଏହାକୁ ସୁପ୍ରଜନନ ନିୟମ ଉପରେ ବ୍ୟାଖ୍ୟା କରିବାକୁ ଉଦ୍ୟମ କରନ୍ତି ସେମାନେ ଗୋଟିଏ ସମ୍ପୂର୍ଣ୍ଣ ଅବୈଜ୍ଞାନିକ ଜିନିଷକୁ ବିଜ୍ଞାନ ଧାରାରେ ବୁଝିବାକୁ ଉଦ୍ୟମ କରନ୍ତି । ଏପରିକି ଆନୁବଂଶିକ ନିୟମ ଉପରେ ସ୍ପଷ୍ଟ ଜ୍ଞାନ ନ ହେବା ପର୍ଯ୍ୟନ୍ତ ପ୍ରଜନନ ଏକ ବାସ୍ତବ ସମ୍ଭାବନାରେ ପରିଣତ ହୋଇପାରିବ ନାହିଁ । ମେଣ୍ଡେଲଙ୍କର ବଂଶାନୁକ୍ରମିକ ନିୟମକୁ ପ୍ରଫେସର ବାଟସନ୍ ବିଶ୍ଳେଷଣ କରି କହିଛନ୍ତି, "ଗୋଟିଏ ଜାତିର ବଂଶଧରଙ୍କ ଭିତରେ ଉଚ୍ଚତର ମାନସିକ ଗୁଣ ସମ୍ଭବ ହେବା କ୍ଷେତ୍ରରେ ସେପରି କୌଣସି ନିର୍ଦ୍ଦିଷ୍ଟ ସଞ୍ଚରଣ ନିୟମ ନାହିଁ । ଶାରୀରିକ ସାମର୍ଥ୍ୟ ହେଉ ବା ମାନସିକ ଗୁଣ ହେଉ ତାହା ସନ୍ତାନ ସନ୍ତତିଙ୍କ ପାଖରେ ଅଧିକ ବିକଶିତ ହେବା ଆକସ୍ମିକ ସଂଯୋଗ ମାତ୍ର । ନାନାବିଧ ଉପାଦାନର ମେଳରୁ ଓ ଜିନ୍ ଗତ ସଂଯୋଗରୁ ହୁଏତ ଏହା ସମ୍ଭବ ହୋଇପାରେ, କିନ୍ତୁ ଏହାକୁ ନିୟମ ଆକାରରେ ବୁଝାଇ ହେବନାହିଁ ।" ଜାତିପ୍ରଥା ସୁପ୍ରଜନନ ନିୟମ ଉପରେ ପର୍ଯ୍ୟବସିତ ବୋଲି କହିବା ଅର୍ଥ ହେଉଛି ଉନ୍ନତ ସନ୍ତାନ ସନ୍ତତି ପାଇଁ ହିନ୍ଦୁମାନଙ୍କର ଅତୀତର ପୂର୍ବ ପୁରୁଷମାନେ ବଂଶାନୁକ୍ରମିକ ନିୟମ ଉପରେ ଜ୍ଞାନର ଅଧିକାରୀ ଥିଲେ ବୋଲି କହିବା, ଯାହା ବିଷୟରେ ଆଧୁନିକ ବିଜ୍ଞାନୀମାନେ ବିଶେଷ ଜ୍ଞାନ୍ ଲାଭ କରି ନାହାନ୍ତି । ଗୋଟିଏ ଗଛ ତା'ର ଫଳ ଜରିଆରେ ପରିଚିତ ହୁଏ । ଯଦି ଜାତିପ୍ରଥା ପ୍ରଜନନ ନିୟମ ଉପରେ ଆଧାରିତ ତେବେ ଏଥିରୁ କେଉଁ ପ୍ରକାରର ଲୋକମାନେ ସୃଷ୍ଟି ହୋଇଛନ୍ତି ? ଶାରୀରିକ ଦୃଷ୍ଟିକୋଣରୁ ଦେଖିଲେ ହିନ୍ଦୁମାନେ ହେଉଛନ୍ତି ତୃତୀୟ ଶ୍ରେଣୀର ବ୍ୟକ୍ତି । ସେମାନଙ୍କର ଉଚ୍ଚତା କମ୍ ଓ ଶାରୀରିକ ସାମର୍ଥ୍ୟ ଓ କାମ କରିବା ପାଇଁ ଶକ୍ତି ଅନ୍ୟମାନଙ୍କ ତୁଳନାରେ ଅଳ୍ପ । ଏପରିକି ଆମ ଦେଶର ଦଶଭାଗରୁ ନ'ଭାଗ ଲୋକ ସାମରିକ ଚାକିରିରେ ଯୋଗ ଦେବାକୁ ଅଯୋଗ୍ୟ । ଏଥିରୁ ଏହା ସ୍ପଷ୍ଟ ଯେ ଜାତିପ୍ରଥା ଆଧୁନିକ ବୈଜ୍ଞାନିକମାନଙ୍କର ସୁପ୍ରଜନନ ନିୟମ ସହିତ ଆଦୌ ସମ୍ବନ୍ଧିତ ନୁହେଁ । ଏହା ହେଉଛି ଏକ ସାମାଜିକ ବ୍ୟବସ୍ଥା ଯାହା କେତେକ ଶ୍ରେଣୀର ସ୍ୱାର୍ଥପରତା ଓ ବିକୃତି ଯୋଗୁଁ ହିନ୍ଦୁ ସମାଜରେ ରହିଆସିଛି । ହିନ୍ଦୁ ସମାଜରେ କେତେକ ସବଳ ଶ୍ରେଣୀର ବ୍ୟକ୍ତିଙ୍କର ଅହମିକା ଓ ସାମାଜିକ ପ୍ରାଧାନ୍ୟ ଯୋଗୁଁ ଅନ୍ୟ ଦୁର୍ବଳ ଲୋକମାନଙ୍କ ଉପରେ ଏହା ଜବରଦସ୍ତ ଲଦି ଦିଆଯାଇଛି ।

---

(୬)

# ହିନ୍ଦୁ ସମାଜ ଏକ କାଳ୍ପନିକ ବସ୍ତୁ

ଅର୍ଥନୈତିକ ଦକ୍ଷତା ବୃଦ୍ଧି ଦିଗରେ ଜାତିପ୍ରଥା ସାହାଯ୍ୟ କରିନାହିଁ । ଏହାଦ୍ୱାରା ଜନଗଣଙ୍କର କୌଣସି ଉନ୍ନତି ହୋଇନାହିଁ ବା ହୋଇପାରିବ ନାହିଁ । ଏହାଦ୍ୱାରା ଗୋଟିଏ କଥା ହୋଇଛି । ଏହା ହିନ୍ଦୁମାନଙ୍କୁ ସମ୍ପୂର୍ଣ୍ଣ ଅବ୍ୟବସ୍ଥିତ କରିବା ସହ ନୈତିକ ଭାବରେ କ୍ଷୟଶୀଳ କରାଇଛି ।

ପ୍ରଥମରୁ ଏହା ସ୍ୱୀକାର କରିବା ଉଚିତ ହେବ ଯେ ହିନ୍ଦୁ ସମାଜ ହେଉଛି ଏକ କାଳ୍ପନିକ ବସ୍ତୁ । ହିନ୍ଦୁ ଶବ୍ଦଟି ଏକ ବିଦେଶୀ ନାମ । ମୁସଲମାନମାନେ ଏହି ଭୂଖଣ୍ଡର ଲୋକମାନଙ୍କୁ ନିଜଠାରୁ ପୃଥକ୍ କରି ଜାଣିବା ପାଇଁ ଏହା ଦେଇଥିଲେ । ମୁସଲମାନ ଆକ୍ରମଣ ପୂର୍ବରୁ ଏହି ଶବ୍ଦର ପ୍ରୟୋଗ କୌଣସି ସଂସ୍କୃତ ପୁସ୍ତକରେ ଦେଖିବାକୁ ମିଳେନାହିଁ । ଭାରତର ଲୋକମାନେ ଏକ ସମୁଦାୟ ଭାବରେ ପରିଚିତ ହେବାକୁ ଆବଶ୍ୟକ ଅନୁଭବ କରି ନାହାନ୍ତି । ତେଣୁ ସେମାନଙ୍କର କୌଣସି ସାଧାରଣ ନାମ ନାହିଁ । କହିବାକୁ ଗଲେ ହିନ୍ଦୁ ସମାଜ ବୋଲି କିଛି ଅସ୍ତିତ୍ୱ ନାହିଁ । ବରଂ ଏହା ହେଉଛି କେତେଗୁଡ଼ିଏ ଜାତିର ସମଷ୍ଟି ମାତ୍ର । ପ୍ରତ୍ୟେକ ଜାତି ନିଜର ଅସ୍ତିତ୍ୱ ନେଇ ସଚେତନ । ଏହାର ଅସ୍ତିତ୍ୱ ହିଁ ଏହାର ସବୁକିଛି । ଜାତିଗୁଡ଼ିକ ଏପରିକି ଗୋଟିଏ ସଂଘ ଗଠନ କରନ୍ତି ନାହିଁ । ହିନ୍ଦୁ ମୁସଲମାନ ଭିତରେ ସାଂପ୍ରଦାୟିକ ଦଙ୍ଗାକୁ ଛାଡ଼ିଦେଲେ ଅନ୍ୟ ସମୟରେ ଗୋଟିଏ ଜାତି ଅନ୍ୟ ବ୍ୟକ୍ତି ସହ ସମ୍ବନ୍ଧ କ୍ଷେତ୍ରରେ କୌଣସି ଗୁରୁତ୍ୱ ଦିଏନାହିଁ । କେବଳ ସାଂପ୍ରଦାୟିକ ଦଙ୍ଗା ସମୟରେ ଜାତିମାନଙ୍କ ଭିତରେ କିଛି ସମ୍ବନ୍ଧ ଆସିଥାଏ । ଅନ୍ୟ ସବୁ ସମୟରେ ପ୍ରତ୍ୟେକ ଜାତି ନିଜକୁ ଅନ୍ୟଠାରୁ ପୃଥକ୍ ରଖିବା ସହିତ ନିଜର ଅସ୍ତିତ୍ୱକୁ ଅନ୍ୟଠାରୁ ଭିନ୍ନ କରି ଦେଖେ । ଗୋଟିଏ ଜାତିର ଲୋକମାନେ କେବଳ ନିଜ ଭିତରେ ବସି ଭୋଜନ କରନ୍ତି ଓ ବିବାହ ସମ୍ପର୍କ ସ୍ଥାପନ କରନ୍ତି । ଗୋଟିଏ ଜାତିର ଲୋକମାନେ ଅନ୍ୟଠାରୁ ପୃଥକ୍ ହେବାପାଇଁ ନିର୍ଦ୍ଦିଷ୍ଟ ପ୍ରକାରର ପୋଷାକ ପିନ୍ଧନ୍ତି । ଭାରତବର୍ଷରେ ନାରୀ ଓ ପୁରୁଷମାନଙ୍କର ପୋଷାକ କ୍ଷେତ୍ରରେ ଏପରି ଭିନ୍ନତା ଦେଖି ବିଦେଶୀ ପର୍ଯ୍ୟଟକମାନେ କୌତୁକ ଅନୁଭବ କରିଥାନ୍ତି । ଗୋଟିଏ ମୂଷା ଯେପରି

ନିଜର ଗାତ ଭିତରେ ରହି ଅନ୍ୟ ସହିତ କୌଣସି ସମ୍ପର୍କ ରଖେ ନାହିଁ ସେହିପରି ଜଣେ ଆଦର୍ଶ ହିନ୍ଦୁ ନିଜ ଜାତି ବାହାରେ ଅନ୍ୟ ସହିତ କୌଣସି ସମ୍ପର୍କ ରଖେନାହିଁ । ହିନ୍ଦୁମାନଙ୍କର ଏକ ନିଜସ୍ୱ ପରିଚୟ ବା ଅଭିବ୍ୟକ୍ତି ନାହିଁ । ସମାଜ ଶାସ୍ତ୍ରରେ ଗୋଟିଏ ଜାତିର ନିର୍ଦ୍ଦିଷ୍ଟ ପରିଚୟ କଥା ଯେପରି କୁହାଯାଏ ହିନ୍ଦୁମାନଙ୍କ କ୍ଷେତ୍ରରେ ସେପରି କିଛି ଦେଖିବାକୁ ମିଳେନାହିଁ । ଜଣେ ହିନ୍ଦୁ ଭିତରେ ଯେଉଁ ପରିଚୟଟି ରହିଛି ତାହା ହେଉଛି ଏକ ଜାତିର ପରିଚୟ ବା ଏକ ଜାତିଗତ ଅଭିବ୍ୟକ୍ତି । ଏହି ଦୃଷ୍ଟିରୁ ହିନ୍ଦୁମାନେ ଯେ ଗୋଟିଏ ସମାଜ ବା ଗୋଟିଏ ଦେଶ ଗଠନ କରନ୍ତି ତାହା କୁହାଯାଇପାରିବ ନାହିଁ । ହିନ୍ଦୁମାନେ ଏକ ପରିଚୟବିହୀନ ଜାତି ଓ ସେମାନଙ୍କର କୌଣସି ରାଷ୍ଟ୍ରୀୟ ଭାବନା ନାହିଁ – ଏହା ହୁଏତ କେତେକ ଭାରତୀୟ ନିଜର ଦେଶାତ୍ମବୋଧ ଯୋଗୁଁ ଗ୍ରହଣ କରିବେ ନାହିଁ । ହିନ୍ଦୁମାନଙ୍କ ଭିତରେ ବହୁ ଆଖିଦୃଶିଆ ଭିନ୍ନତା ଥିଲେ ବି ସେମାନଙ୍କ ଭିତରେ ଏକ ମୌଳିକ ସଂହତି ରହିଛି ଓ ସେମାନେ ଏଥିରେ ଗୁରୁତ୍ୱ ଦେଇଥାନ୍ତି । ସମଗ୍ର ଭୂଖଣ୍ଡରେ ଲୋକମାନଙ୍କର ଚଳଣି, ପରମ୍ପରା, ବିଶ୍ୱାସ ଓ ଚିନ୍ତାଧାରା ମଧ୍ୟରେ ସାମଞ୍ଜସ୍ୟ ତ ରହିଛି । ଏ ସତ୍ତ୍ୱେ ହିନ୍ଦୁମାନେ ଯେ ଏକ ସମାଜ ଗଠନ କରୁଛନ୍ତି ଏହି ସିଦ୍ଧାନ୍ତକୁ ଗ୍ରହଣ କରାଯାଇ ପାରିବ ନାହିଁ । ସେପରି କଲେ ସମାଜ ଗଠନ କ୍ଷେତ୍ରରେ ରହିଥିବା ମୌଳିକ ଲକ୍ଷ୍ୟକୁ ଯେ ଯଥାର୍ଥରେ ଅବଧାରଣା କରାଯାଇ ନାହିଁ ତାହା କୁହାଯାଇପାରିବ । ପରସ୍ପର ପାଖରେ ରହିବା ଦ୍ୱାରା ଲୋକମାନେ ସମାଜ ଗଠନ କରନ୍ତି ନାହିଁ ଯେପରିକି କେହି ଦୂରରେ ରହିବା ଦ୍ୱରା ସମାଜରୁ ପୃଥକ୍ ହୋଇଯାଏ ନାହିଁ । ଦ୍ୱିତୀୟରେ ଚଳଣି, ପରମ୍ପରା, ବିଶ୍ୱାସ ଓ ଭାବନା କ୍ଷେତ୍ରରେ କିଛିଟା ସାମଞ୍ଜସ୍ୟତା ସମାଜ ଗଠନ କ୍ଷେତ୍ରରେ ଯଥେଷ୍ଟ ନୁହେଁ । ବସ୍ତୁ ପରି କେତେକ କଥା ଜଣଙ୍କ ପାଖରୁ ଅନ୍ୟ ପାଖକୁ ଯାଇଥାଇପାରେ । ସେହିପରି କେତେକ ଚଳଣି, ପରମ୍ପରା, ବିଶ୍ୱାସ ଓ ଭାବନା ଗୋଟିଏ ଦଳରୁ ଅନ୍ୟ ଦଳ ପାଖକୁ ଯାଇଥାଇପାରେ ବା ଦୁଇ ଦଳଙ୍କ ମଧ୍ୟରେ ଏ କ୍ଷେତ୍ରରେ କିଛିଟା ସାମଞ୍ଜସ୍ୟ ରହିଥାଇ ପାରେ । ସାଂସ୍କୃତିକ ସଂପ୍ରସାରଣ ଦ୍ୱାରା ପ୍ରାଚୀନ ଜନଜାତିଗୁଡ଼ିକ ମଧ୍ୟରେ ଚଳଣି, ପରମ୍ପରା, ବିଶ୍ୱାସ ଓ ଭାବନା କ୍ଷେତ୍ରରେ କିଛିଟା ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ଯଦିବା ସେମାନେ ଏକତ୍ର ବାସ କରନ୍ତି ନାହିଁ । ପ୍ରାଚୀନ ଜନଜାତି ଗୋଷ୍ଠୀଗୁଡ଼ିକ ମଧ୍ୟରେ କିଛିଟା ସାମଞ୍ଜସ୍ୟ ଯୋଗୁଁ ସେମାନେ ଯେ ଗୋଟିଏ ସମାଜ ଗଠନ କରିଛନ୍ତି ତାହା କୁହାଯାଇ

ପାରିବ ନାହିଁ । କାରଣ କେତେକ କ୍ଷେତ୍ରରେ କିଛି ସାମଞ୍ଜସ୍ୟ ସମାଜ ଗଠନ କ୍ଷେତ୍ରରେ ଯଥେଷ୍ଟ ନୁହେଁ । ଯେତେବେଳେ ଲୋକମାନେ ସାଧାରଣ ଭାବରେ କେତେକ ବସ୍ତୁ ପା'ନ୍ତି ଓ ତା'ଉପରେ ନିଜର ଅଧିକାର ରଖନ୍ତି ସେତେବେଳେ ଲୋକମାନେ ସମାଜ ଗଠନ କରନ୍ତି । ଏକା ବସ୍ତୁ ରଖିବା ଓ ବସ୍ତୁମାନଙ୍କ ଉପରେ ସାଧାରଣ ସମାନ ଅଧିକାର ରଖିବା ଦୁଇଟି ପୃଥକ୍ କଥା ଅଟେ । ପରସ୍ପର ଭିତରେ ସମ୍ବନ୍ଧ ରହିଲେ ହିଁ ଯାଇ ସମାଜରେ ଏପରି ଅନେକ କିଛି ରହିବ ଯାହା ଉପରେ ସମସ୍ତଙ୍କର ସାଧାରଣ ଅଧିକାର ରହିପାରିବ । ଏହି ପାରସ୍ପରିକ ସମ୍ବନ୍ଧ ଜନଗଣଙ୍କ ଭିତରେ ସାଧାରଣ ଭାବରେ ନ ରହିଲେ ସମାଜର କଳ୍ପନା ହୋଇପାରେ ନାହିଁ । ଅନ୍ୟ ଭାବରେ କହିଲେ ଏକ ସମାଜର ଅର୍ଥପୂର୍ଣ୍ଣ ସ୍ଥିତି ଏହି ପାରସ୍ପରିକ ସମ୍ବନ୍ଧ ଉପରେ ନିର୍ଭର କରିଥାଏ । କେତେକ ବ୍ୟକ୍ତି ସମାନ୍ତରାଳ ଭାବରେ ସମାନ କାର୍ଯ୍ୟକ୍ରମ କରିବା ଦ୍ୱାରା ସେମାନଙ୍କ ମଧ୍ୟରେ ସାମାଜିକ ସମ୍ବନ୍ଧ ସୁଦୃଢ଼ ହୁଏନାହିଁ । ହିନ୍ଦୁମାନଙ୍କ ଭିତରେ ବିଭିନ୍ନ ଜାତିର ଲୋକମାନେ ଏକା ପ୍ରକାରର ପର୍ବପର୍ବାଣୀ ପାଳନ କରନ୍ତି । ବିଭିନ୍ନ ଜାତିମାନଙ୍କ ଦ୍ୱାରା ଏକାପ୍ରକାରର ପର୍ବ ପାଳିତ ହେଉଥିଲେ ବି ତାହା ସେମାନଙ୍କୁ ସଂହତି ସୂତ୍ରରେ ଏକ ସମୁଦାୟ ଭାବରେ ଆବଦ୍ଧ କରିପାରେ ନାହିଁ । ସେଥିପାଇଁ କୌଣସି ବ୍ୟକ୍ତି କୌଣସି ସାମାଜିକ କାର୍ଯ୍ୟରେ ଯୋଗ ଦେବାରେ ତା ଭିତରେ ଯେଉଁ ଆବେଗ ସୃଷ୍ଟି ହୁଏ ସେହି ଆବେଗ ଜାତିର ଉର୍ଦ୍ଧ୍ୱରେ ଅନ୍ୟମାନଙ୍କ ସହିତ ଆଦାନ ପ୍ରଦାନରେ ପରିସ୍ଫୁଟ ହୁଏନାହିଁ । କେତେକ ସମ୍ମିଳିତ କାର୍ଯ୍ୟରେ କୌଣସି ବ୍ୟକ୍ତି ତା'ର ଆବେଗକୁ ଅନ୍ୟମାନଙ୍କ ସହ ସାମିଲ କରିବା ଫଳରେ ଏକ ସାମୂହିକ ସଫଳତାକୁ ନିଜର ସଫଳତା ଓ ବିଫଳତାକୁ ନିଜର ବିଫଳତା ବୋଲି ନେଇଥାଏ । ଏହାଦ୍ୱାରା ଜନଗଣଙ୍କ ଭିତରେ ଭାବଗତ ସମ୍ବନ୍ଧ କ୍ଷେତ୍ରରେ ପ୍ରତିବନ୍ଧକ ହୋଇଥାଏ । ଏହି ପ୍ରତିବନ୍ଧକ ଯୋଗୁଁ ହିନ୍ଦୁମାନେ ପରସ୍ପର ମଧ୍ୟରେ ସାମାଜିକ କାର୍ଯ୍ୟକଳାପ କରିପାରନ୍ତି ନାହିଁ । ଫଳରେ ସେମାନଙ୍କ ଭିତରେ ଏକ ସମ୍ମିଳିତ ଚେତନା ବା ସଂହତିପୂର୍ଣ୍ଣ ଜୀବନ ପ୍ରବାହ ଦେଖାଯାଏ ନାହିଁ । ଜାତିପ୍ରଥା ହିନ୍ଦୁମାନଙ୍କର ସମାଜଗଠନ କ୍ଷେତ୍ରରେ ପ୍ରତିବନ୍ଧକ ହୋଇଥାଏ ।

---

(୭)

# ଜାତି ଓ ଘୃଣାଭାବ

ହିନ୍ଦୁମାନେ ବହୁ ସମୟରେ ନିଜକୁ ଅନ୍ୟମାନଙ୍କଠାରୁ ପୃଥକ ବୋଲି ପରିଚିତ କରାଇ ନିଜର ବିରୋଧୀମାନଙ୍କୁ ସମାଜ ବିରୋଧୀ ବୋଲି ଆକ୍ଷେପ କରିଥାନ୍ତି । ଗୋଟିଏ ଦଳ ଅନ୍ୟ ଦଳର ଅସାମାଜିକ ମନୋଭାବ ସମ୍ପର୍କରେ କହିଥାଏ । କିନ୍ତୁ ସେମାନେ ଏହା ଭୁଲି ଯା'ନ୍ତି ଯେ ଏହି ଅସାମାଜିକ ଦୃଷ୍ଟିଭଙ୍ଗୀ ସେମାନଙ୍କ ଜାତିପ୍ରଥାରୁ ଉଦ୍ଭବ ଏକ ବିକୃତ ଅଭିବ୍ୟକ୍ତି । ଗୋଟିଏ ଜାତି ଅନ୍ୟ ଗୋଟିଏ ଜାତିକୁ ଘୃଣା କରିଥାଏ । ଗତ ଯୁଦ୍ଧରେ ଯେପରି ଜର୍ମାନର ଲୋକମାନେ ଇଂରେଜମାନଙ୍କ ବିରୁଦ୍ଧରେ ତୀବ୍ର ଘୃଣା ପୋଷଣ କରୁଥିଲେ ସେହିପରି ଭାରତରେ ଗୋଟିଏ ଜାତିର ଲୋକମାନେ ଅନ୍ୟ ଜାତି ପ୍ରତି ଘୃଣା ମନୋଭାବ ପୋଷଣ କରନ୍ତି । ହିନ୍ଦୁ ଧର୍ମଶାସ୍ତ୍ରରେ ଜାତିମାନଙ୍କର ବଂଶ ପରମ୍ପରା ସମ୍ବନ୍ଧରେ ବିବରଣୀ ଦେଖିବାକୁ ମିଳେ । ସେଥିରେ କେତେକ ଜାତିର ବଂଶ ପରମ୍ପରାକୁ ଉଚ୍ଚ ସ୍ଥାନ ଦିଆଯିବା ବେଳେ ଅନ୍ୟ ଜାତିକୁ ତୁଚ୍ଛ ସ୍ଥାନ ଦିଆଯାଇଛି । ଏହି ଶ୍ରେଣୀର ସାହିତ୍ୟ ମଧ୍ୟରେ 'ସତ୍ୟାଦ୍ରିଖଣ୍ଡ' ହେଉଛି ଏକ ଅତି ସମାଜ ବିରୋଧୀ ଲେଖା । ଏହି ଅସାମାଜିକ ଉଚ୍ଚ ନୀଚ ଦୃଷ୍ଟିଭଙ୍ଗୀ କେବଳ ଜାତି ଜାତି ଭିତରେ ସୀମିତ ନୁହେଁ । ଏପରିକି ଏହା ଆହୁରି ଗଭୀରକୁ ଯାଇ ଜାତିର ଉପଜାତିମାନଙ୍କ ମଧ୍ୟରେ ସମ୍ପର୍କକୁ ସମଭାବରେ ବିଷାକ୍ତ କରିଛି । ଆମ ପ୍ରଦେଶର ଗୋଲକ, ଦେବ୍‌ରୁଖ, କାରଦ, ପାଲେସ ଓ ଚିତ୍‌ପାବନ ବ୍ରାହ୍ମଣମାନେ ବ୍ରାହ୍ମଣ ଜାତିର ଉପବିଭାଜନ ବୋଲି ଦାବି କରିଥାନ୍ତି । ବ୍ରାହ୍ମଣମାନଙ୍କର ଅବ୍ରାହ୍ମଣମାନଙ୍କ ସହିତ ଯେପରି ତିକ୍ତ ସମ୍ପର୍କ ରହିଛି ଏହି ବ୍ରାହ୍ମଣ ଉପଜାତିମାନଙ୍କ ମଧ୍ୟରେ ସେହିପରି ଅତି ତିକ୍ତ ଓ ଶତ୍ରୁ ମନୋଭାବ ରହିଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଯେତେବେଳେ ଗୋଟିଏ ଦଳ କେବଳ ନିଜର ସ୍ୱାର୍ଥ ପ୍ରତି ସଚେତନ ହୁଏ ସେତେବେଳେ ସେହି ଦଳର ଅନ୍ୟମାନଙ୍କ ସହ ସମ୍ପର୍କ ତିକ୍ତ ହେବା ସ୍ୱାଭାବିକ ହୋଇପଡ଼େ । ଗୋଟିଏ ଦଳ ନିଜର ସ୍ୱାର୍ଥକୁ ମୁଖ୍ୟ ସ୍ଥାନ ଦେଇ ନିଜକୁ ଅନ୍ୟଠାରୁ ରୁଦ୍ଧ କରିବାଦ୍ୱାରା ଓ ଅନ୍ୟ ସହ କୌଣସି ସମ୍ବନ୍ଧ ସ୍ଥାପନ ନକରିବା ଫଳରେ ସମାଜ ବିରୋଧୀ ଭାବନା ଆସିଥାଏ । ଜାତିଗୁଡ଼ିକ ପୃଥକ୍ ରାଷ୍ଟ୍ର ପରି ନିଜ ଜାତିର ସ୍ୱାର୍ଥକୁ ରକ୍ଷା କରିବାକୁ ସର୍ବଦା ଗୁରୁତ୍ୱ ଦେଇଥାନ୍ତି ଓ ଅନ୍ୟଠାରୁ ନିଜକୁ ଅଲଗା ରଖିଥାନ୍ତି । ରାଷ୍ଟ୍ର ରାଷ୍ଟ୍ର ଭିତରେ ପାର୍ଥକ୍ୟ ପରି ଜାତି ଜାତି ମଧ୍ୟରେ ଏହି ଭିନ୍ନତା ଅତି

ସ୍ପଷ୍ଟ ଅଟେ । ବ୍ରାହ୍ମଣମାନଙ୍କର ମୁଖ୍ୟ ଚିନ୍ତା ହେଉଛି ଅବ୍ରାହ୍ମଣମାନଙ୍କଠାରୁ ନିଜ ଜାତିର ସ୍ୱାର୍ଥକୁ ରକ୍ଷାକରିବା; ସେହିପରି ଅବ୍ରାହ୍ମଣ ଜାତିମାନେ ନିଜ ନିଜ ଜାତିର ସ୍ୱାର୍ଥକୁ ରକ୍ଷା କରିବାରେ ସବୁଠାରୁ ଅଧିକ ଗୁରୁତ୍ୱ ଦେଇଥାନ୍ତି । ସୁତରାଂ ହିନ୍ଦୁମାନେ କେବଳ କେତେଗୁଡ଼ିଏ ଜାତିରେ ଯେ ବିଭକ୍ତ ତା ନୁହେଁ, ପ୍ରତ୍ୟେକ ଜାତି ନିଜର ସ୍ୱାର୍ଥକୁ ହିଁ ସର୍ବାଗ୍ରେ ଦେଖିଥାଏ ଓ ଜାତି ଜାତି ଭିତରେ ନିଜର ସ୍ୱାର୍ଥ ଓ ଅସ୍ତିତ୍ୱକୁ ନେଇ ବିଦ୍ୱେଷ ପୂର୍ଣ୍ଣ ବାତାବରଣ ସର୍ବଦା ରହିଥାଏ । ଜାତିପ୍ରଥାର ଅନ୍ୟ ଏକ ନିନ୍ଦନୀୟ ଲକ୍ଷଣ ମଧ୍ୟ ରହିଛି । ବର୍ତ୍ତମାନର ଇଂରେଜମାନଙ୍କର ପୂର୍ବ ପୁରୁଷମାନେ ରୋଜେଜ ଏବଂ କ୍ରୋମ ୱେଲିଏନ୍ ଯୁଦ୍ଧରେ ପରସ୍ପର ମଧ୍ୟରେ ସଂଘର୍ଷରେ ବ୍ୟାପୃତ ରହିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ଯୁଦ୍ଧରତ ପୂର୍ବପୁରୁଷଙ୍କର ବଂଶଧରମାନଙ୍କ ମଧ୍ୟରେ କୌଣସି ଶତ୍ରୁତାର ଭାବ ରହି ନଥିଲା । ପୂର୍ବ ପୁରୁଷଙ୍କର ଶତ୍ରୁ ଭାବନାକୁ ସେମାନେ ଭୁଲି ଯାଇଥିଲେ । କିନ୍ତୁ ବର୍ତ୍ତମାନର ଅବ୍ରାହ୍ମଣମାନେ ଅତୀତରେ ନିଜର ପୂର୍ବପୁରୁଷ ଶିବାଜୀଙ୍କୁ ବ୍ରାହ୍ମଣମାନେ ଅପମାନ ଦେଇଥିବା ହେତୁ ବର୍ତ୍ତମାନର ବ୍ରାହ୍ମଣମାନଙ୍କୁ କ୍ଷମା କରିପାରନ୍ତି ନାହିଁ । ବହୁ ଅତୀତରେ ବ୍ରାହ୍ମଣମାନେ କାୟସ୍ଥମାନଙ୍କୁ ଅସମ୍ମାନ କରିଥିବା ଯୋଗୁଁ ବର୍ତ୍ତମାନର କାୟସ୍ଥମାନେ ବର୍ତ୍ତମାନର ବ୍ରାହ୍ମଣମାନଙ୍କୁ କ୍ଷମା କରିପାରନ୍ତି ନାହିଁ । ପରସ୍ପର ଭିତରେ ଏପରି ବିଦ୍ୱେଷ ଭାବ ରହିବାର କାରଣ କ'ଣ ହୋଇପାରେ ? ଏହାର କାରଣ ଜାତିପ୍ରଥା ଓ ଜାତିଆଣ ମାନସିକତା । ଅତୀତର ବିଦ୍ୱେଷକୁ ଏପର୍ଯ୍ୟନ୍ତ ବି ଭୁଲିବାକୁ ଦେଇନାହିଁ ଓ ସାମାଜିକ ସଂହତି କ୍ଷେତ୍ରରେ ପ୍ରତିବନ୍ଧକ ହୋଇ ଛିଡ଼ା ହୋଇଛି ।

## (୮)

## ଆଦିବାସୀ ଓ ଜାତିଭେଦ

ଭାରତରେ ବାସ କରୁଥିବା ଜନଜାତି ବା ଆଦିବାସୀମାନଙ୍କୁ ପ୍ରଭାବିତ କରୁଥିବା କ୍ଷେତ୍ରରୁ ପୃଥକ ରଖିବା ନେଇ ସଂପ୍ରତି ଆଲୋଚନା ଭିତରୁ ସେମାନଙ୍କର ସାମାଜିକ ସ୍ଥିତି ପ୍ରତି ଆମର ଦୃଷ୍ଟି ଆକର୍ଷିତ ହୋଇଛି । ଏକ ପରିସଂଖ୍ୟାନରୁ ସେମାନଙ୍କର ସଂଖ୍ୟା ଏକ କୋଟି ତିରିଶ ଲକ୍ଷ ବୋଲି ଜଣାଯାଏ । ନୂଆ ସମ୍ବିଧାନର ପରିସରରୁ ସେମାନଙ୍କୁ ପୃଥକ୍ ରଖିବା ଠିକ୍ ହେବ କି ନାହିଁ ଏହି ପ୍ରଶ୍ନକୁ ବାଦ୍ ଦେଲାପରେ ଏହା ସ୍ୱୀକାର କରିବାକୁ ହେବ ଯେ ସେମାନେ ଅତ୍ୟନ୍ତ ଅସଭ୍ୟ ଓ ଆଦିମ ଅବସ୍ଥାରେ ଏ ପର୍ଯ୍ୟନ୍ତ ବି ରହିଛନ୍ତି ଯେଉଁଠାରେ ହଜାର ହଜାର ବର୍ଷର ପ୍ରାଚୀନ ସଭ୍ୟତାକୁ ନେଇ ଗର୍ବ କରାଯାଉଛି ।

ସେମାନେ ଯେ କେବଳ ସଭ୍ୟ ହୋଇନାହାନ୍ତି ତାହା ନୁହଁ, ସେମାନଙ୍କ ଭିତରୁ କେତେକ ଏପରି କାର୍ଯ୍ୟକଳାପରେ ଲିପ୍ତ ରହିଛନ୍ତି ଯଦ୍ୱାରା ସେମାନଙ୍କୁ ଅପରାଧୀ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଉଛି । ସଭ୍ୟ ଜାତିମାନଙ୍କ ଭିତରେ ତେର ନିୟୁତ ଲୋକ ଏପରି ଅସଭ୍ୟ ଓ ବଂଶାନୁକ୍ରମେ ଅପରାଧୀ ଭାବରେ କିପରି ରହିଛନ୍ତି ହିନ୍ଦୁମାନେ ଏଥିପାଇଁ କୌଣସି ଲଜ୍ଜା ଅନୁଭବ କରନ୍ତି ନାହିଁ । ଏପରି ଘଟଣା ସମ୍ଭବତଃ ଅନ୍ୟ କେଉଁଠାରେ ଦେଖିବାକୁ ମିଳିବ ନାହିଁ । ଏହି ଲଜ୍ଜାକର ଘଟଣାର କାରଣ କ'ଣ ହୋଇପାରେ ? ସେହି ଆଦିମ ଜନଜାତିମାନଙ୍କୁ ସଭ୍ୟ କରାଇ ସମ୍ମାନ ଜନକ ଭାବରେ ଜୀବିକା ନିର୍ବାହ କରିବା ପାଇଁ କାହିଁକି ଉତ୍ସାହିତ କରାଯାଇ ନାହିଁ ? ହିନ୍ଦୁମାନେ ସମ୍ଭବତଃ ସେମାନଙ୍କର ଏହି ଆଦିମ ଅବସ୍ଥା ପାଇଁ ସେମାନଙ୍କର ବୌଦ୍ଧିକ ଜଡ଼ତାକୁ ଦାୟୀ କରିବେ । ସେମାନେ ଏହା ସ୍ୱୀକାର କରିବେ ନାହିଁ ଯେ ଜନଜାତିର ଲୋକମାନେ ଏହି ଅବସ୍ଥାରେ ରହିଛନ୍ତି କାରଣ ସେହି ଲୋକମାନଙ୍କୁ ସଭ୍ୟ କରିବା ପାଇଁ, ଆବଶ୍ୟକ ବେଳେ ଡାକ୍ତରୀ ଚିକିତ୍ସା ଯୋଗାଇବା ପାଇଁ, ସେମାନଙ୍କ ଭିତରେ ସଂସ୍କାର ଆଣିବା ପାଇଁ ଓ ସେମାନଙ୍କୁ ଉନ୍ନତ ନାଗରିକ କରିବା ପାଇଁ କୌଣସି ଉଦ୍ୟମ ହୋଇନାହିଁ । ଖ୍ରୀଷ୍ଟିୟାନ ମିସନାରୀମାନେ ଏହି ଜନଜାତି ଲୋକଙ୍କ ପାଇଁ ଯାହା କରୁଛନ୍ତି କୌଣସି ହିନ୍ଦୁ ଚାହିଁଲେ ଏହା କରିପାରିଥାନ୍ତେ କି ? ମୋ ମତରେ ସେମାନେ ଏହା କରିପାରି ନଥାନ୍ତେ । ଜନଜାତିର ଲୋକମାନଙ୍କୁ ସଭ୍ୟ କରିବା ଅର୍ଥ ସେମାନଙ୍କୁ ନିଜର ବୋଲି ଭାବିବା, ସେମାନଙ୍କ ସହ ରହିବା, ସେମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରଖିବା ଓ ମୋଟାମୋଟି ଭାବରେ ସେମାନଙ୍କୁ ଭଲପାଇବା । ଏହା କରିବା ଜଣେ ହିନ୍ଦୁଙ୍କ ପାଖରେ କିପରି ସମ୍ଭବ ? ସେମାନେ ଜୀବନସାରା କେବଳ ନିଜ ଜାତିର ସୁରକ୍ଷା ଓ ସ୍ୱାର୍ଥକୁ ଦେଖି ଆସିଛନ୍ତି । ଜାତି ହେଉଛି ସେମାନଙ୍କ ପାଇଁ ସବୁକିଛି ଓ ଏହାକୁ ରକ୍ଷାକରିବା ସେମାନଙ୍କର କର୍ତ୍ତବ୍ୟ । ଜଣେ ହିନ୍ଦୁ ଜନଜାତିମାନଙ୍କ ସହ ସମ୍ବନ୍ଧ ପ୍ରତିଷ୍ଠାକରି ନିଜର ଜାତିକୁ ହରାଇବା ଉଚିତ ମନେକରିବ ନାହିଁ । ବୈଦିକ ଯୁଗରେ ଯେଉଁମାନଙ୍କୁ ଅନାର୍ଯ୍ୟ କୁହାଯାଇ ଆସିଛି ସେମାନଙ୍କ ସହ ସମ୍ବନ୍ଧ ସ୍ଥାପନ କରି ନିଜର ଜାତି ରୂପକ ବହୁମୂଲ୍ୟ ସମ୍ପଦକୁ ସେ କିପରି ଅପବିତ୍ର କରିବେ ? ହିନ୍ଦୁମାନଙ୍କୁ ଦଳିତ ଜନଗଣଙ୍କ ପ୍ରତି ସେମାନଙ୍କର କର୍ତ୍ତବ୍ୟ ସମ୍ପର୍କରେ ଯେ ସଚେତନ କରାଯାଇପାରିବ ନାହିଁ ତା ନୁହଁ; ସେମାନଙ୍କ ଭିତରେ ଏପରି କର୍ତ୍ତବ୍ୟବୋଧ ଆଣିବା ସମ୍ଭବ ନୁହେଁ ଯଦ୍ୱାରା ସେମାନେ ନିଜର ଜାତିକୁ ହରାଇ ଅନ୍ୟର ସେବା କରିପାରିବେ । ସାମାଜିକ କର୍ତ୍ତବ୍ୟ ଅପେକ୍ଷା ତାଙ୍କ ପାଇଁ ଜାତିର ସୁରକ୍ଷା ଅଧିକ ମହତ୍ତର ମନେହୁଏ । ଏହି କାରଣ

ଯୋଗୁଁ ହିନ୍ଦୁମାନେ ଏକ ସଭ୍ୟତାର ଅଧିକାରୀ ହୋଇ ମଧ୍ୟ ଜନଜାତିର ଲୋକମାନଙ୍କର ଉନ୍ନତି ପାଇଁ କୌଣସି ପଦକ୍ଷେପ ନେଇନାହାନ୍ତି । ଏପରିକି ସେମାନେ ଏହିଭଳି ଆଦିମ ଅବସ୍ଥାରେ ରହିବାରେ ହିନ୍ଦୁମାନଙ୍କ ଭିତରେ କୌଣସି ଅନୁଶୋଚନା ବା ଅନୁତାପ ନାହିଁ । ଏହି ଜନଜାତିର ଲୋକମାନେ ସେମାନଙ୍କ ପାଇଁ ଯେ ବିପଦର କାରଣ ହେବେ ଏହା ମଧ୍ୟ ହିନ୍ଦୁମାନେ ଅନୁଭବ କରିନାହାନ୍ତି । ସେମାନେ ଯଦି ଏହିପରି ଆଦିମ ଅବସ୍ଥାରେ ରହିବେ ତେବେ ସେମାନଙ୍କ ତରଫରୁ ହିନ୍ଦୁମାନଙ୍କ ପ୍ରତି କୌଣସି ବିପଦର କାରଣ ନାହିଁ । କିନ୍ତୁ ଯଦି ଅଣହିନ୍ଦୁମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ସେମାନେ ଅନ୍ୟ କୌଣସି ଧର୍ମଗ୍ରହଣ କରିବେ ତେବେ ହିନ୍ଦୁମାନଙ୍କର ବିରୋଧୀ ସଂଖ୍ୟା ବହୁତ ବଢ଼ିଯିବ । ଏହା ହେଲେ ହିନ୍ଦୁ ନିଜକୁ ଓ ନିଜର ଜାତିପ୍ରଥାକୁ ଦାୟୀ କରିବାକୁ ବାଧହେବ ।

## (୯)

ହିନ୍ଦୁମାନେ ଏପରିକି ମାନବିକତା କାରଣରୁ ମଧ୍ୟ ଜନଜାତିର ଲୋକମାନଙ୍କୁ ସଭ୍ୟ ସ୍ତରକୁ ଆଣିବାକୁ ତ ପ୍ରୟାସ କରି ନାହାନ୍ତି ବରଂ ଉଚ୍ଚ ଜାତିର ହିନ୍ଦୁମାନେ ନିଜ ଧର୍ମର ନିମ୍ନ ଜାତିର ଲୋକମାନଙ୍କୁ ସେମାନଙ୍କର ସାଂସ୍କୃତିକ ସ୍ତରକୁ ଆସିବା ପାଇଁ ଜାଣିଶୁଣି ପ୍ରତିବନ୍ଧକ ହୋଇଛନ୍ତି । ମୁଁ ଏଠାରେ ସୋନାର ଓ ପଠାରେ ପ୍ରଭୁ ଜାତି ଦୁଇଟିର ଉଦାହରଣ ଦେବାକୁ ଉଚିତ ମନେକରୁଛି । ଏହି ଉଭୟ ଜାତିର ଲୋକମାନେ ଅନ୍ୟମାନଙ୍କ ପରି ନିଜର ସାମାଜିକ ମର୍ଯ୍ୟାଦାକୁ ବଢ଼ାଇବା ପାଇଁ ବ୍ରାହ୍ମଣମାନଙ୍କର କେତେକ ଆଚାର ଓ ଅଭ୍ୟାସକୁ ଅନୁକରଣ କରିଥିଲେ ।

ସୋନାରମାନେ ନିଜକୁ ଦୈବ୍ୟଦାନ୍ୟ ବ୍ରାହ୍ମଣ ଭାବରେ ଅଭିହିତ କରିବା ସହ କଚ୍ଛା ମାରି ଧୋତି ପିନ୍ଧିଥିଲେ ଏବଂ ଅନ୍ୟକୁ ସାକ୍ଷାତ୍ ସମୟରେ ସମ୍ମାନ ଜଣାଇବା ପାଇଁ ନମସ୍କାର କରୁଥିଲେ । କଚ୍ଛା ମାରି ଧୋତି ପିନ୍ଧିବା ଓ ନମସ୍କାର କରିବା ସେତେବେଳେ ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ବ୍ରାହ୍ମଣମାନଙ୍କ ଏହି କାର୍ଯ୍ୟକୁ ସୋନାରମାନେ ଅନୁକରଣ କରିବା ବ୍ରାହ୍ମଣମାନେ ଚାହିଁଲେ ନାହିଁ । ପେଶୱାର ଶାସନାଧିକାରୀଙ୍କର ଛତ୍ରଛାୟା ତଳେ ଥିବା ବ୍ରାହ୍ମଣମାନେ ସୋନାରମାନଙ୍କର ଏହି ଆଚରଣକୁ ପ୍ରତିବାଦ କରିଥିଲେ । ଏପରିକି ଇଷ୍ଟଇଣ୍ଡିଆ କମ୍ପାନୀର ବମ୍ବେରେ ଥିବା କାଉନ୍‌ସିଲ ସଭାପତିଙ୍କୁ ଅଭିଯୋଗ କରି ସୋନାରମାନଙ୍କର ଏହି କାର୍ଯ୍ୟକୁ ବନ୍ଦ କରିବା ପାଇଁ ନିଷେଧାଦେଶ ଜାରି କରାଇଥିଲେ । ଅର୍ଥାତ୍ ବମ୍ବେରେ ରହୁଥିବା

ସୋନାରମାନେ କଚ୍ଛାମାରି ଧୋତି ପିନ୍ଧିବା ଓ ନମସ୍କାର କରିବାକୁ ବାରଣ କରାଗଲା । ଗୋଟିଏ ସମୟରେ ପଠାରେ ପ୍ରଭୁ ଜାତିର ଲୋକମାନଙ୍କ ମଧ୍ୟରେ ବିଧବା ବିବାହ ପ୍ରଥା ଚଳି ଆସୁଥିଲା । ସେହି ଜାତିର କେତେକ ଲୋକ ସେମାନଙ୍କ ଜାତିରେ ବିଧବା ବିବାହ ପ୍ରଥା ପ୍ରଚଳନ ଥିବାରୁ ସେମାନେ ସାମାଜିକ ସ୍ତରରେ ନ୍ୟୁନ ବୋଲି ଅନୁଭବ କଲେ । କାରଣ ସେତେବେଳେ ବ୍ରାହ୍ମଣମାନଙ୍କ ଭିତରେ ଏହି ପ୍ରଥା ନଥିଲା । ଫଳରେ ପଠାରେ ପ୍ରଭୁ ଜାତିର କେତେକ ଲୋକ ନିଜ ଜାତିର ସାମାଜିକ ମର୍ଯ୍ୟାଦାକୁ ବୃଦ୍ଧି କରିବା ପାଇଁ ତାଙ୍କ ଜାତିରେ ଥିବା ବିଧବା ବିବାହ ପ୍ରଥାକୁ ବନ୍ଦ କରିବାକୁ ଚାହିଁଲେ । ଏହି ଘଟଣାକୁ କେନ୍ଦ୍ରକରି ତାଙ୍କ ଜାତି ଦୁଇଟି ଗୋଷ୍ଠୀରେ ବିଭାଜିତ ହୋଇଗଲା । ଗୋଟିଏ ଗୋଷ୍ଠୀ ବିଧବା ବିବାହକୁ ସମର୍ଥନ କରିଥିବା ବେଳେ ଅନ୍ୟ ଗୋଟିଏ ଗୋଷ୍ଠୀ ଏହାକୁ ବିରୋଧ କଲେ । ପେଶୱାର ଶାସକ ବିଧବା ବିବାହର ସପକ୍ଷରେ ଥିବା ମତକୁ ଗ୍ରହଣ କରିବା ସହିତ ବ୍ରାହ୍ମଣମାନଙ୍କର ପ୍ରଥାକୁ ଗ୍ରହଣ ନକରିବା ପାଇଁ ପଠାରେ ପ୍ରଭୁର ଲୋକମାନଙ୍କ ଉପରେ ନିଷେଧାଜ୍ଞା ଜାରି କଲେ । ହିନ୍ଦୁମାନେ ମୁସଲମାନମାନଙ୍କୁ ଅସି ମୁନରେ ବଳ ପ୍ରୟୋଗ କରି ଧର୍ମ ପ୍ରଚାର କରିଥିବାରୁ ସମାଲୋଚନା କରିଥାନ୍ତି । ସେମାନେ ଖ୍ରୀଷ୍ଟିୟାନମାନଙ୍କର କେତେକ ପ୍ରଥାକୁ ମଧ୍ୟ ଉପହାସ କରନ୍ତି । ସୁତରାଂ ଆମ ଦୃଷ୍ଟିରେ କେଉଁମାନେ ସମ୍ମାନର ଅଧିକାରୀ-ମୁସଲମାନ ଓ ଖ୍ରୀଷ୍ଟିୟାନ ଯେଉଁମାନେ ଦଳିତ ହିନ୍ଦୁମାନଙ୍କର ଉଦ୍ଧାର ପାଇଁ ସେମାନଙ୍କୁ ନିଜ ନିଜ ଧର୍ମରେ ଦୀକ୍ଷିତ କରିବା ପାଇଁ ବାଧ କରିଛନ୍ତି, କିମ୍ବା ଯେଉଁମାନେ ସେମାନଙ୍କୁ ଯୁଗ ଯୁଗ ଧରି ଅନ୍ଧକାର ଭିତରେ ରହିବାକୁ ବାଧ କରିଛନ୍ତି ? ଏପରିକି ଯେଉଁମାନେ ଉଚ୍ଚ ଜାତିର ବୌଦ୍ଧିକ ଓ ସାମାଜିକ ସ୍ତରକୁ ଆସିବା ପାଇଁ ପ୍ରୟାସ କରିଛନ୍ତି ସେମାନଙ୍କୁ ଉଚ୍ଚ ଜାତିର ଲୋକମାନେ ସୁଯୋଗ ଦେଇନାହାନ୍ତି । ଫଳରେ ମୋ ମତରେ ଯଦି ମୁସଲମାନମାନେ ନିଷ୍ଠୁର ହୋଇଛନ୍ତି ତେବେ ହିନ୍ଦୁମାନେ ଅତ୍ୟନ୍ତ ନୀଚ କାର୍ଯ୍ୟ କରିଛନ୍ତି । ନୀଚତା ନିଷ୍ଠୁରତାଠାରୁ ଯେ ଅଧିକ ଖରାପ ଏହା କହିବାକୁ ହେବ ।

## (୧୦)

## ଧର୍ମ ପରିବର୍ତ୍ତନ ଓ ଜାତି

ହିନ୍ଦୁଧର୍ମ ଏକ ପ୍ରଚାରଧର୍ମୀ ଧର୍ମ କି ନୁହଁ ଏକ ବିବାଦମାନ ପ୍ରଶ୍ନ ଅଟେ । କେତେକଙ୍କ ମତରେ ଏହା କେବେ ବି ଏକ ପ୍ରଚାରଧର୍ମୀ ଧର୍ମ ନୁହେଁ । ଅନ୍ୟମାନଙ୍କ ମତରେ ଏହି ଧର୍ମ ପ୍ରଚାରଧର୍ମୀ । ଅତୀତରେ ଏହା ପ୍ରଚାରଧର୍ମୀ ଥିଲା, ନହେଲେ ସାରା ଭାରତରେ ଏହା ବ୍ୟାପକ ହୋଇ ନଥାନ୍ତା । କିନ୍ତୁ ସଂପ୍ରତି ଏହି ଧର୍ମ ଯେ

ପ୍ରଚାରଧର୍ମୀ ନୁହଁ ଏହି ଘଟଣାକୁ ଗ୍ରହଣ କରିବାକୁ ହେବ । ତେଣୁ ଏହା ପ୍ରଶ୍ନ ନୁହେଁ ଯେ ହିନ୍ଦୁ ଧର୍ମ ପ୍ରଚାରଧର୍ମୀ କି ନୁହଁ । କିନ୍ତୁ ବାସ୍ତବ ପ୍ରଶ୍ନ ହେଉଛି ହିନ୍ଦୁଧର୍ମ କାହିଁକି ଏକ ପ୍ରଚାରଧର୍ମୀ ଧର୍ମ ଭାବରେ ବନ୍ଦ ହୋଇଗଲା । ମୋ ମତରେ ଯେତେବେଳେ ହିନ୍ଦୁମାନଙ୍କ ମଧ୍ୟରେ ଜାତିପ୍ରଥାର ବିକାଶ ହେଲା ସେତେବେଳେ ହିନ୍ଦୁଧର୍ମ ଆଉ ପ୍ରଚାରଧର୍ମୀ ହୋଇ ରହିଲା ନାହିଁ । ଜାତି ଧର୍ମ ପରିବର୍ତ୍ତନର ବିରୋଧୀ ବା ଅନ୍ୟ ଭାବରେ କହିଲେ ଧର୍ମ ପରିବର୍ତ୍ତନ ସହ ଏହା ସମତାଳ ନୁହେଁ । ଧର୍ମ ପରିବର୍ତ୍ତନ କ୍ଷେତ୍ରରେ କେତେକ ବିଶ୍ୱାସ ଓ ଭାବନାକୁ ଶିକ୍ଷାଦେବା ସମସ୍ୟା ନୁହେଁ, ସମସ୍ୟା ହେଉଛି ଧର୍ମ ପରିବର୍ତ୍ତନ ପରେ ପରିବର୍ତ୍ତନକାରୀଙ୍କୁ ସାମାଜିକ ଜୀବନ ଧାରାରେ ମିଶାଇବା । ଅର୍ଥାତ୍ ଯେଉଁମାନେ ଧର୍ମ ପରିବର୍ତ୍ତନ କଲେ ସେମାନେ କେଉଁ ଜାତିରେ ଅନ୍ତର୍ଭୁକ୍ତ ହେବେ ତାହାହିଁ ସାମାଜିକ ଜୀବନଧାରାରେ ସବୁଠାରୁ ବଡ଼ ସମସ୍ୟା । ଅନ୍ୟ ଧର୍ମରେ ଥିବା କୌଣସି ବ୍ୟକ୍ତି ହିନ୍ଦୁ ଧର୍ମକୁ ପରିବର୍ତ୍ତିତ ହେଲେ ସେ କେଉଁ ଜାତିରେ ସଂପୃକ୍ତ ହେବେ ତାହା ହିନ୍ଦୁମାନଙ୍କ ପାଇଁ ଜଟିଳ ପ୍ରଶ୍ନ । କୌଣସି କ୍ଲବରେ ସଭ୍ୟହେବା ଯେପରି ସହଜ କୌଣସି ଜାତିରେ ଅନ୍ତର୍ଭୁକ୍ତ ହେବା ସେପରି ସହଜ ବ୍ୟାପାର ନୁହେଁ । କୌଣସି ଜାତି ସେହି ଜାତିରେ ଜନ୍ମ ହୋଇଥିବା ବ୍ୟକ୍ତିମାନଙ୍କ ଭିତରେ ସୀମିତ । ଜାତିଗୁଡ଼ିକ ହେଉଛି ସ୍ୱୟଂଶାସିତ, ଫଳରେ ଧର୍ମ ପରିବର୍ତ୍ତନ କରି ହିନ୍ଦୁଧର୍ମ ଗ୍ରହଣ କରିଥିବା କୌଣସି ବ୍ୟକ୍ତିଙ୍କୁ କୌଣସି ଜାତିରେ ଅନ୍ତର୍ଭୁକ୍ତ କରିବା ପାଇଁ କାହାକୁ ବାଧ୍ୟ କରାଯାଇ ପାରିବ ନାହିଁ । ହିନ୍ଦୁଧର୍ମ ହେଉଛି ବିଭିନ୍ନ ଜାତିର ସମଷ୍ଟି ଓ ପ୍ରତ୍ୟେକ ଜାତି ଏକ ରୁଦ୍ଧ ଗୋଷ୍ଠୀ ଯେଉଁଥିରେ କି କୌଣସି ବାହାରର ବ୍ୟକ୍ତି ସଂପୃକ୍ତ ହୋଇପାରିବେ ନାହିଁ । ଏହି କାରଣ ଯୋଗୁଁ ହିନ୍ଦୁମାନଙ୍କର ବିସ୍ତାର ସୀମିତ ଓ ଅନ୍ୟ କୌଣସି ଧର୍ମରୁ ଧର୍ମ ପରିବର୍ତ୍ତନ କରି ଏଥିରେ ସାମିଲ ହେବାର ଦ୍ୱାର ସବୁବେଳ ପାଇଁ ବନ୍ଦ । ଯେଉଁ ପର୍ଯ୍ୟନ୍ତ ଜାତି ରହିଥିବ ହିନ୍ଦୁଧର୍ମ କେବେହେଲେ ପ୍ରସାର ଲାଭ କରିପାରିବ ନାହିଁ ଏବଂ ହିନ୍ଦୁଧର୍ମକୁ ବାହାରୁ କୌଣସି ବ୍ୟକ୍ତି ସଂସ୍କାର ଦ୍ୱାରା ଧର୍ମ ପରିବର୍ତ୍ତନ କରି ଆସିବା ସମ୍ଭବ ନୁହେଁ ।

---

(୧୧)

## ଶୁଦ୍ଧି ଓ ସଂଗଠନ

ଯେଉଁ କାରଣ ଯୋଗୁଁ ଶୁଦ୍ଧିଦ୍ୱାରା ହିନ୍ଦୁଧର୍ମକୁ ଆସିବା ସମ୍ଭବ ନୁହେଁ, ସେହି କାରଣ ଯୋଗୁଁ ହିନ୍ଦୁମାନଙ୍କ ମଧ୍ୟରେ ସଂଗଠନ କରିବା ମଧ୍ୟ ସମ୍ଭବ ନୁହେଁ। ହିନ୍ଦୁମାନଙ୍କର ସଂଗଠନ କରିବା ଅର୍ଥ ସେମାନଙ୍କ ମଧ୍ୟରେ ଭୟ ଓ କାତରତା ଦୂର କରିବା । ଏହି ଭୟ ଯୋଗୁଁ ସେମାନେ ମୁସଲମାନ ଓ ଶିଖ୍‌ମାନଙ୍କଠାରୁ ନିଜକୁ ଦୂରେଇ ରଖିବା ସହ ନିଜର ସ୍ଥିତିକୁ ରକ୍ଷାକରିବା ପାଇଁ ଚତୁରତାର ସହ ବିଶ୍ୱାସଘାତକତା ପରି କାର୍ଯ୍ୟ କରିଥାନ୍ତି । ସୁତରାଂ ପ୍ରଶ୍ନ ହେଉଛି ଶିଖ୍ ଓ ମୁସଲମାନମାନେ ସେମାନଙ୍କର ସାହସୀଭାବ ଓ ଭୟଶୂନ୍ୟତା ପାଇଁ କେଉଁଠାରୁ ଶକ୍ତି ପାଆନ୍ତି ? ମୋ ମତରେ ସେମାନଙ୍କର ଶାରୀରିକ ସାମର୍ଥ୍ୟ, ପୁଷ୍ଟିକର ଖାଦ୍ୟ କିମ୍ବା ବ୍ୟାୟାମ ଯୋଗୁଁ ଏହା ସମ୍ଭବ ନୁହେଁ। ବରଂ ପ୍ରତ୍ୟେକ ଶିଖ୍ ଏହା ଭାବନ୍ତି ଯେ ସେ ବିପଦରେ ପଡ଼ିଥିବା ବେଳେ ଅନ୍ୟ ଶିଖ୍‌ମାନେ ତା'ର ସହାୟତାରେ ଆସିପାରିବେ । ସେହିପରି କୌଣସି ମୁସଲମାନଙ୍କୁ ଆକ୍ରମଣ କଲେ ଅନ୍ୟ ମୁସଲମାନମାନେ ଆସି ତାକୁ ରକ୍ଷା କରିପାରିବେ । ସେମାନଙ୍କର ଏହି ଭାବନା ଯୋଗୁଁ ସେମାନେ ସାହସୀ ଓ ଭୟଶୂନ୍ୟ ହୋଇ ପାରିଛନ୍ତି । ଜଣେ ହିନ୍ଦୁ ଏହିପରି କୌଣସି ବଳ ପାଇନାହିଁ । ତା'ର ଆବଶ୍ୟକ ବେଳେ ଅନ୍ୟମାନେ ତା'ର ଉପକାରରେ ଆସିପାରିବେ ଏହା ସେ କେବେ ବିଶ୍ୱାସ କରିପାରେ ନାହିଁ । ସେ ଅନେକ ସମୟରେ ନିଜକୁ ଅସହାୟ ମନେକରେ ଓ ଏହାକୁ ନିଜର ଭାଗ୍ୟବୋଲି ଗ୍ରହଣ କରିବାଦ୍ୱାରା ସେ ଭୟାଳୁ ହୋଇଥାଏ । କୌଣସି ଦ୍ୱନ୍ଦ୍ୱ ସମୟରେ ସେ ପ୍ରାଣ ଭୟରେ ପଳାଇଥାଏ କିମ୍ବା ନିଜକୁ ସମର୍ପଣ କରିଥାଏ । ଜଣେ ଶିଖ୍ ବା ଜଣେ ମୁସଲମାନ ନିର୍ଭୟରେ ଅନ୍ୟ ସହ ମୁକାବିଲା କରିପାରେ କାରଣ ସେ ବିଶ୍ୱାସ କରେ ଯେ ସେ ଏକୁଟିଆ ନୁହେଁ ଓ ତା'ର ପଛରେ ଅନ୍ୟମାନେ ମଧ୍ୟ ରହିଛନ୍ତି । ସେ ବର୍ତ୍ତମାନ ଏକା ଥାଇପାରେ କିନ୍ତୁ ତାଙ୍କୁ ସହଯୋଗ ଦେବାକୁ ଅନ୍ୟମାନେ ମଧ୍ୟ ରହିଛନ୍ତି । ଏହି ବିଶ୍ୱାସ ଜଣଙ୍କ ଭିତରେ ରହିଲେ ତା'ର ଆତ୍ମବିଶ୍ୱାସ ଦୃଢ଼ ହୋଇଥାଏ । ଅଥଚ ଏହି ବିଶ୍ୱାସର ଅଭାବ ହେଲେ ଜଣେ ଅସହାୟ ବୋଧ କରିଥାଏ । ଯଦି ଏହି ପ୍ରଶ୍ନ

ଉପରେ ଗୁରୁତ୍ୱର ସହ ବିଚାର କରାଯାଏ ଓ ପ୍ରଶ୍ନ କରାଯାଏ ଜଣେ ଶିଖ୍ ବା ଜଣେ ମୁସଲମାନ କାହିଁକି ଏପରି ଆତ୍ମବିଶ୍ୱାସ ରଖିଲାବେଳେ ଜଣେ ହିନ୍ଦୁ ନିଜକୁ ଅସହାୟ ମନେକରେ ? ଏହାର କାରଣ ହେଉଛି ସେମାନଙ୍କ ସଂଘବଦ୍ଧ ଜୀବନଧାରାରେ ରହିଥିବା ପାର୍ଥକ୍ୟ । ଶିଖ୍ ଓ ମୁସଲମାନମାନଙ୍କ ଭିତରେ ଥିବା ସାମାଜିକ ବନ୍ଧନ ସେମାନଙ୍କ ଭିତରେ ଭ୍ରାତୃତ୍ୱ ଭାବ ସୃଷ୍ଟି କରିଥାଏ । କିନ୍ତୁ ହିନ୍ଦୁମାନଙ୍କର ସଂଘବଦ୍ଧ ଜୀବନଧାରାରେ ଏହି ସାମାଜିକ ବନ୍ଧନ ନଥାଏ । ଶିଖ୍ ଓ ମୁସଲମାନମାନଙ୍କ ଭିତରେ ସାମାଜିକ ଏକତ୍ୱବୋଧ ଥିବାରୁ ସେମାନେ ପରସ୍ପରକୁ ନିଜର ଭାଇ ଭାଇ ବୋଲି ଭାବିଥାନ୍ତି କିନ୍ତୁ ହିନ୍ଦୁମାନଙ୍କ ମଧ୍ୟରେ ଏହି ସାମାଜିକ ବନ୍ଧନ ନଥିବାରୁ ଜଣେ ହିନ୍ଦୁ ଅନ୍ୟ ଜଣକୁ ନିଜର ଭାଇ ବୋଲି ଭାବିପାରେ ନାହିଁ । ଜଣେ ଶିଖ୍ ବା ଜଣେ ଖାଲସା ନିଜ ପଛରେ ଲକ୍ଷାଧିକ ଲୋକଙ୍କର ସମର୍ଥନ ରହିଛି ଭାବି ନିଜକୁ ଶକ୍ତିଶାଳୀ ଅନୁଭବ କରିଥାଏ । ଏହି ପାର୍ଥକ୍ୟ କେବଳ ଜାତିପ୍ରଥା ଯୋଗୁଁ ହୋଇଥାଏ । ଯେଉଁ ପର୍ଯ୍ୟନ୍ତ ଜାତିପ୍ରଥା ରହିଥିବ ସେ ପର୍ଯ୍ୟନ୍ତ କୌଣସି ସଂଗଠନ ହୋଇପାରିବ ନାହିଁ । ସଂଗଠନ ଅଭାବରେ ହିନ୍ଦୁମାନେ ଦୁର୍ବଳ ଓ ଭୟାଳୁ ହୋଇ ରହିବେ । ହିନ୍ଦୁମାନେ ନିଜକୁ ସହନଶୀଳ ବୋଲି ଦାବି କରିଥାନ୍ତି । ମୋ ମତରେ ଏହା ଠିକ୍ ନୁହେଁ । ଅନେକ କ୍ଷେତ୍ରରେ ସେମାନେ ବେଶ୍ ଅସହିଷ୍ଣୁ ହୋଇଛନ୍ତି । ଯେଉଁ ସମୟରେ ସେମାନେ ଉଦାରତା ଦେଖାଇଛନ୍ତି ତାହା କେବଳ ସେମାନଙ୍କର ଦୁର୍ବଳତା କିମ୍ବା ଉଦାସୀନତା ଯୋଗୁଁ କରିଛନ୍ତି । ଏହି ଉଦାସୀନତା ସେମାନଙ୍କ ସ୍ୱଭାବ ସହ ଏପରି ମିଶିଯାଇଛି ଯେ ଜଣେ ହିନ୍ଦୁ ଅସହାୟ ଭାବରେ ଏକ ଅପମାନ ବା ଭୁଲକୁ ସହ୍ୟ କରିବାକୁ ବାଧ ହୋଇଥାଏ । ମୋରିସ୍‌ଙ୍କ ଭାଷାରେ ସେମାନଙ୍କର ଏହି ସ୍ୱଭାବ "ମହାନ୍ ଲୋକମାନେ ଛୋଟ ଲୋକଙ୍କୁ ଅତ୍ୟାଚାର କରିବା, ଶକ୍ତିଶାଳୀ ଲୋକମାନେ ଦୁର୍ବଳଙ୍କ ଉପରେ ପ୍ରହାର କରିବା, ନିଷ୍ଠୁର ଲୋକମାନେ ଭୟ ନ କରିବା, ଦୟାଳୁ ଲୋକମାନେ ସାହସ ନ କରିବା ଓ ବିଦ୍ୱାନ ଲୋକମାନେ କିଛିକୁ ଖାତିର ନ କରିବା ସହିତ ସମାନ ।" ହିନ୍ଦୁ ଦେବାଦେବୀମାନଙ୍କର ସହନଶୀଳତା ଯୋଗୁଁ ହିନ୍ଦୁମାନଙ୍କ ଭିତରେ ଅତ୍ୟାଚାରିତ ହେଉଥିବା ଓ ଅସହାୟ ଭାବରେ ଜୀବନ ବଞ୍ଚୁଥିବା ବହୁ ବ୍ୟକ୍ତିଙ୍କର ଦଶାକୁ ସହଜରେ ଅନୁମାନ କରାଯାଇପାରେ । ସବୁ ପ୍ରତି ଉଦାସୀନତା ଗୋଟିଏ ଜାତିର ସବୁଠାରୁ ବଡ଼

ଦୁର୍ବଳତା ଓ ଏକ ବଡ଼ ବେମାରୀ ଯାହାଏକ ଜାତିକୁ କ୍ଲୀବ କରି ଦେଇଥାଏ । କିନ୍ତୁ ହିନ୍ଦୁମାନେ ଏପରି ଉଦାସୀନ କାହିଁକି ? ମୋ ମତରେ ଏହି ଉଦାସୀନତା ଜାତି ପ୍ରଥାର ପରିଣାମ । ଫଳରେ କୌଣସି ଭଲ କାର୍ଯ୍ୟପାଇଁ ମଧ୍ୟ ସେମାନଙ୍କୁ ସଙ୍ଗଠିତ କରିବା ଓ ସେମାନଙ୍କର ସହଯୋଗ ପାଇବା ସମ୍ଭବ ହୁଏନାହିଁ ।

## (୧୨)

## ଜାତିପ୍ରଥା ଓ ସାମାଜିକ ବାସନ୍ଦ

ସାମୂହିକ ବିଚାର ତଥା ସାମୂହିକ କ୍ଷମତା ଓ ସ୍ୱାର୍ଥ ବିରୁଦ୍ଧରେ ଯେତେବେଳେ କୌଣସି ବ୍ୟକ୍ତି ନିଜର ମତ, ବିଶ୍ୱାସ ଓ ସ୍ୱତନ୍ତତାକୁ ଦୃଢ଼ତାର ସହ ଜାହିର କରେ ସେତେବେଳେ ସଂସ୍କାରର ସୂତ୍ରପାତ ହୋଇଥାଏ । ଉକ୍ତ ସମୂହ କେତେଦୂର ବ୍ୟକ୍ତିକୁ ଏହି ସଂସ୍କାର ପାଇଁ ସ୍ୱାଧୀନତା ଓ ସୁଯୋଗ ଦିଅନ୍ତି ତା'ରି ଉପରେ ସଂସ୍କାରର ସଫଳତା ନିର୍ଭର କରେ । ସଂସ୍କାରବାଦୀ ବ୍ୟକ୍ତିମାନଙ୍କ ପ୍ରତି ଯଦି ଉକ୍ତ ସମୂହ ସହନଶୀଳ ଓ ସୁସ୍ଥ ମନୋଭାବ ପୋଷଣ କରେ, ତେବେ ସେହି ସଂସ୍କାର ପ୍ରୟାସୀ ବ୍ୟକ୍ତିମାନେ ସେମାନଙ୍କ ଲକ୍ଷ୍ୟରେ ସଫଳ ହୋଇଥାନ୍ତି । ଅପର ପକ୍ଷରେ ଯଦି ଉକ୍ତ ସମୂହ ଅସହିଷ୍ଣୁ ହେବା ସହିତ ଏହି ବ୍ୟକ୍ତିମାନେ ପ୍ରୟୋଗ କରୁଥିବା ପନ୍ଥାର ଔଚିତ୍ୟକୁ ବିଚାରକୁ ନିଅନ୍ତି ନାହିଁ, ତେବେ ସେହି କ୍ଷେତ୍ରରେ ସଂସ୍କାର ସମ୍ଭବ ହୁଏନାହିଁ ଓ ସଂସ୍କାରକମାନେ ଦୃଶ୍ୟପଟରୁ ବିଲୁପ୍ତ ହୋଇଯାନ୍ତି । କୌଣସି ବ୍ୟକ୍ତିକୁ ଜାତିରୁ ବହିଷ୍କାର କରିବା ନେଇ ଜାତିର ଅଧିକାରକୁ କେହି ପ୍ରଶ୍ନ କରିପାରେ ନାହିଁ । ଯଦି କୌଣସି ବ୍ୟକ୍ତି ଜାତିର ଶୃଙ୍ଖଳାକୁ ଉଲ୍ଲଂଘନ କରେ, ତେବେ ଜାତିରୁ ବହିଷ୍କୃତ ହେବାର ସମ୍ଭାବନା ଥାଏ । ଜାତିରୁ ବହିଷ୍କୃତ ହେବାଦ୍ୱାରା ସେ ସାମାଜିକ ସ୍ତରରେ ବାସନ୍ଦ ହୋଇଥାଏ ଓ ସାମାଜିକ ସମ୍ବନ୍ଧରୁ ବଞ୍ଚିତ ହୁଏ । ସାମାଜିକ ବାସନ୍ଦ ଜନିତ ଦଣ୍ଡବିଧାନ ଏପରି ପୀଡ଼ାଦାୟକ ହୁଏ ଯେ ଏହା ମୃତ୍ୟୁ ସହିତ ସମାନ ମନେହୁଏ । ଫଳରେ ବ୍ୟକ୍ତିଗତ ସ୍ତରରେ ହିନ୍ଦୁମାନେ ଜାତିର ଶୃଙ୍ଖଳାକୁ ଲଘନ କରି ବା ଜାତିର ବନ୍ଧନକୁ ତୁଟାଇ ନିଜର ସ୍ୱାତନ୍ତ୍ର୍ୟକୁ ଜାହିର କରିବା ପାଇଁ ସାହସ କରିପାରନ୍ତି ନାହିଁ । ପ୍ରତ୍ୟେକ ବ୍ୟକ୍ତି ନିଜର

ବନ୍ଧୁବାନ୍ଧବ ଓ ସମସ୍ତ ସମ୍ପର୍କୀୟମାନଙ୍କ ଠାରୁ ସମ୍ବନ୍ଧ ଛିନ୍ନ କରି ରହିବା ସମ୍ଭବ ନୁହେଁ । ପ୍ରତ୍ୟେକ ବ୍ୟକ୍ତି ନିଜର ବନ୍ଧୁବାନ୍ଧବ, ଆତ୍ମୀୟ ଓ ସମାଜ ସହିତ ରହିବାକୁ ଚାହେଁ । ଫଳରେ ନିଜର ସାମାଜିକ ବ୍ୟବସ୍ଥାକୁ ଗ୍ରହଣ କରି ଜାତିର ସମସ୍ତଙ୍କ ସହିତ ରହିବାକୁ ସେ ବାଧ୍ୟ ହୁଏ । ସମାଜକୁ ଛାଡ଼ି ରହିବା ସମ୍ଭବ ହେଉ ନଥିବାରୁ ସେ ସବୁ ପରିସ୍ଥିତିରେ ଜାତି ପାଖରେ ନିଜକୁ ସମର୍ପଣ କରିବାକୁ ବାଧ୍ୟ ହୋଇଥାଏ । ବ୍ୟକ୍ତିର ଅସହାୟତାର ସୁଯୋଗ ନେଇ ଜାତି ନିଜର ଶୃଙ୍ଖଳା ଓ ବିଧାନକୁ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ କରିବା ପାଇଁ ବ୍ୟକ୍ତିକୁ ବାଧ୍ୟ କରିଥାଏ । ଜାତି ଭିତରେ ଚକ୍ରାନ୍ତ କରାଯାଇ କୌଣସି ସଂସ୍କାରକର ଜୀବନକୁ ଅତ୍ୟନ୍ତ ଯନ୍ତ୍ରଣାଦାୟକ କରାଯାଇପାରେ । ଏହି ପ୍ରକାରର ଯନ୍ତ୍ରଣାକୁ ଏକ ଅପରାଧ ଭାବରେ ନିଆଯିବା ଆବଶ୍ୟକ । କୌଣସି ବ୍ୟକ୍ତି-ଜାତିଗତ ବିଧାନକୁ ଲଙ୍ଘନ କରିବା ଦ୍ୱାରା ତା ବିରୁଦ୍ଧରେ ମନ୍ତ୍ରଣା କରାଯାଇ ତାକୁ ବହିଷ୍କାର କରିବା ବା ସାମାଜିକ ବାସନ୍ଦ କରିବା କାର୍ଯ୍ୟ ଆଇନ ଦୃଷ୍ଟିରୁ ଦଣ୍ଡନୀୟ ହେବା ଦରକାର । କିନ୍ତୁ ସାଂପ୍ରତିକ ପରିସ୍ଥିତିରେ ଜାତିକୁ ସ୍ୱାତନ୍ତ୍ର୍ୟ ଦେବାରେ ଓ କୌଣସି ଜାତି ତା'ର ଅନମନୀୟ ସଭ୍ୟଙ୍କୁ ବହିଷ୍କାର କରି ଦଣ୍ଡ ଦେବାରେ ଆଇନ ସହାୟକ ହୋଇଥାଏ । ରକ୍ଷଣଶୀଳ ଲୋକଙ୍କ ହାତରେ ଜାତି ହେଉଛି ଏକ ଶକ୍ତିଶାଳୀ ଅସ୍ତ୍ର । ଏହି ଅସ୍ତ୍ରଦ୍ୱାରା ସେମାନେ ସଂସ୍କାରକମାନଙ୍କୁ ଦଣ୍ଡବିଧାନ କରି ସାମାଜିକ ସଂସ୍କାରକୁ ଧ୍ୱଂସ କରି ଦେଇପାରିବେ ।

(୧୩)

## ଜାତିଭିତ୍ତିକ ନୈତିକତା

ହିନ୍ଦୁମାନଙ୍କ ନୈତିକତା ଉପରେ ଜାତିପ୍ରଥାର ପ୍ରଭାବ ଦୁର୍ଭାଗ୍ୟଜନକ ମନେହୁଏ । ଜାତିପ୍ରଥା ସାମୂହିକ ଭାବନାକୁ ଧ୍ୱଂସ କରିଦେଇଛି । ଏହା ମଧ୍ୟ ସାମୂହିକ ସମ୍ବେଦନଶୀଳତାକୁ ନଷ୍ଟ କରିଦେଇଛି । ଜାତିପ୍ରଥା ଯୋଗୁଁ ସାମାଜିକ ମନୋଭାବ ବିଲୁପ୍ତ ହୋଇଯାଇଛି ବା ମହତ୍ୱ ହରାଇଛି । ଜଣେ ହିନ୍ଦୁପାଇଁ ତା'ର ଜାତି ହେଉଛି ତା'ର ସମାଜ । ସେ କେବଳ ତା'ର ଜାତି ପ୍ରତି ଉତ୍ତରଦାୟୀ । ସମସ୍ତ ସୁଗୁଣ ଓ ସାମାଜିକ କର୍ତ୍ତବ୍ୟବୋଧ କେବଳ ଜାତିଭିତ୍ତିକ ହୋଇ ରହିଛି । ନୈତିକତା ଜାତି ଊର୍ଦ୍ଧ୍ୱକୁ ଯାଇପାରି ନାହିଁ ବା ଅନ୍ୟ ଭାବରେ

କହିଲେ ଏହା ଜାତିର ବନ୍ଧନରୁ ମୁକ୍ତ ନୁହେଁ । ଆବଶ୍ୟକ କରୁଥିବା କୌଣସି ବ୍ୟକ୍ତି ପ୍ରତି ଏଥିରେ ସହାନୁଭୂତିର ସ୍ଥାନ ନାହିଁ । କୌଣସି ସୁଗୁଣ ସମ୍ପନ୍ନ ବ୍ୟକ୍ତିର ପ୍ରଶଂସା ନାହିଁ । କୌଣସି ଅଭାବଗ୍ରସ୍ତ ଲୋକପ୍ରତି ଅନୁକମ୍ପା ନାହିଁ । ଅନ୍ୟର ଦୁଃଖ କଷ୍ଟ ପ୍ରତି ସମ୍ବେଦନଶୀଳତା ପ୍ରକାଶ ପାଏ ନାହିଁ । ଯେଉଁ ସହାନୁଭୂତି ପ୍ରକାଶ ପାଏ ବା ଦାନ ଦିଆଯାଏ ତାହା କେବଳ ଜାତିର ନିୟମ ଭିତରେ ସୀମିତ ରହେ ଓ ଜାତି ଭିତରେ ହିଁ ଲୋପ ହୋଇଯାଏ । ଅନ୍ୟ ଜାତିର ବ୍ୟକ୍ତିମାନଙ୍କ ପ୍ରତି କୌଣସି ସମବେଦନା ପ୍ରକାଶ ପାଏନାହିଁ । ଜଣେ ମହାନ ଓ ଆଦର୍ଶ ବ୍ୟକ୍ତିଙ୍କର ନେତୃତ୍ୱକୁ ଗ୍ରହଣ କରିବା କୌଣସି ହିନ୍ଦୁ ପାଖରେ ସମ୍ଭବ କି ? ଏହି ବ୍ୟକ୍ତି ନିଜ ଜାତିର ହୋଇଥିଲେ ତାଙ୍କର ନିର୍ଦ୍ଦେଶକୁ ଜଣେ ଗ୍ରହଣ କରିଥାଏ । କୌଣସି ବ୍ରାହ୍ମଣ ନିଜ ଜାତିର କୌଣସି ନେତାଙ୍କୁ ଅନୁକରଣ କରିଥାଏ ଓ ଜଣେ କାୟସ୍ଥ କେବଳ କାୟସ୍ଥ ନେତାଙ୍କୁ ହିଁ ଅନୁକରଣ କରେ, ସେହିପରି ଜଣେ କେବଳ ନିଜ ଜାତିର ନେତାଙ୍କୁ ମାନିଥାଏ । ନିଜ ଜାତିର ବାହାରେ କୌଣସି ସୁଗୁଣ ସମ୍ପନ୍ନ ବ୍ୟକ୍ତିଙ୍କର ପ୍ରଶଂସା କେବଳ ନିଜ ଜାତିର ଲୋକମାନଙ୍କ ଦ୍ୱାରା କରାଯାଏ । ହିନ୍ଦୁମାନଙ୍କର ଏହି ନୈତିକତା ଆଦିମ ଲୋକଙ୍କର ନୈତିକତା ପରି କ୍ଷତିକାରକ ଅଟେ । ଯାହାର ଅର୍ଥ ହେଉଛି ମୋ ଜାତିର ଲୋକ ଠିକ୍ ଥାଉ ବା ଭୁଲଥାଉ, ଭଲ ହେଉ ବା ମନ୍ଦ ହେଉ ମୋତେ ତାହାକୁ ସମର୍ଥନ କରିବାକୁ ହେବ । କୌଣସି ମହତ କାର୍ଯ୍ୟକୁ ପ୍ରଶଂସା କରିବା ଓ ପାପ କାର୍ଯ୍ୟକୁ ନିନ୍ଦା କରିବା ଜାତିର ଊର୍ଦ୍ଧ୍ୱରେ ସମ୍ଭବ ନୁହେଁ । ଜାଗତିକ ମାନସିକତା ବ୍ୟକ୍ତିର ନୈତିକ ଦୃଷ୍ଟିକୋଣରୁ କବଳିତ କରିଥାଏ । ନିଜ ଜାତିର ହିତ ସାଧନ କରିବାକୁ ଯାଇ ହିନ୍ଦୁମାନେ ନିଜ ଦେଶ ପ୍ରତି ବିଶ୍ୱାସଘାତକତା କରି ନାହାନ୍ତି କି ?

(୧୪)

## ମୋର ଆଦର୍ଶ ସମାଜ

ଜାତିପ୍ରଥାର ଦୁଃଖଦ ପ୍ରଭାବ ସଂକ୍ରାନ୍ତୀୟ ଏହି ବିବରଣୀଗୁଡ଼ିକ ଶୁଣିଶୁଣି ଆପଣମାନେ କ୍ଳାନ୍ତି ଅନୁଭବ କରିବେଣି । ଆପଣମାନଙ୍କର ଏହି ଅନୁଭୂତିରେ ମୁଁ ଆଶ୍ଚର୍ଯ୍ୟ ନୁହେଁ । ଏଥିରେ କୌଣସି ନୂତନତା ନାହିଁ । ଏବେ ସମସ୍ୟାଟିର ଗଠନମୂଳକ ଦିଗ ଉପରେ ଆଲୋଚନା କରିବା । ଜାତିକୁ ଯଦି ଆପଣ ସମର୍ଥନ କରୁନାହାନ୍ତି, ତେବେ ଆପଣଙ୍କ ଦୃଷ୍ଟିରେ ଏକ ଆଦର୍ଶ ସମାଜର ସ୍ୱରୂପ କ'ଣ ହେବ ? ଆପଣମାନେ

ଯଦି ମୋତେ ଏହି ପ୍ରଶ୍ନ ପଚାରିବେ ତେବେ ମୁଁ କହିବି ଯେ ମୋ ଦୃଷ୍ଟିରେ ସମତା, ସ୍ୱତନ୍ତ୍ରତା ଓ ଭ୍ରାତୃତ୍ୱ ଉପରେ ଆଧାରିତ ସମାଜ ହିଁ ହେଉଛି ଏକ ଆଦର୍ଶ ସମାଜ । ନୁହେଁ କି ? ଭ୍ରାତୃତ୍ୱ ବିରୁଦ୍ଧରେ କିଛି ଅଭିଯୋଗ ରହିପାରେ କି ? ମୁଁ ସେପରି କିଛିର ସମ୍ଭାବନା ଦେଖୁନାହିଁ । ଏକ ଆଦର୍ଶ ସମାଜ ଗତିଶୀଳ ହେବା ଦରକାର ଏବଂ କୌଣସି ଭାଗରେ ଯେଉଁ ପରିବର୍ତ୍ତନ ହୁଏ ତାହା ଅନ୍ୟ ଭାଗରେ ବି ପ୍ରତିଫଳିତ ହେବାପାଇଁ ଦ୍ୱାର ଉନ୍ମୁକ୍ତ ରହିବା ଆବଶ୍ୟକ । ଆଦର୍ଶ ସମାଜରେ ଏପରି ସାର୍ବଜନୀନ ସ୍ୱାର୍ଥ ରହିବା ଦରକାର ଯେଉଁଥିରେ ସମସ୍ତେ ଉପକୃତ ହେବା ସହ ସେଥିରେ ଅଂଶୀଦାର ହୋଇପାରୁଥିବେ । କୌଣସି ସଂଗଠନ ସହ ସମ୍ପର୍କ ସ୍ଥାପନ କରିବାରେ ବ୍ୟକ୍ତିର ସ୍ୱାଧୀନତା ରହିବା ଆବଶ୍ୟକ । ଅନ୍ୟ ଭାବରେ କହିଲେ ଜନଗଣଙ୍କ ଭିତରେ ସାମାଜିକ ସ୍ତରରେ ଭ୍ରାତୃତ୍ୱ ଭାବ ପ୍ରତିଫଳିତ ହେବା ବାଞ୍ଛନୀୟ । ଏହି ଭ୍ରାତୃତ୍ୱ ଭାବ ହିଁ ହେଉଛି ଯଥାର୍ଥ ଗଣତନ୍ତ୍ର । ଗଣତନ୍ତ୍ର କେବଳ ଏକ ଶାସନ ବ୍ୟବସ୍ଥା ନୁହେଁ, ଏହା ସାମୂହିକ ଜୀବନଧାରାରେ ପରସ୍ପର ସହ ଭ୍ରାତୃତ୍ୱପୂର୍ଣ୍ଣ ଆଦାନପ୍ରଦାନ ଜନିତ ଅନୁଭୂତି ଉପରେ ପର୍ଯ୍ୟବସିତ । ମୁଖ୍ୟତଃ ସମାଜରେ ଅନ୍ୟମାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନବୋଧ ଏହାର ମୂଳ ଲକ୍ଷ୍ୟ । ସେହିପରି ସ୍ୱତନ୍ତ୍ରତା ବିରୁଦ୍ଧରେ କିଛି କୁହାଯାଇ ପାରିବ କି ? ବ୍ୟକ୍ତିମାନଙ୍କର ମୁକ୍ତ ଯାତାୟତ, ନିଜ ଜୀବନ ପାଇଁ ଆତ୍ମରକ୍ଷା ଓ ଜୀବନ କ୍ଷେତ୍ରରେ ସ୍ୱତନ୍ତ୍ରତା ରହିବା ବିରୁଦ୍ଧରେ କେହି ସ୍ୱର ଉତ୍ତୋଳନ କରିବେ ନାହିଁ । ଜଣେ ବ୍ୟକ୍ତି ନିଜର ସାମର୍ଥ୍ୟକୁ ଉପଯୁକ୍ତ ଭାବରେ ବିକାଶ କରାଇ ନିଜ ଜୀବନର ଗୁଣାତ୍ମକ ମାନ ବୃଦ୍ଧି କରିବା କ୍ଷେତ୍ରରେ କାହିଁକି ସ୍ୱାଧୀନ ରହିବ ନାହିଁ ? ଜାତିପ୍ରଥାକୁ ସମର୍ଥନ କରୁଥିବା ବ୍ୟକ୍ତିଗଣ ଜୀବନ ସୁରକ୍ଷା, ଆତ୍ମରକ୍ଷା ଓ ସମ୍ପତ୍ତିର ଅଧିକାର ଜନିତ ସ୍ୱତନ୍ତ୍ରତାକୁ ସମର୍ଥନ କରିବେ ନାହିଁ କାରଣ ଏହାଦ୍ୱାରା ବୃତ୍ତି ଗ୍ରହଣ କ୍ଷେତ୍ରରେ ବ୍ୟକ୍ତିମାନଙ୍କର ସ୍ୱାଧୀନତା ରହିବ । ବ୍ୟକ୍ତିମାନଙ୍କୁ ବୃତ୍ତିଗତ ସ୍ୱତନ୍ତ୍ରତା ନ ଦେବା ହିଁ ହେଉଛି ଦାସତ୍ୱ ସ୍ୱୀକାର କରିବା । ଦାସତ୍ୱର ଅର୍ଥ କେବଳ ଆଇନଗତ ପରାଧୀନତା ନୁହେଁ, ଏହାର ଅର୍ଥ ହେଉଛି ଏପରି ଏକ ସାମାଜିକ ବ୍ୟବସ୍ଥା ଯେଉଁଥିରେ କେତେକ ଲୋକଙ୍କୁ ସେମାନଙ୍କର ଆଚରଣକୁ ନିୟନ୍ତ୍ରଣ କରୁଥିବା ଅନ୍ୟ ଏକ ଗୋଷ୍ଠୀର ଉଦ୍ଦେଶ୍ୟକୁ ଗ୍ରହଣ କରିବା ଲାଗି ବାଧ କରାଯାଇଥାଏ । ଆଇନଗତ ଦୃଷ୍ଟିରେ ଦାସତ୍ୱ ନଥିଲେ ବି ସାମାଜିକ ବ୍ୟବସ୍ଥାରେ ଏହି ଦାସତ୍ୱ ଭାବ ବଳବତ୍ତର ରହିପାରେ । ବିଶେଷକରି ଜାତିଗତ ବ୍ୟବସ୍ଥା

ବଳବତ୍ତର ଥିବା ଏକ ସମାଜରେ କୌଣସି କାର୍ଯ୍ୟ କରିବା ପାଇଁ ଅନ୍ୟକୁ ବାଧ କରାଯାଏ ଯେଉଁଥିରେ କି ଜଣଙ୍କର କୌଣସି ଶ୍ରଦ୍ଧା ବା ଆନ୍ତରିକତା ନଥାଏ । କାରଣ ଏହା ଗ୍ରହଣ କରାଯାଏ ଯେ ନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ଦ୍ଦିଷ୍ଟ ଜାତିର ବ୍ୟକ୍ତିମାନେ ହିଁ କରିବେ । ସମାନତା ବିରୁଦ୍ଧରେ କୌଣସି ଅଭିଯୋଗ କରାଯାଇ ପାରେ କି ? ଫରାସୀ ରାଷ୍ଟ୍ର ବିପ୍ଳବ ସମୟରେ ଏହି ସମାନତା ଏକ ବିବାଦମାନ ପ୍ରସଙ୍ଗ ଥିଲା । ସମାନତା ବିରୁଦ୍ଧରେ ଯାହା କୁହାଯାଏ ହୁଏତ କେତେକଙ୍କ ପାଇଁ ଯୁକ୍ତିଯୁକ୍ତ ମନେ ହୋଇପାରେ; କାରଣ ସବୁ ମଣିଷ ଯଥାର୍ଥରେ ସମାନ ନୁହନ୍ତି । କିନ୍ତୁ ତା'ର ଅର୍ଥ କ'ଣ ? ହୁଏତ ସମାନତା ଏକ କାଳ୍ପନିକ ବସ୍ତୁ ହୋଇପାରେ । କିନ୍ତୁ ଏହାକୁ ଏକ ନିର୍ଣ୍ଣାୟକ ନିୟମ ଭାବରେ ଗ୍ରହଣ କରିବାକୁ ହେବ । ଜଣେ ବ୍ୟକ୍ତିର ସାମର୍ଥ୍ୟ ତା'ର (୧) ଶାରୀରିକ ବଂଶ ପରମ୍ପରା (୨) ସାମାଜିକ ଉତ୍ତରାଧିକାରୀ ସୂତ୍ରରେ ପିତାମାତାଙ୍କଠାରୁ ପାଇଥିବା ଯତ୍ନ, ଶିକ୍ଷା, ବୈଜ୍ଞାନିକ ଜ୍ଞାନ ଯାହା ତାକୁ କାର୍ଯ୍ୟଦକ୍ଷ ହେବାରେ ସାହାଯ୍ୟ କରେ ଏବଂ (୩) ନିଜର ବ୍ୟକ୍ତିଗତ ପ୍ରଚେଷ୍ଟା ଉପରେ ନିର୍ଭର କରେ । ଏହି ତିନୋଟି ଯାକ କ୍ଷେତ୍ରରେ ମଣିଷମାନେ ପରସ୍ପରଠାରୁ ପୃଥକ୍ ମନେ ହୁଅନ୍ତି । କିନ୍ତୁ ପ୍ରଶ୍ନ ହେଉଛି ପରସ୍ପର ସମାନ ନୁହନ୍ତି ବୋଲି ସେମାନଙ୍କୁ ସମାନ ଭାବିବା ନାହିଁକି ? ଯେଉଁମାନେ ସମାନତାର ବିରୋଧ କରନ୍ତି ସେମାନଙ୍କୁ ଏହି ପ୍ରଶ୍ନର ଉତ୍ତର ଦେବାକୁ ହେବ । ବ୍ୟକ୍ତିବାଦୀ ଦୃଷ୍ଟିକୋଣରେ ଯେତେବେଳ ପର୍ଯ୍ୟନ୍ତ ବ୍ୟକ୍ତିଗତ ଉଦ୍ୟମ କ୍ଷେତ୍ରରେ ଅସମତା ରହିଥିବ, ବ୍ୟକ୍ତିମାନଙ୍କୁ ସମାନ କରିବା ଉଚିତ ନୁହେଁ । ବ୍ୟକ୍ତିଗତ ସାମର୍ଥ୍ୟର ପୂର୍ଣ୍ଣ ବିକାଶ ପାଇଁ ଆବଶ୍ୟକ ହେଉଥିବା ଉପଯୁକ୍ତ ସୁଯୋଗ ପ୍ରତ୍ୟେକକୁ ମିଳିବା ଦରକାର । ପ୍ରଥମ ଦୁଇଟି କ୍ଷେତ୍ରରେ ବ୍ୟକ୍ତିମାନଙ୍କ ମଧ୍ୟରେ ଥିବା ଅସମତାକୁ ଗ୍ରହଣ କରିବାର ପରିଣାମ କ'ଣ ହେବ ? ଯେଉଁ ବ୍ୟକ୍ତିଗଣ ନିଜର ଜନ୍ମ, ଶିକ୍ଷା, ପାରିବାରିକ ସ୍ଥିତି ତଥା ବ୍ୟବସାୟରୁ ଉତ୍ତରାଧିକାରୀ ସୂତ୍ରରେ ସମ୍ପନ୍ନ ହୋଇଥିବେ ସେମାନେ ଜନଗଣଙ୍କ ମଧ୍ୟରେ ଉଚ୍ଚ ସ୍ଥାନରେ ରହିବେ । ଏହି ପରିସ୍ଥିତିରେ ସମର୍ଥ ବ୍ୟକ୍ତିମାନେ ମନୋନୀତ ହୋଇପାରିବେ ନାହିଁ, ପରନ୍ତୁ ଏଥିରେ ସୁବିଧାଭୋଗୀ ବ୍ୟକ୍ତିଗଣ ହିଁ ମନୋନୀତ ହେବେ । ଯେତେ ଦୂର ସମ୍ଭବ ପ୍ରଥମ ଦୁଇ ଅର୍ଥରେ ବ୍ୟକ୍ତିମାନଙ୍କୁ ସମାନ ବୋଲି ଭାବିଲେ ମଧ୍ୟ ତୃତୀୟ ଅର୍ଥରେ ବ୍ୟକ୍ତିମାନଙ୍କ ମଧ୍ୟରେ ଅସମତା ରହିବ । ଅନ୍ୟପକ୍ଷରେ ଯଦି ସମାଜରେ ବ୍ୟକ୍ତିମାନଙ୍କର ସାମର୍ଥ୍ୟର ବିକାଶ ଦ୍ୱାରା ସାମାଜିକ

ଲକ୍ଷ୍ୟ ସାଧିତ ହେବ ତେବେ ବ୍ୟକ୍ତିମାନଙ୍କୁ ଜନଗଣଙ୍କ ଭିତରେ ସମାନ ଭାବରେ ଗ୍ରହଣ କରିବା ଦରକାର । ଏହାର ଅର୍ଥ ହେଉଛି ସମାନତାକୁ ଏହି ଅର୍ଥରେ ଆମେ ଏଡ଼ାଇ ପାରିବା ନାହିଁ । ଅନ୍ୟ ଗୋଟିଏ କାରଣ ଯୋଗୁଁ ଆମକୁ ସମାନତାକୁ ଗ୍ରହଣ କରିବାକୁ ହେବ । ଜଣେ ରାଜନୀତିଜ୍ଞ ସମୂହ ଜନଗଣଙ୍କର ଚିନ୍ତା କରିଥାଏ । ସମାଜର ସମସ୍ତ ବ୍ୟକ୍ତିମାନଙ୍କୁ ସୂକ୍ଷ୍ମ ଭାବରେ ବିଚାର କରି ସେମାନଙ୍କର ସାମର୍ଥ୍ୟ ଓ ଆବଶ୍ୟକତା ଭିତ୍ତିରେ ସେମାନଙ୍କ ମଧ୍ୟରେ ଏକ ନ୍ୟାୟପୂର୍ଣ୍ଣ ସମତା ପ୍ରତିଷ୍ଠା କରିବା ପାଇଁ ଆବଶ୍ୟକ ହେଉଥିବା ସମୟ ବା ଜ୍ଞାନ ହାସଲ କରିବା ଏକ ରାଷ୍ଟ୍ରନୀତିଜ୍ଞ ପକ୍ଷରେ ସମ୍ଭବ ନୁହେଁ । ସମସ୍ତ ଜନଗଣଙ୍କୁ ନ୍ୟାୟପୂର୍ଣ୍ଣ ଭାବରେ ବିଚାର କରିବା ଯେତେ ଆବଶ୍ୟକ ଓ ଯୁକ୍ତିଯୁକ୍ତ ମନେହେଲେ ବି ସାମର୍ଥ୍ୟ ଅନୁଯାୟୀ ସମସ୍ତ ଜନଗଣଙ୍କୁ ବର୍ଗୀକରଣ କରିବା ସମ୍ଭବପର ନୁହେଁ । ଫଳରେ ରାଜନୀତିଜ୍ଞ କେତେକ ବ୍ୟବସ୍ଥା ଓ ନିୟମ ଦ୍ୱାରା ବ୍ୟକ୍ତିମାନଙ୍କୁ ବିଚାର କରିବା ଦରକାର । ଏହି ପଦ୍ଧତି ପ୍ରଥମରୁ ବ୍ୟକ୍ତିମାନଙ୍କୁ ସମାନ ଭାବରେ ନେବା ଆବଶ୍ୟକ । ଏହାର ଅର୍ଥ ନୁହେଁ ଯେ ସବୁ ମଣିଷ ଏକା ପରି, କିନ୍ତୁ ସାମର୍ଥ୍ୟ ଓ ଦକ୍ଷତା ଅନୁଯାୟୀ ସବୁ ଲୋକଙ୍କୁ ବର୍ଗୀକରଣ କରିବା ସମ୍ଭବ ନୁହେଁ । ଦକ୍ଷତା ଅନୁଯାୟୀ ସମତାର ନିୟମ ଯେତେ ତ୍ରୁଟିପୂର୍ଣ୍ଣ ହେଲେବି ଜଣେ ରାଜନୀତିଜ୍ଞ ସମାଜର ସମସ୍ତ ବ୍ୟକ୍ତିମାନଙ୍କୁ ସମାନ ବୋଲି ଗ୍ରହଣ କରିବା ଏକ ବ୍ୟାବହାରିକ ଆବଶ୍ୟକତା ଅଟେ । ଏହି ଆବଶ୍ୟକତା ଦୃଷ୍ଟିରୁ କାର୍ଯ୍ୟକାରୀ ହୋଇ ପାରୁଥିବା ପନ୍ଥା ଗ୍ରହଣ କରାଯିବା ବି ରାଜନୀତିର ଆଭିମୁଖ୍ୟ ଅଟେ ।

## (୧୫)

## ଆର୍ଯ୍ୟ ସମାଜ ଓ ବର୍ଣ୍ଣ ବ୍ୟବସ୍ଥା

କେତେକ ସଂସ୍କାରକ ଅଛନ୍ତି ଯେଉଁମାନେ ଏକ ଭିନ୍ନ ଆଦର୍ଶରେ ବିଶ୍ୱାସ କରନ୍ତି । ଏଠାରେ ମୁଁ ଆର୍ଯ୍ୟସମାଜୀମାନଙ୍କ କଥା କହୁଛି । ସେମାନଙ୍କ ମତ ଅନୁଯାୟୀ ବର୍ଣ୍ଣ ବ୍ୟବସ୍ଥା ଏକ ଆଦର୍ଶ ସାମାଜିକ ସଂଗଠନ ଯେଉଁଥିରେ ବ୍ୟକ୍ତିମାନଙ୍କୁ ସେମାନଙ୍କର ଗୁଣ ଅନୁସାରେ ବିଭାଜନ କରାଯାଏ । ଫଳରେ ଚାରି ହଜାର ଜାତି ପରିବର୍ତ୍ତେ ସେମାନେ ଚାରୋଟି ବର୍ଣ୍ଣରେ ସମସ୍ତ ଲୋକଙ୍କୁ ବିଭକ୍ତ କରନ୍ତି । ସେମାନଙ୍କର ମତକୁ ଆକର୍ଷଣୀୟ ତଥା ବିରୋଧଶୂନ୍ୟ କରିବାକୁ ଯାଇ ସେମାନେ କହନ୍ତି ଯେ ପ୍ରତ୍ୟେକ

ମଣିଷ ନିଜର ଗୁଣ ବା ସାମର୍ଥ୍ୟ ଭିତ୍ତିରେ ଚାରୋଟି ବର୍ଣ୍ଣ ଭିତରୁ କୌଣସି ବର୍ଣ୍ଣରେ ରହିବା ସମ୍ଭବ । ଜନ୍ମଭିତ୍ତିକ ଜାତି ପରିବର୍ତ୍ତେ ଗୁଣଭିତ୍ତିକ ବର୍ଣ୍ଣ ବ୍ୟବସ୍ଥାକୁ ସେମାନେ ସମର୍ଥନ କରିଥାନ୍ତି । କିନ୍ତୁ ଏହି ଆଦର୍ଶକୁ ମୁଁ କୌଣସି ମତେ ଗ୍ରହଣ କରିପାରୁ ନାହିଁ । ଚତୁର୍ବର୍ଣ୍ଣ ବ୍ୟବସ୍ଥା ଅନୁଯାୟୀ ହିନ୍ଦୁ ସମାଜରେ କୌଣସି ବ୍ୟକ୍ତି ନିଜ ସାମର୍ଥ୍ୟ ବା ଗୁଣ ଅନୁସାରେ ଏକ ବର୍ଣ୍ଣ ଭିତରେ ରହିବା ସମୀଚୀନ ଅଟେ । ଆର୍ଯ୍ୟ ସମାଜୀମାନେ ବ୍ୟକ୍ତିମାନଙ୍କୁ କାହିଁକି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏପରି ଭାବରେ ପରିଚିତ କରାଇବାକୁ ଚାହାନ୍ତି ମୁଁ ବୁଝିପାରୁ ନାହିଁ । କୌଣସି ଜ୍ଞାନୀବ୍ୟକ୍ତି କିଛି ମାର୍କା ନ ନେଇ ସମାଜରେ ସମ୍ମାନିତ ହୋଇପାରନ୍ତି । ଜଣେ ଯୋଦ୍ଧାକୁ କ୍ଷତ୍ରିୟ ଭାବରେ ପରିଚିତ ନ କରାଇ ସମ୍ମାନ କରିବାରେ କୌଣସି ବାଧା ନାହିଁ । ଯଦି ୟୁରୋପୀୟ ସମାଜରେ ସୈନିକ ଓ ସେବକମାନଙ୍କୁ କୌଣସି ସ୍ଥାୟୀ ମାର୍କା ନଦେଇ ସମ୍ମାନିତ କରାଯାଏ , ତେବେ ହିନ୍ଦୁ ସମାଜରେ ସେପରି କାହିଁକ କରାଯାଇ ପାରିବ ନାହିଁ ? ଏହି ପ୍ରଶ୍ନ ଉପରେ ଆର୍ଯ୍ୟସମାଜୀମାନେ ବିଚାର କରି ନାହାନ୍ତି । ବ୍ୟକ୍ତିମାନଙ୍କୁ ନିର୍ଦ୍ଦିଷ୍ଟ ମାର୍କା ଦେଇ ପରିଚିତ କରାଇବା କ୍ଷେତ୍ରରେ ଅନ୍ୟ ଅଭିଯୋଗ ମଧ୍ୟ ରହିଛି । ଯେକୌଣସି ସଂସ୍କାର କ୍ଷେତ୍ରରେ ମଣିଷ ଓ ବସ୍ତୁ ପ୍ରତି ଲୋକମାନଙ୍କର ଭାବନା, ଆବେଗ ଓ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହେବା ଆବଶ୍ୟକ । ଏହା ଏକ ସାଧାରଣ ଅନୁଭୂତି ଯେ କେତେକ ଭାବନା ଏବଂ ଆବେଗ କ୍ଷେତ୍ରରେ କେତେକ ନାମର ପ୍ରୟୋଗ ବ୍ୟକ୍ତିମାନଙ୍କର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିଥାଏ । ପ୍ରତ୍ୟେକ ହିନ୍ଦୁ ମନରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ନାମଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଓ ସ୍ଥିର ଭାବନା ସୃଷ୍ଟି କରିଥାଏ । ତାହା ହେଉଛି ଜନ୍ମରୁ ଆଧାର କରି ଉଚ୍ଚ, ନୀଚ ଶ୍ରେଣୀରେ ସମସ୍ତଙ୍କୁ ବିଚାର କରିବା । ଯେଉଁ ପର୍ଯ୍ୟନ୍ତ ଲୋକମାନଙ୍କୁ ଏହି ନାମଗୁଡ଼ିକରେ ଚିହ୍ନିତ କରାଯାଉଥିବ ସେ ପର୍ଯ୍ୟନ୍ତ ହିନ୍ଦୁମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ବିଭାଜନକୁ ଜନ୍ମ ଭିତ୍ତିରେ ଉଚ୍ଚ ଓ ନିମ୍ନଶ୍ରେଣୀ ଭାବରେ ବିଚାର କରି ସେହିପରି ବ୍ୟବହାର କରୁଥିବେ । ହିନ୍ଦୁମାନଙ୍କର ଏହି ମାନସିକତାକୁ ପରିବର୍ତ୍ତନ କରାଯିବା ଦରକାର । ଯେଉଁ ପର୍ଯ୍ୟନ୍ତ ପୁରୁଣା ମାର୍କାଗୁଡ଼ିକ ରହିଥିବ ଓ ତା'ର ଆନୁଷଙ୍ଗିକ ଭାବନା ଆସୁଥିବ ସେ ପର୍ଯ୍ୟନ୍ତ ଆମ ମାନସିକତାରେ ପରିବର୍ତ୍ତନ ହେବନାହିଁ । ଲୋକମାନଙ୍କ ଦୃଷ୍ଟିଭଙ୍ଗୀରେ ସଂସ୍କାର ଭାବନା ଆଣିବାକୁ ହେଲେ ପୁରାତନ ନାମଗୁଡ଼ିକୁ ପରିବର୍ତ୍ତନ କରିବାକୁ ହେବ । ପୁରାତନ ନାମଗୁଡ଼ିକୁ

ପ୍ରଚଳନ କରିବା ଅର୍ଥ ସଂସ୍କାରର ଉଦ୍ଦେଶ୍ୟକୁ ନଷ୍ଟ କରିବା । ସୁତରାଂ ଯଦିବି ଗୁଣ ଭିତ୍ତିରେ ଲୋକମାନଙ୍କୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଭାବରେ ଚିହ୍ନିତ କରାଯିବ, ତେବେ ଏହି ବ୍ୟବସ୍ଥା ଏପରି ଫାନ୍ଦ ଭିତରେ ପଡ଼ିଯିବ ଯେ ସେଥିରେ ସଂସ୍କାରର କୌଣସି ମହତ୍ତ୍ୱ ରହିବ ନାହିଁ ।

(୧୬)

ଚତୁର୍ବର୍ଣ୍ଣ ବ୍ୟବସ୍ଥା ଯାହା ବ୍ୟକ୍ତିକୁ ଗୋଟିଏ ନିର୍ଦ୍ଦିଷ୍ଟ ମାର୍କାରେ ପରିଣତ କରାଏ ମୋ ପାଇଁ ଆଦୌ ଗ୍ରହଣ ଯୋଗ୍ୟ ନୁହେଁ ଏବଂ ମୋର ଅନ୍ତରାତ୍ମା ଏହି ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ କରେ । କିନ୍ତୁ କେବଳ ଏକ ଆବେଗ ସ୍ତରରେ ମୁଁ ଚତୁର୍ବର୍ଣ୍ଣ ବ୍ୟବସ୍ଥାର ବିରୋଧ କରୁନାହିଁ । ମୁଁ ଯଥାର୍ଥ ଭିତ୍ତି ଉପରେ ଏହାର ବିରୋଧ କରୁଛି । ଏହି ଆଦର୍ଶର ସମ୍ୟକ ମୂଲ୍ୟାୟନରୁ ମୋର ଏହି ଭାବନା ଦୃଢ଼ ହୋଇଛି ଯେ ସାମାଜିକ ସଂଗଠନ କ୍ଷେତ୍ରରେ ଚତୁର୍ବର୍ଣ୍ଣ ବ୍ୟବସ୍ଥାର ରୂପାୟନ ସମ୍ପୂର୍ଣ୍ଣ ଅବାସ୍ତବ, କ୍ଷତିକାରକ ଓ ଅସମ୍ଭବ ମନେହୁଏ । ବ୍ୟାବହାରିକ ଦୃଷ୍ଟିକୋଣରୁ ଚତୁର୍ବର୍ଣ୍ଣ ବ୍ୟବସ୍ଥା ଏପରି କେତେକ ପ୍ରତିବନ୍ଧକ ସୃଷ୍ଟି କରିଥାଏ ଯେଉଁ ବିଷୟରେ ଏହାର ସମର୍ଥକମାନେ କେବେହେଲେ ଗୁରୁତ୍ୱ ଦିଅନ୍ତି ନାହିଁ । ଜାତି ବ୍ୟବସ୍ଥା ପଶ୍ଚାତରେ ଥିବା ନିୟମ ବର୍ଣ୍ଣ ବ୍ୟବସ୍ଥା ପଶ୍ଚାତରେ ଥିବା ନିୟମଠାରୁ ମୌଳିକତଃ ପୃଥକ୍ ଅଟେ । ସେମାନେ ଯେ ପରସ୍ପରଠାରୁ ପୃଥକ୍ ତାହା ନୁହେଁ ସେମାନେ ମୌଳିକତଃ ପରସ୍ପର ବିରୋଧୀ । ବର୍ଣ୍ଣ ବ୍ୟବସ୍ଥା ଯୋଗ୍ୟତା ଭିତ୍ତିରେ ଆଧାରିତ ବୋଲି କୁହାଯାଏ । ପ୍ରଶ୍ନ ହେଉଛି ଜନ୍ମକୁ ଆଧାର କରି ଯେଉଁମାନେ ଉଚ୍ଚ ଜାତିରେ ପରିଚିତ ହେଉଛନ୍ତି, କିପରି ଯୋଗ୍ୟତାକୁ ମୂଲ୍ୟାୟନ କରାଯାଇ ସେମାନଙ୍କର ସାମାଜିକ ସ୍ଥିତିକୁ ନ୍ୟୂନ କରିବା ପାଇଁ ସେମାନଙ୍କୁ ବାଧ କରାଯିବ ? ସେହିପରି ଜନ୍ମଗତ ମାନଦଣ୍ଡରେ ନିମ୍ନ ଜାତିର ବୋଲି ପରିଚିତ ହେଉଥିବା ବ୍ୟକ୍ତିମାନଙ୍କର ସାମର୍ଥ୍ୟକୁ ବିଚାର କରି ସେମାନଙ୍କୁ କିପରି ଉପର ସ୍ତରକୁ ଉଠାଯିବା ପାଇଁ ଲୋକଙ୍କୁ କୁହାଯିବ ? ଏ କ୍ଷେତ୍ରରେ ବର୍ଣ୍ଣ ବ୍ୟବସ୍ଥାକୁ ପ୍ରତିଷ୍ଠିତ କରିବାକୁ ହେଲେ ପ୍ରଥମେ ଜାତି ବ୍ୟବସ୍ଥାକୁ ଲୋପ କରିବାକୁ ହେବ । ତେବେ ଜନ୍ମ ଭିତ୍ତିରେ ରହିଥିବା ଚାରି ହଜାର ଜାତିକୁ କିପରି ଚାରୋଟି ବର୍ଣ୍ଣ ଭିତରେ ସୀମିତ କରିହେବ ? ଯେଉଁମାନେ

ଚତୁର୍ବର୍ଣ୍ଣ ବ୍ୟବସ୍ଥାକୁ ଦୃଢ଼ ଭାବରେ ସମର୍ଥନ କରିଛନ୍ତି ସେମାନଙ୍କୁ ଏହାର ଉତ୍ତର ଦେବାକୁ ହେବ । ସେହିପରି ଚତୁର୍ବର୍ଣ୍ଣ ବ୍ୟବସ୍ଥାର ସଫଳ ପ୍ରତିଷ୍ଠା କ୍ଷେତ୍ରରେ ଦ୍ୱିତୀୟ ପ୍ରତିବନ୍ଧକ ରହିଛି, ଯାହାର ଉତ୍ତର ବର୍ଣ୍ଣ ବ୍ୟବସ୍ଥାର ସମର୍ଥକମାନଙ୍କୁ ଦେବାକୁ ପଡ଼ିବ ।

ଚତୁର୍ବର୍ଣ୍ଣ ବ୍ୟବସ୍ଥା ଅନୁଯାୟୀ ସମସ୍ତ ବ୍ୟକ୍ତିମାନଙ୍କୁ ଚାରୋଟି ନିର୍ଦ୍ଦିଷ୍ଟ ଶ୍ରେଣୀରେ ବିଭାଜନ କରାଯିବ, କିନ୍ତୁ ଏହା ସମ୍ଭବ କି ? ଏ କ୍ଷେତ୍ରରେ ଏ ବ୍ୟବସ୍ଥାର ପ୍ଲେଟୋଙ୍କ ଭାବନା ସହ ସାମଞ୍ଜସ୍ୟ ଥିବା ଦେଖାଯାଏ । ପ୍ଲେଟୋଙ୍କ ମତ ଅନୁଯାୟୀ ମଣିଷମାନଙ୍କର ସ୍ୱଭାବକୁ ତିନୋଟି ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ତାଙ୍କ ମତରେ କେତେକ ବ୍ୟକ୍ତିଙ୍କ ସ୍ୱଭାବରେ କ୍ଷୁଧାର ଗୁରୁତ୍ୱ ଥାଏ । ସେହି ବ୍ୟକ୍ତିମାନଙ୍କୁ ସେ ଶ୍ରମିକ ଓ ବ୍ୟବସାୟୀ ଶ୍ରେଣୀରେ ଅନ୍ତର୍ଭୁକ୍ତ କରନ୍ତି । କ୍ଷୁଧାର ଉର୍ଦ୍ଧ୍ୱରେ କେତେକ ବ୍ୟକ୍ତିଙ୍କ ସ୍ୱଭାବରେ ସାହସିକ କାର୍ଯ୍ୟପାଇଁ ଆଗ୍ରହ ଦେଖିବାକୁ ମିଳିଥାଏ । ସେ ସେମାନଙ୍କୁ ଯୁଦ୍ଧ ସମୟରେ ସୈନିକ ଓ ଅନ୍ୟ ସମୟରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ରକ୍ଷକ ଶ୍ରେଣୀରେ ବିଭାଜନ କରନ୍ତି । ଅନ୍ୟ କେତେକ ପ୍ରତ୍ୟେକ ଘଟଣା ପଶ୍ଚାତରେ ତର୍କଶୀଳ ଯୁକ୍ତି ଓ ଶାଶ୍ୱତ କାରଣକୁ ବୁଝିବାପାଇଁ ଆଗ୍ରହ ଦେଖାନ୍ତି । ଏହି ଶ୍ରେଣୀର ଲୋକମାନଙ୍କୁ ସମାଜ ନିୟମ ପ୍ରଣୟନକାରୀ ଭାବରେ ପ୍ଲେଟୋ ଗ୍ରହଣ କରନ୍ତି । ପ୍ଲେଟୋଙ୍କ ଆଦର୍ଶ ଜନ ରାଜ୍ୟରେ ଜନଗଣଙ୍କୁ ଯେଉଁ ବିଭାଜନ କରାଯାଏ ତା ବିରୁଦ୍ଧରେ ରହିଥିବା ଯୁକ୍ତିଗୁଡ଼ିକ ଚତୁର୍ବର୍ଣ୍ଣ ବ୍ୟବସ୍ଥା ପ୍ରତି ପ୍ରଯୁଜ୍ୟ ହୋଇପାରିବ । ଯେଉଁ ପର୍ଯ୍ୟନ୍ତ କୌଣସି ବ୍ୟବସ୍ଥାରେ ଜନଗଣଙ୍କୁ କେତୋଟି ନିର୍ଦ୍ଦିଷ୍ଟ ଶ୍ରେଣୀରେ ବିଭାଜନ କରାଯିବ ବୋଲି ଧରାଯିବ ସେ କ୍ଷେତ୍ରରେ ଏହି ସମାଲୋଚନା ଦିଆଯାଇ ପାରିବ । ପ୍ଲେଟୋ ବ୍ୟକ୍ତିମାନଙ୍କୁ ଯେଉଁପରି କେତୋଟି ନିର୍ଦ୍ଦିଷ୍ଟ ଶ୍ରେଣୀରେ ବିଭକ୍ତ କରୁଛନ୍ତି ତାହା ମଣିଷର ଯୋଗ୍ୟତା ଓ ସାମର୍ଥ୍ୟ ଦୃଷ୍ଟିକୋଣରୁ ଅତ୍ୟନ୍ତ ଉପର ଠାଉରିଆ ମନେହୁଏ । ପ୍ରତ୍ୟେକ ବ୍ୟକ୍ତିର ଭିତରେ ରହିଥିବା ସାମର୍ଥ୍ୟ ଓ ସମ୍ଭାବନା ଦୃଷ୍ଟିରୁ ସେ ଅନ୍ୟଠାରୁ ପୃଥକ୍ ଓ ସେ ନିଜେ ହିଁ ନିଜପାଇଁ ଏକ ଶ୍ରେଣୀ । ମଣିଷ ଭିତରେ ଥିବା ଅସଂଖ୍ୟ ସମ୍ଭାବନା, ପ୍ରବୃତ୍ତି ଓ ପ୍ରବୃତ୍ତିମାନଙ୍କର ମିଶ୍ରଣ ବିଷୟ ପ୍ଲେଟୋଙ୍କ ବିଚାରକୁ ଆସିନାହିଁ । ତାଙ୍କ ମତରେ ବ୍ୟକ୍ତି ସ୍ୱରୂପକୁ ନିର୍ଦ୍ଦିଷ୍ଟ ପ୍ରବୃତ୍ତି ଓ ଯୋଗ୍ୟତା ଭିତରେ ବିଭାଜନ କରାଯିବା ସମ୍ଭବ । କିନ୍ତୁ ବାସ୍ତବ ପକ୍ଷେ ଏ ସବୁ ଠିକ୍ ନୁହେଁ । ଆଧୁନିକ ବିଜ୍ଞାନ ମତରେ ସମସ୍ତ ବ୍ୟକ୍ତିମାନଙ୍କୁ

କେତୋଟି ନିର୍ଦ୍ଦିଷ୍ଟ ଶ୍ରେଣୀରେ ଆବଦ୍ଧ କରିବା ଅତ୍ୟନ୍ତ ଉପରଠାଉରିଆ ଏବଂ ଏହାକୁ ଗୁରୁତ୍ୱ ଦେବାର ଆବଶ୍ୟକତା ନାହିଁ । ବ୍ୟକ୍ତିମାନଙ୍କର ଗୁଣ ଓ ପ୍ରବୃତ୍ତି ସ୍ଥାୟୀ ନୁହେଁ ବରଂ ପରିବର୍ତ୍ତନଶୀଳ, ଫଳରେ ସେମାନଙ୍କୁ କେତୋଟି ଶ୍ରେଣୀରେ ବିଭାଜନ କରିବା ଅସଙ୍ଗତ । ଯେଉଁ କାରଣ ପାଇଁ ପ୍ଲେଟୋଙ୍କର ଆଦର୍ଶ ଜନରାଜ୍ୟ ବିଫଳ ହୋଇଛି, ସେହି କାରଣ ଯୋଗୁଁ ଚତୁର୍ବର୍ଣ୍ଣ ବ୍ୟବସ୍ଥା ମଧ୍ୟ କାର୍ଯ୍ୟକାରୀ ହୋଇପାରିବ ନାହିଁ । କାରଣ ବ୍ୟକ୍ତିମାନଙ୍କର ସାମର୍ଥ୍ୟ ଓ ପ୍ରବୃତ୍ତିକୁ ମୂଲ୍ୟାୟନ କରି ସେମାନଙ୍କୁ କେତୋଟି ନିର୍ଦ୍ଦିଷ୍ଟ ଶ୍ରେଣୀ ଭିତରେ ଆବଦ୍ଧ ରଖିବା ସମ୍ପୂର୍ଣ୍ଣ ଅସମ୍ଭବ ଅଟେ । ଜନଗଣଙ୍କୁ ଚାରୋଟି ନିର୍ଦ୍ଦିଷ୍ଟ ଶ୍ରେଣୀରେ ବିଭାଜନ କରିବା ଏପରି ଏକ ଅସମ୍ଭବ ଭାବନା ଯଦ୍ୱାରା ଚାରୋଟି ଶ୍ରେଣୀରେ ବିଭାଜନରୁ କାଳକ୍ରମେ ଚାରିହଜାର ଜାତି ଉଦ୍ଭବ ହୋଇଛି ।

ଚତୁର୍ବର୍ଣ୍ଣ ବ୍ୟବସ୍ଥା ପ୍ରତିଷ୍ଠା କ୍ଷେତ୍ରରେ ଏକ ତୃତୀୟ ପ୍ରତିବନ୍ଧକ ରହିଛି । ଯଦିବା ଏହାର ପ୍ରତିଷ୍ଠା ସମ୍ଭବ ହୁଏ ତେବେ ଏହାକୁ କାର୍ଯ୍ୟକାରୀ କରି ରଖିବା ପାଇଁ କ'ଣ ପଦକ୍ଷେପ ନିଆଯିବ ? ଏହାର ସଫଳ ରୂପାୟନ ଓ କାର୍ଯ୍ୟକାରିତା ପାଇଁ ଆଇନଗତ ବିଧାନ ଆବଶ୍ୟକ ହେବ । କାରଣ ଚତୁର୍ବର୍ଣ୍ଣ ବ୍ୟବସ୍ଥା ସବୁ ସମୟରେ ଉଲ୍ଲଙ୍ଘନ ଜନିତ ସମସ୍ୟାର ସମ୍ମୁଖୀନ ହେବ । ଯଦି ଉଲ୍ଲଙ୍ଘନକୁ ଦଣ୍ଡଦ୍ୱାରା ପ୍ରତିରୋଧ କରା ନଯାଏ ଲୋକମାନେ ନିଜର ବର୍ଣ୍ଣ ଭିତରେ ସୀମିତ ରହିବାକୁ ଚାହିଁବେ ନାହିଁ । ଏହି ବ୍ୟବସ୍ଥା ବ୍ୟକ୍ତି ସ୍ୱଭାବର ପରିପନ୍ଥୀ ହୋଇଥିବାରୁ ସମଗ୍ର ବ୍ୟବସ୍ଥାଟି ଭୁଷୁଡ଼ି ପଡ଼ିବ । ଏହି ବ୍ୟବସ୍ଥା ଏହାର ଅନ୍ତର୍ନିହିତ ଅପୂର୍ଣ୍ଣତା ଯୋଗୁଁ ଚାଲିପାରିବ ନାହିଁ । ଏହାକୁ ଆଇନ ଦ୍ୱାରା ସାବ୍ୟସ୍ତ କରିବାକୁ ହେବ । ଆଇନଗତ ସ୍ୱୀକୃତି ବ୍ୟତୀତ ଚତୁର୍ବର୍ଣ୍ଣ ବ୍ୟବସ୍ଥା କେବେ ପ୍ରତିଷ୍ଠିତ ହୋଇପାରିବ ନାହିଁ । ଏହା ରାମାୟଣରେ ବର୍ଣ୍ଣିତ ରାମଙ୍କର ଶମ୍ବୁକଙ୍କୁ ହତ୍ୟା କରିବା ଘଟଣାରୁ ପ୍ରମାଣିତ । ଶମ୍ବୁକଙ୍କୁ ଅସମ୍ମାନଜନକ ଭାବେ ବିନା କାରଣରେ ରାମ ହତ୍ୟା କରିଥିବାରୁ କେତେକ ରାମଙ୍କୁ ନିନ୍ଦା କରିଥାନ୍ତି । କିନ୍ତୁ ଶମ୍ବୁକଙ୍କୁ ହତ୍ୟା କରିଥିବାରୁ ରାମଙ୍କୁ ନିନ୍ଦା କରିବା ଅର୍ଥ ସମଗ୍ର ବିଷୟଟିକୁ ଭୁଲ ଅବଧାରଣା କରିବା ମନେହୁଏ । ରାମରାଜ୍ୟ ଚତୁର୍ବର୍ଣ୍ଣ ବ୍ୟବସ୍ଥା ଉପରେ ପର୍ଯ୍ୟବସିତ ଥିଲା । ଶାସକ ଭାବରେ ବ୍ୟବସ୍ଥାର ପ୍ରଚଳନ ରଖିବା ରାମଙ୍କର କର୍ତ୍ତବ୍ୟ ବି ଥିଲା । ସୁତରାଂ ଶମ୍ବୁକ ନିଜ ବର୍ଣ୍ଣର ନିୟମକୁ ଉଲ୍ଲଂଘନ କରି ବ୍ରାହ୍ମଣ ହେବା ପାଇଁ ଯେଉଁ ପ୍ରୟାସ କରିଥିଲେ

ସେଥିରେ ରାମ ତାଙ୍କୁ ହତ୍ୟା କରିବା ତାଙ୍କର କର୍ତ୍ତବ୍ୟ ଥିଲା । ବସ୍ତୁତଃ ଚତୁର୍ବର୍ଣ୍ଣ ବ୍ୟବସ୍ଥା ରୂପାୟନପାଇଁ ଆଇନଗତ ବିଧାନ ଆବଶ୍ୟକ ଅଟେ । କେବଳ ଯେ ଆଇନଗତ ବିଧାନ ଆବଶ୍ୟକ ତା ନୁହେଁ, ଏପରିକି ଉଲ୍ଲଂଘନ ପାଇଁ ମୃତ୍ୟୁଦଣ୍ଡ ମଧ୍ୟ ଦରକାର । ସେଥିପାଇଁ ରାମ ଶମ୍ବୁକଙ୍କୁ ମୃତ୍ୟୁ ଦଣ୍ଡଠାରୁ କମ୍ ଦଣ୍ଡରେ ଦଣ୍ଡିତ କରି ନଥିଲେ । ସେହିପରି ମନୁ ସ୍ମୃତିରେ କୌଣସି ଶୂଦ୍ର ବେଦ ପଢ଼ିବା ବା ଶୁଣିବା କ୍ଷେତ୍ରରେ କଠୋର ଦଣ୍ଡର ବିଧାନ ରହିଛି । ସେଥିରେ କୁହାଯାଇଛି କି କୌଣସି ଶୂଦ୍ର ଯଦି ବେଦ ପଢ଼େ ବା ଶୁଣେ ତେବେ ତା'ର ଜିଭ ଛେଦନ କରାଯିବ କିମ୍ବା ଉତ୍ତପ୍ତ ଶିଶା ତା'ର କାନରେ ଢାଳି ଦିଆଯିବ । ଚତୁର୍ବର୍ଣ୍ଣର ସମର୍ଥକମାନେ ସମାଜରେ ସମସ୍ତ ଲୋକମାନଙ୍କୁ ଚାରୋଟି ଶ୍ରେଣୀରେ କିପରି ବିଭାଜନ କରାଯିବ ସେ କ୍ଷେତ୍ରରେ ସ୍ପଷ୍ଟ ଭାବରେ କହିବା ଆବଶ୍ୟକ । ବିଶେଷକରି ବିଂଶ ଶତାବ୍ଦୀର ଆଧୁନିକ ସମାଜରେ ମନୁ ସଂହିତାରେ ଥିବା ଦଣ୍ଡ ବ୍ୟବସ୍ଥାକୁ କିପରି ପ୍ରୟୋଗ କରାଯିବ ତାହା ମଧ୍ୟ ବୁଝାଇବା ଦରକାର ।

ଏତଦ୍‌ବ୍ୟତୀତ ଚତୁର୍ବର୍ଣ୍ଣର ସମର୍ଥକମାନେ ତାଙ୍କ ବ୍ୟବସ୍ଥାରେ ନାରୀମାନଙ୍କର ସ୍ଥାନ କ'ଣ ହେବ ସେ ବିଷୟ ଉପରେ ଚିନ୍ତା କରିଥିବା ମନେହୁଏ ନାହିଁ । ନାରୀମାନଙ୍କୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୁଦ୍ର ଏହି ଚାରି ଶ୍ରେଣୀରେ ବିଭାଜନ କରିହେବ କି ? କିମ୍ବା ସେମାନେ ନିଜ ସ୍ୱାମୀମାନଙ୍କର ବର୍ଣ୍ଣ ଅନୁଯାୟୀ ପରିଚିତ ହେବେ ? ଯଦି ନାରୀମାନଙ୍କର ସାମାଜିକ ସ୍ଥିତି ସେମାନଙ୍କର ବିବାହ ପରେ ସେମାନଙ୍କ ସ୍ୱାମୀମାନଙ୍କର ବର୍ଣ୍ଣ ଅନୁଯାୟୀ ସ୍ଥିରୀକୃତ ହେବ ତେବେ ଚତୁର୍ବର୍ଣ୍ଣ ବ୍ୟବସ୍ଥା ପଶ୍ଚାତରେ ଥିବା ବିଧାନ ସଫଳ ହୋଇପାରିବ ନାହିଁ । କାରଣ ଏହି ବ୍ୟବସ୍ଥା ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ସାମର୍ଥ୍ୟ ଅନୁସାରେ ତା'ର ବର୍ଣ୍ଣ ସ୍ଥିର ହୁଏ, ତେବେ ନାରୀମାନଙ୍କ କ୍ଷେତ୍ରରେ ଏହାର ଉଲ୍ଲଂଘନ ହେଉନାହିଁ କି ? ଯଦି ସେମାନେ ନିଜର ସାମର୍ଥ୍ୟ ଅନୁସାରେ ବିଭାଜିତ ହେବେ ଏହି ବିଭାଜନ ନାମ ମାତ୍ର ହେବ ନା ବାସ୍ତବ ହେବ ? ଯଦି ନାରୀମାନଙ୍କର ବର୍ଗୀକରଣ କେବଳ ନାମକୁ ମାତ୍ର ହେବ ତେବେ ଏହା ବିଫଳ ହେବ ଏବଂ ଚତୁର୍ବର୍ଣ୍ଣର ସମର୍ଥକମାନେ ସ୍ୱୀକାର କରିବାକୁ ବାଧ୍ୟ ହେବେ ଯେ ତାଙ୍କ ବ୍ୟବସ୍ଥାଟି ନାରୀମାନଙ୍କ କ୍ଷେତ୍ରରେ ପ୍ରୟୋଗ ହୋଇପାରିବ ନାହିଁ । ଯଦି ଏହି ବର୍ଗୀକରଣ ବାସ୍ତବ ହେବ, ତେବେ ବର୍ଣ୍ଣ ବ୍ୟବସ୍ଥାର ସମର୍ଥକମାନେ ଏହାର ଅବଶ୍ୟମ୍ଭାବୀ ତାର୍କିକ ପରିଣାମ

କ'ଣ ହେବ ତାହା ବିଚାର କରିଛନ୍ତି କି ? ସେ କ୍ଷେତ୍ରରେ ନାରୀ ପୂଜକ ଓ ନାରୀ ସୈନିକ ରହିବେ । ହିନ୍ଦୁ ସମାଜରେ ନାରୀମାନେ ଅଧ୍ୟାପନା କରିବା ବା ଆଇନଜ୍ଞ ହେବା ବିଷୟ ଜଣାଶୁଣା । ସେହିପରି ନାରୀମାନେ ମଦ ବିକ୍ରି କରିବା ବା କଂସେଇ ହେବା ଘଟଣାକୁ ହିନ୍ଦୁମାନେ ଗ୍ରହଣ କରି ନେବା ଆବଶ୍ୟକ କିନ୍ତୁ ଯେଉଁ ବ୍ୟକ୍ତି ନାରୀମାନେ ପୂଜକ ଓ ସୈନିକ ହେବା କଥାକୁ ପ୍ରତିପାଦନ କରିବେ ସେ ନିଶ୍ଚୟ ଏକ ସାହସିକ ବ୍ୟକ୍ତି ହେବା ଦରକାର । କାରଣ ଚତୁର୍ବର୍ଣ୍ଣ ବ୍ୟବସ୍ଥାକୁ ନାରୀମାନଙ୍କ କ୍ଷେତ୍ରରେ ପ୍ରୟୋଗ କଲେ ତାହାହିଁ ଅବଶ୍ୟମ୍ଭାବୀ ପରିଣାମ ହେବ । ଏହି ପ୍ରତିବନ୍ଧକ ଯୋଗୁଁ ମୋ ମତରେ ଚତୁର୍ବର୍ଣ୍ଣ ବ୍ୟବସ୍ଥାର ସଫଳ ରୂପାୟନରେ ବିଶ୍ୱାସ କରୁଥିବା ବ୍ୟକ୍ତିକୁ କେବଳ ନିର୍ବୋଧ କୁହାଯାଇପାରିବ ।

(୧୭)

## ବର୍ଣ୍ଣବ୍ୟବସ୍ଥା ଅସାଧ୍ୟ ଓ ଅନିଷ୍ଟକର

ଯଦିବି ଚତୁର୍ବର୍ଣ୍ଣ କାର୍ଯ୍ୟକାରୀ ହୋଇପାରିବ ବୋଲି ଗ୍ରହଣ କରାଯାଏ ମୋ ମତରେ ଏହା ଏକ ଅନିଷ୍ଟକର ବ୍ୟବସ୍ଥା ହେବ । ବ୍ରାହ୍ମଣମାନେ ଜ୍ଞାନ ଆହରଣରେ ବ୍ରତୀ ହେବେ, କ୍ଷତ୍ରିୟମାନେ ଅସ୍ତ୍ରଧାରଣ କରିବେ, ବୈଶ୍ୟମାନେ ବାଣିଜ୍ୟ ବ୍ୟବସାୟରେ ସଂପୃକ୍ତ ହେବେ ଓ ଶୂଦ୍ରମାନେ ସେବା କରିବେ । ଏହା ଏକ ଶ୍ରମ ବିଭାଜନ ବ୍ୟବସ୍ଥାକୁ ବୁଝାଇଲା ପରି ମନେହୁଏ । ଶୂଦ୍ରମାନେ ଜ୍ଞାନ ଆହରଣ, ଅସ୍ତ୍ରଧାରଣ ଓ ବାଣିଜ୍ୟ କାରବାର କରିବାର ଆବଶ୍ୟକତା ନାହିଁ ଅଥବା ସେମାନେ ଏହା କରିବା ଉଚିତ ନୁହେଁ; ଏହାର ପ୍ରତିପାଦନ ଏକ କୌତୂହଳର ବିଷୟ ଅଟେ । ଚତୁର୍ବର୍ଣ୍ଣର ସମର୍ଥକମାନେ ପ୍ରଥମ ଅର୍ଥଟିକୁ ଗ୍ରହଣ କରିବେ । ସେମାନେ କହିବେ ଯେ ଯେତେବେଳେ ଅନ୍ୟ ତିନି ବର୍ଣ୍ଣର ଲୋକମାନେ ଶୂଦ୍ରମାନଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ସେତେବେଳେ ଶୂଦ୍ରମାନେ କଷ୍ଟ ସ୍ୱୀକାର କରି ସମ୍ପତ୍ତି ଅର୍ଜନ କରିବାର କ'ଣ ଆବଶ୍ୟକତା ରହିଛି ? ଶୂଦ୍ର ଆବଶ୍ୟକ ବେଳେ ବ୍ରାହ୍ମଣ ପାଖକୁ ଯାଇ କୌଣସି ଲେଖା ପଢ଼ା କାର୍ଯ୍ୟରେ ପରାମର୍ଶ କରି ପାରୁଥିବା ହେତୁ ତା'ର ଶିକ୍ଷାଲାଭ କ'ଣ ଦରକାର ? ସେହିପରି କ୍ଷତ୍ରିୟମାନେ ତାକୁ ରକ୍ଷା କରିବାକୁ ଥିବାରୁ ସେ ଅସ୍ତ୍ରଧାରଣ କରିବାର କ'ଣ ଯଥାର୍ଥତା ରହିଛି ? ଏହି ଅର୍ଥରେ ଚତୁର୍ବର୍ଣ୍ଣର ସିଦ୍ଧାନ୍ତକୁ ଗ୍ରହଣ କଲେ ଏଥିରୁ

ଏହା ବୁଝାପଡ଼ିବ ଯେ ଶୂଦ୍ରମାନେ ଅଧୀନସ୍ଥ ହୋଇ ରହିବେ ଓ ଅନ୍ୟ ତିନିବର୍ଣ୍ଣର ଲୋକମାନେ ତା'ର ରକ୍ଷାକାରୀ ହେବେ । ଏହି ଅର୍ଥରେ ଏହି ସିଦ୍ଧାନ୍ତଟି ସରଳ, ମହନୀୟ ଓ ବେଶ୍ କୌତୂହଳପୂର୍ଣ୍ଣ ଜଣାପଡ଼ିପାରେ । ଯଦି ବି ଏହି ବିଶ୍ଳେଷଣକୁ ଚତୁର୍ବର୍ଣ୍ଣର ଯଥାର୍ଥ ବ୍ୟାଖ୍ୟା ଭାବରେ ନିଆଯାଏ, ତେବେ ମୋ ମତରେ ଏହି ବ୍ୟବସ୍ଥା ଅତ୍ୟନ୍ତ ଭ୍ରାନ୍ତିପୂର୍ଣ୍ଣ ଓ ପ୍ରତାରଣାପୂର୍ଣ୍ଣ ଅଟେ । ଯଦି ବ୍ରାହ୍ମଣ, ବୈଶ୍ୟ, କ୍ଷତ୍ରିୟ ଯଥାକ୍ରମେ ଜ୍ଞାନ ଉପାର୍ଜ୍ଜନ, ଅର୍ଥନୈତିକ ସମୃଦ୍ଧି ଓ ସକ୍ଷମ ସୈନିକ ହେବାକୁ କ୍ରମଶଃ ପ୍ରୟାସ ନ କରିବେ କିମ୍ବା ସେମାନଙ୍କର କର୍ତ୍ତବ୍ୟରେ ବିଫଳ ହେବେ ତେବେ ପରିସ୍ଥିତି କ'ଣ ହେବ ? ଏପରିକି ସେମାନେ ସେମାନଙ୍କ ବର୍ଣ୍ଣର ସ୍ଥିରୀକୃତ କାର୍ଯ୍ୟକରି ମଧ ଶୂଦ୍ରମାନଙ୍କ ପ୍ରତି ସେମାନଙ୍କର କର୍ତ୍ତବ୍ୟରେ ଅବହେଳା କଲେ, ପରସ୍ପର ପ୍ରତି ରହିଥିବା ଦାୟିତ୍ୱ ସୁଚାରୁ ରୂପେ ସମ୍ପାଦନ ନ କଲେ ଶୂଦ୍ରମାନଙ୍କୁ ନ୍ୟାୟୋଚିତ ଭାବରେ ସହଯୋଗ ନଦେଲେ କିମ୍ବା ଏପରିକି ଏହି ତିନିବର୍ଣ୍ଣର ଲୋକମାନେ ଶୂଦ୍ରମାନଙ୍କୁ ପଦଦଳିତ କରି ରଖିବାକୁ ସମ୍ମିଳିତ ହେଲେ ଶୂଦ୍ରମାନଙ୍କର ସ୍ୱାର୍ଥକୁ କିଏ ରକ୍ଷାକରିବ ? ସେହିପରି ବୈଶ୍ୟ ଓ କ୍ଷତ୍ରିୟମାନଙ୍କର ପରିସ୍ଥିତି ମଧ କ'ଣ ହେବ ? ଶୂଦ୍ରମାନଙ୍କର ସ୍ୱାଧୀନତା ଓ ଏପରିକି ବ୍ରାହ୍ମଣ ଓ ବୈଶ୍ୟମାନଙ୍କ ସ୍ୱାଧୀନତା ଯଦି କ୍ଷତ୍ରିୟମାନେ ଅପହରଣ କରିବେ ତେବେ ସେମାନଙ୍କର ସ୍ୱାଧୀନତା କିପରି ରକ୍ଷା ହେବ ? ସମାଜରେ ଗୋଟିଏ ଶ୍ରେଣୀ ଅନ୍ୟ ଶ୍ରେଣୀ ଉପରେ ନିର୍ଭର କରିବା ଅବଶ୍ୟମ୍ଭାବୀ ମନେହୁଏ । ଏପରିକି ଏହି ପାରସ୍ପରିକ ନିର୍ଭରଶୀଳତା ବା ଏକ ଶ୍ରେଣୀର ଅନ୍ୟ ଶ୍ରେଣୀ ଉପରେ ନିର୍ଭରଶୀଳତାକୁ ଅନୁମୋଦନ କରାଗଲେ ମଧ ବ୍ୟକ୍ତିର ମୌଳିକ ଆବଶ୍ୟକତା କ୍ଷେତ୍ରରେ ଜଣେ କାହିଁକି ଅନ୍ୟର ଆଶ୍ରିତ ହୋଇ ରହିବ ? ପ୍ରତ୍ୟେକ ବ୍ୟକ୍ତିର ଶିକ୍ଷା ପାଇବା ଆବଶ୍ୟକ । ସେହିପରି ନିଜର ଆତ୍ମରକ୍ଷା କରିବା ପାଇଁ ପ୍ରତ୍ୟେକ ବ୍ୟକ୍ତିର ସୁଯୋଗ ଓ ସାଧନ ରହିବା ଦରକାର । ନିଜର ପଡ଼ୋଶୀ ଶିକ୍ଷିତ ହେବା ଓ ଆତ୍ମରକ୍ଷା ପାଇଁ ଅସ୍ତ୍ରଧାରଣ କରିବା ଦ୍ୱାରା ଜଣେ ଅଶିକ୍ଷିତ ଏବଂ ନିରସ୍ତ୍ର ଲୋକ କିପରି ଉପକୃତ ହେବ ? ସୁତରାଂ ସମଗ୍ର ସିଦ୍ଧାନ୍ତଟି ଅବାସ୍ତବ ମନେହୁଏ । ଏହିସବୁ ପ୍ରଶ୍ନ ଉପରେ ଚତୁର୍ବର୍ଣ୍ଣର ସମର୍ଥକମାନେ ଗଭୀର ଆଲୋଚନା କରିଥିବା ମନେହୁଏ ନାହିଁ । କିନ୍ତୁ ଏହି ପ୍ରଶ୍ନଗୁଡ଼ିକ ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ମତ ଯଦିବି ଗ୍ରହଣ କରାଯାଏ , ତେବେ ବର୍ଣ୍ଣମାନଙ୍କ ଭିତରେ ସମ୍ପର୍କ ରକ୍ଷିତ ଓ ରକ୍ଷାକାରୀର ସମ୍ବନ୍ଧ ଅଟେ । ଏଥିରେ କୌଣସି ରକ୍ଷାକାରୀଙ୍କର

ରକ୍ଷିତଙ୍କ ପ୍ରତି ମନ୍ଦ କାର୍ଯ୍ୟକୁ ପ୍ରତିହତ କରିବା ଓ ରକ୍ଷିତମାନଙ୍କର ସ୍ୱାର୍ଥକୁ ରକ୍ଷାକରିବା କ୍ଷେତ୍ରରେ କୌଣସି ବ୍ୟବସ୍ଥା ନାହିଁ । ଯଦି ବି ଚତୁର୍ବର୍ଣ୍ଣ ବ୍ୟବସ୍ଥା ପଶ୍ଚାତରେ ଥିବା ଦୃଷ୍ଟିଭଙ୍ଗୀ ଯଥା-ବର୍ଣ୍ଣମାନଙ୍କ ଭିତରେ ରହିଥିବା ସମ୍ବନ୍ଧ ରକ୍ଷିତ ରକ୍ଷାକାରୀର ସମ୍ପର୍କ ଅଟେ, ତଥାପି ବାସ୍ତବ ପକ୍ଷେ ସେମାନଙ୍କର ସମ୍ପର୍କ ପ୍ରଭୁ ଓ ଭୃତ୍ୟର ସମ୍ପର୍କ ହୋଇ ଆସିଛି । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ଯଦିବା ସେମାନଙ୍କର ପାରସ୍ପରିକ ସମ୍ପର୍କ ନେଇ ସନ୍ତୁଷ୍ଟ ନୁହନ୍ତି ତଥାପି ସେମାନେ କୌଣସି ପ୍ରକାରେ ବୁଝାମଣା କରି ଏହା ସମ୍ପନ୍ନ କରି ଆସିଛନ୍ତି । ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କୁ ଦରକାର ବେଳେ ଖୋସାମତ କରିଛନ୍ତି ଓ ଉଭୟ ମିଶି ବୈଶ୍ୟ ସହ ସମ୍ପର୍କ ଆଣିଛନ୍ତି କାରଣ ସେମାନେ ବୈଶ୍ୟମାନଙ୍କ ଉପରେ ନିର୍ଭର କରି ରହିଛନ୍ତି । କିନ୍ତୁ ଏହି ତିନି ବର୍ଣ୍ଣର ଲୋକମାନେ ଶୂଦ୍ରମାନଙ୍କୁ ପଦ ଦଳିତ କରି ରଖିବାରେ ଏକମତ ହୋଇଛନ୍ତି । ଶୂଦ୍ର ସମ୍ପତ୍ତି ଅର୍ଜନ କରିବାକୁ ଅନୁମତି ପାଇନାହିଁ କାରଣ ସେ ଯଦି ସମ୍ପତ୍ତିର ଅଧିକାରୀ ହୁଏ ତେବେ ସେ ଅନ୍ୟ ବର୍ଣ୍ଣଠାରୁ ସ୍ୱାଧୀନ ହୋଇ ରହିପାରିବ । ଜ୍ଞାନ ଆହରଣ କରିବା କ୍ଷେତ୍ରରେ ତାକୁ ବାରଣ କରାଯାଇଛି କାରଣ ତାହା କଲେ ସେ ତା'ର ହିତରକ୍ଷା ପାଇଁ ସଚେତନ ହୋଇପାରିବ । ସେହିପରି ଅସ୍ତ୍ରଧାରଣ କରିବାକୁ ତାକୁ ବଞ୍ଚିତ କରାଯାଇଛି କାରଣ ଅସ୍ତ୍ରଧାରଣ କଲେ ସେ ଆବଶ୍ୟକ ବେଳେ ଅନ୍ୟ ବର୍ଣ୍ଣମାନଙ୍କର ପ୍ରଭୁତ୍ୱ ବିରୁଦ୍ଧରେ ଆନ୍ଦୋଳନ କରିପାରିବ । ମନୁ ସ୍ମୃତିରେ ଥିବା ବିଧାନ କ୍ଷେତ୍ରରେ ଶୂଦ୍ରମାନଙ୍କୁ ଏହିପରି ତିନିବର୍ଣ୍ଣ ଦ୍ୱାରା ପଦ ଦଳିତ କରି ରଖାଯାଇଛି । ସାମାଜିକ ଅଧିକାର କ୍ଷେତ୍ରରେ ମନୁ ସଂହିତାଠାରୁ ଅନ୍ୟ କୌଣସି ବିଧାନ ଅଧିକ ମନ୍ଦ ବା ଗର୍ହିତ ହୋଇପାରିବ ନାହିଁ । ସାମାଜିକ ଅନ୍ୟାୟ କ୍ଷେତ୍ରରେ ଅନ୍ୟ ଯେ କୌଣସି ଦୃଷ୍ଟାନ୍ତ ମନୁଙ୍କ ପାଖରେ ମଳିନ ପଡ଼ିଯିବ । ସମାଜର ଅଗଣିତ ଜନଗଣ କାହିଁକି ଏହି ସାମାଜିକ ଅନ୍ୟାୟ ଓ ମନ୍ଦ ବ୍ୟବସ୍ଥାକୁ ସହ୍ୟ କରିଛନ୍ତି ? ପୃଥିବୀର ଅନ୍ୟ ଦେଶମାନଙ୍କରେ ସାମାଜିକ ବିପ୍ଳବ ସଂଘଟିତ ହୋଇଛି । କିନ୍ତୁ ଭାରତବର୍ଷରେ କାହିଁକି ସାମାଜିକ ବିପ୍ଳବ ହୋଇନାହିଁ ? ଏହି ପ୍ରଶ୍ନ ମୋତେ ନିରନ୍ତର ଚିନ୍ତିତ କରାଇଛି । ଏହାର ମୁଁ ଏକ ମାତ୍ର ଉତ୍ତର ଦେଖୁଛି । ହିନ୍ଦୁ ସମାଜରେ ପ୍ରତାରଣା ପୂର୍ଣ୍ଣ ଚତୁର୍ବର୍ଣ୍ଣ ବ୍ୟବସ୍ଥା ମାଧ୍ୟମରେ ନିମ୍ନ ଶ୍ରେଣୀରେ ଥିବା ଜନଗଣଙ୍କୁ ଅସହାୟ କରି ରଖାଯାଇଥିବା ହେତୁ ଏଠାରେ

---

ସାମାଜିକ କ୍ରାନ୍ତିର ସୂତ୍ରପାତ ହୋଇନାହିଁ । ସେମାନେ କୌଣସି ଅସ୍ତ୍ରଧାରଣ କରିପାରିବେ ନାହିଁ, ଅସ୍ତ୍ରଧାରଣ ନ କଲେ ସେମାନେ ବିପ୍ଳବ କରିବାକୁ କିପରି ସମର୍ଥ ହେବେ ? ସେମାନେ ହଳ ଧରି ରହିବେ ଓ ସେହି ସ୍ଥିତିରେ ରହିବାକୁ ବାଧ୍ୟ । କିନ୍ତୁ ନିଜର ହଳ ଲଙ୍ଗଳକୁ ଅସିରେ ପରିଣତ କରିବା ପାଇଁ ସେମାନଙ୍କୁ କୌଣସି ସମୟରେ ଅଧିକାର ବା ସ୍ୱାଧୀନତା ଦିଆଯାଇନାହିଁ । ସେମାନେ ଅସ୍ତ୍ରଧାରଣ ନ କରି ପାରିବାରୁ ଅନ୍ୟମାନେ ସେମାନଙ୍କ ଉପରେ ପ୍ରଭୁତ୍ୱ ଜାହିର କରି ଆସିଛନ୍ତି । ଚତୁର୍ବର୍ଣ୍ଣ ବ୍ୟବସ୍ଥା ଯୋଗୁଁ ଶୂଦ୍ରମାନେ ଶିକ୍ଷାରୁ ବଞ୍ଚିତ ହୋଇଛନ୍ତି । ସେମାନେ ସେମାନଙ୍କ ଅବସ୍ଥାରୁ କିପରି ମୁକ୍ତି ପାଇବେ ତାହା ଜାଣିବାର ଓ ଏପରିକି ଚିନ୍ତା କରିବାର ସୁଯୋଗ ପାଇ ନାହାନ୍ତି । ଏହି ସ୍ଥିତିରେ ସେମାନେ ନ୍ୟୂନ ହୋଇ ରହିବାକୁ ବାଧ୍ୟ ହୋଇଛନ୍ତି । ମୁକ୍ତିର ବାଟ ନଜାଣି କିମ୍ବା ଏଥିପାଇଁ କୌଣସି ସାଧନ ରଖି ନପାରି ସେମାନେ ଚିରଦିନ ପାଇଁ ଦାସତ୍ୱକୁ ବରଣ କରିନେଲେ । ଏହିଭଳି ନ୍ୟୂନ ହୋଇ ରହିବା ସେମାନଙ୍କର ଭାଗ୍ୟ ଲିଖନ ବୋଲି ସେମାନେ ଅକ୍ଲେଶରେ ବିଶ୍ୱାସ କରିନେଲେ । ୟୁରୋପରେ ଶକ୍ତିଶାଳୀ ଲୋକମାନେ ଦୁର୍ବଳମାନଙ୍କୁ ଶୋଷଣ କରିଛନ୍ତି କିନ୍ତୁ ସେହି ସବଳ ଲୋକମାନେ ଦୁର୍ବଳମାନଙ୍କୁ ଅସହାୟ କରି ରଖିବାକୁ କୌଣସି ସୂତ୍ର ବାହାର କରି ନାହାନ୍ତି, ଯେପରି ଭାରତରେ ହିନ୍ଦୁ ସମାଜରେ ହୋଇଛି । ୟୁରୋପରେ ସବଳ ଓ ଦୁର୍ବଳମାନଙ୍କ ମଧ୍ୟରେ ଭୟଙ୍କର ସାମାଜିକ ସଂଘର୍ଷ ହୋଇଛି କିନ୍ତୁ ତାହା ଭାରତରେ ସମ୍ଭବ ହୋଇନାହିଁ । ୟୁରୋପ୍‌ରେ ଦୁର୍ବଳମାନେ ସୈନ୍ୟ ବିଭାଗରେ କର୍ମ ସଂସ୍ଥାନ ଦ୍ୱାରା ଶାରୀରିକ ସାମର୍ଥ୍ୟ, ଦୁଃଖ କଷ୍ଟରେ ସରକାର ବିରୁଦ୍ଧରେ ଆନ୍ଦୋଳନ କରିବା ପାଇଁ ରାଜନୈତିକ ଅଧିକାର ଓ ଶିକ୍ଷାଲାଭ ଦ୍ୱାରା ନୈତିକ ଅସ୍ତ୍ରଧାରଣରୁ କେବେ ବଞ୍ଚିତ ହେଇନାହାନ୍ତି । ସେମାନେ ଏହି ସ୍ୱାଧୀନତା ପାଇ ଆସିଛନ୍ତି ଓ ସବଳ ଲୋକମାନେ ଦୁର୍ବଳ ଲୋକମାନଙ୍କୁ ଏଥିରୁ ବଞ୍ଚିତ କରିନାହାନ୍ତି । ମଣିଷର ମୁକ୍ତି ପାଇଁ ଏ ସବୁ ଅତ୍ୟନ୍ତ ଦରକାରୀ । କିନ୍ତୁ ଭାରତ ବର୍ଷରେ ଚତୁର୍ବର୍ଣ୍ଣ ଦ୍ୱାରା ଶୂଦ୍ର ଜନଗଣଙ୍କୁ ଏହି ତିନି ଅସ୍ତ୍ରରୁ ବଞ୍ଚିତ କରାଯାଇଛି । ସୁତରାଂ ଚତୁର୍ବର୍ଣ୍ଣଠାରୁ ଅଧିକ ପ୍ରତାରଣା ପୂର୍ଣ୍ଣ ସାମାଜିକ ବିଧାନ ଅନ୍ୟ କେଉଁଠାରେ ନାହିଁ । ଏହି ବ୍ୟବସ୍ଥା ଲୋକମାନଙ୍କୁ ଅସହାୟ,ପଙ୍ଗୁ ଓ ମୃତପ୍ରାୟ କରି ରଖିବା

ଦ୍ୱାରା ସେମାନେ କୌଣସି ସ୍ୱର ଉତ୍ତୋଳନ କରିପାରି ନାହାନ୍ତି । ଏହା କହିବା ପଛରେ ଅତିରଞ୍ଜନ ନାହିଁ । ଇତିହାସରେ ଏହାର ଅନେକ ଉଦାହରଣ ରହିଛି । ଭାରତ ଇତିହାସରେ ଗୋଟିଏ ସମୟ ଥିଲା ଯାହାକି ସ୍ୱାଧୀନତା, ମହାନତା ଓ ଗୌରବର ସମୟ କହିଲେ ଅତ୍ୟୁକ୍ତି ହେବନାହିଁ । ମୌର୍ଯ୍ୟ ସାମ୍ରାଜ୍ୟ ବେଳେ ଏହି ସୁବର୍ଣ୍ଣ ଯୁଗଟି ' ଦିଥିଲା । ଅନ୍ୟ ସମୟରେ ଭାରତରେ ପରାଜୟ ଓ ଅନ୍ଧକାରର ସମୟ ଥିଲା । ମୌର୍ଯ୍ୟ ଯୁଗରେ ଚତୁର୍ବର୍ଣ୍ଣ ବ୍ୟବସ୍ଥା ଲୋପ ପାଇଥିଲା କାରଣ ଶୂଦ୍ର ଯେଉଁମାନେ ଜନସଂଖ୍ୟାର ମୁଖ୍ୟ ଅଂଶ ଥିଲେ, ସେମାନେ ଶାସନ ଭାର ହାତକୁ ନେଇଥିଲେ । କିନ୍ତୁ ଯେତେବେଳେ ଚତୁର୍ବର୍ଣ୍ଣର ପ୍ରସାର ହୋଇଛି ସେତେବେଳେ ଦେଶ ପରାଜୟ ଓ ଅନ୍ଧକାରର ଗ୍ଲାନିରେ ବୁଡ଼ି ରହିଛି । ଦେଶର ଅଧିକାଂଶ ଜନଗଣ ଅପବାଦ ଓ ପରାଜୟକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି ।

(୧୮)

ଚତୁର୍ବର୍ଣ୍ଣ ବ୍ୟବସ୍ଥା ନୂଆ ନୁହେଁ । ବେଦ ଯେତିକି ପ୍ରାଚୀନ ଏହା ସେତିକି ପୁରାତନ । ସମ୍ଭବତଃ ଏହି କାରଣ ଯୋଗୁଁ ଆର୍ଯ୍ୟ ସମାଜୀମାନେ ଏହାକୁ ବିଚାର କରିବାକୁ ଆମକୁ କହିଥାନ୍ତି । ସାମାଜିକ ସଂଗଠନ କ୍ଷେତ୍ରରେ ଏହି ବ୍ୟବସ୍ଥା ଅତୀତରେ ପ୍ରୟୋଗ ହୋଇ ବିଫଳ ହୋଇଛି । ଅତୀତରେ କେତେବାର ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କୁ ବିନାଶ କରିବାକୁ ପ୍ରୟାସ କରିନାହାନ୍ତି କି ? ସେହିପରି କ୍ଷତ୍ରିୟମାନେ ବ୍ରାହ୍ମଣମାନଙ୍କୁ ଧ୍ୱଂସ କରିବା ପାଇଁ ମଧ୍ୟ ଚେଷ୍ଟା କରିଛନ୍ତି । ମହାଭାରତ ଓ ପୁରାଣମାନଙ୍କରେ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ଏହି ସଂଘର୍ଷର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏପରିକି ଅତି ତୁଚ୍ଛ ଘଟଣାରେ ସେମାନଙ୍କ ଭିତରେ କଳହ ହୁଏ । କିଏ କାହାକୁ ପ୍ରଥମେ ନମସ୍କାର କରିବ, ରାସ୍ତାରେ ସାକ୍ଷାତକାରରେ କିଏ କାହାକୁ ପ୍ରଥମେ ବାଟ ଛାଡ଼ିଦେବ ଇତ୍ୟାଦି ଘଟଣାରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ଭିତରେ ବିବାଦର କାହାଣୀ ଦେଖିବାକୁ ମିଳେ । ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କର ଓ କ୍ଷତ୍ରିୟମାନେ ବ୍ରାହ୍ମଣମାନଙ୍କର ଚକ୍ଷୁଶୀଳ ହେବା ଘଟଣା ସୁବିଦିତ ଅଟେ । କ୍ଷତ୍ରିୟମାନେ ବହୁ ସମୟରେ ନିରସ୍ତ୍ର ଜନଗଣଙ୍କ ଉପରେ ଅତ୍ୟାଚାର କରିଛନ୍ତି । ଚତୁର୍ବର୍ଣ୍ଣ ବ୍ୟବସ୍ଥା

ଦ୍ୱାରା ଅନ୍ୟ ବର୍ଣ୍ଣର ଲୋକମାନେ ନିରସ୍ତ୍ର ରହିଥିବାରୁ କ୍ଷତ୍ରିୟମାନଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ସର୍ବଶକ୍ତିମାନ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି । ଭାଗବତରେ ଏହା ପ୍ରାଞ୍ଜଳ ଭାବରେ କୁହାଯାଇଛି ଯେ ଭଗବାନ କୃଷ୍ଣ କ୍ଷତ୍ରିୟମାନଙ୍କୁ ବିନାଶ କରିବାର ମହାନ୍ ଲକ୍ଷ୍ୟରେ ଅବତାର ନେଇଛନ୍ତି । ବିଭିନ୍ନ ବର୍ଣ୍ଣମାନଙ୍କ ମଧ୍ୟରେ ଏପରି ଶତ୍ରୁତା ଓ ସଂଘର୍ଷ ପରିପ୍ରେକ୍ଷୀରେ ଚତୁର୍ବର୍ଣ୍ଣ ବ୍ୟବସ୍ଥା ଏକ ଆଦର୍ଶ ବ୍ୟବସ୍ଥା ହୋଇପାରିବ କିମ୍ବା ଏହି ଆଦର୍ଶରେ ହିନ୍ଦୁ ସମାଜର ପୁନର୍ଗଠନ କରିହେବ ଏହା ଅବାନ୍ତର ମନେହୁଏ ।

## (୧୯)

## ଅଣହିନ୍ଦୁ ସମାଜ ଓ ଜାତିଭେଦ

ମୁଁ ବର୍ତ୍ତମାନ ସୁଦ୍ଧା ଯେଉଁମାନଙ୍କ ସମ୍ପର୍କରେ ଆଲୋଚନା କରିଛି ସେମାନେ ଆପଣଙ୍କର ସମର୍ଥକ ନୁହନ୍ତି ଏବଂ ଆପଣଙ୍କ ଆଦର୍ଶ ପ୍ରତି ସେମାନଙ୍କର ବିରୋଧ ବେଶ୍ ଜଣାଶୁଣା । କିନ୍ତୁ ଅନ୍ୟ କେତେକ ଅଛନ୍ତି ଯେଉଁମାନେ ଆପଣଙ୍କର ସମର୍ଥକ ନୁହନ୍ତି କିମ୍ବା ବିରୋଧୀ ମଧ୍ୟ ନୁହନ୍ତି । ମୁଁ ସେମାନଙ୍କର ଦୃଷ୍ଟିକୋଣ ସମ୍ପର୍କରେ ଆଲୋଚନାକରିବି କି ନାହିଁ ଦ୍ୱନ୍ଦ୍ୱ ଭିତରେ ଥିଲି । କିନ୍ତୁ ମୁଁ ପରେ ସ୍ଥିର କଲି ଯେ ଦୁଇଟି କାରଣ ପାଇଁ ସେମାନଙ୍କ ସମ୍ପର୍କରେ ଆଲୋଚନା କରିବି । ପ୍ରଥମ କାରଣଟି ହେଲା ଜାତି ପ୍ରତି ସେମାନଙ୍କର ଦୃଷ୍ଟିକୋଣ ଯେ କେବଳ ନିରପେକ୍ଷ ତାହା ନୁହଁ, ଏହି ନିରପେକ୍ଷ ଭାବ ଏକ ଯଥାର୍ଥ କାରଣ ଉପରେ ଆଧାରିତ । ଦ୍ୱିତୀୟ କାରଣଟି ହେଲା ସେମାନେ ଜନ ସମୂହର ଏକ ପ୍ରମୁଖ ଅଂଶ । ସେମାନଙ୍କ ଭିତରୁ ଗୋଟିଏ ଗୋଷ୍ଠୀ ହିନ୍ଦୁମାନଙ୍କର ଜାତି ବ୍ୟବସ୍ଥାରେ ସେହିପରି କିଛି ବୈଶିଷ୍ଟ୍ୟ ଥିବା ବା ଏହା ଗର୍ହିତ କିମ୍ବା ଅପମାନଜନକ ହେବା ଗ୍ରହଣ କରନ୍ତି ନାହିଁ । ସେହି ହିନ୍ଦୁମାନେ ସେମାନଙ୍କର ଜାତିପ୍ରଥାକୁ ସମର୍ଥନ କରି ଆତ୍ମସନ୍ତୋଷ ଲାଭ କରନ୍ତି ଯେ ଏହି ବ୍ୟବସ୍ଥା ମୁସଲମାନ, ଶିଖ ଓ ଖ୍ରୀଷ୍ଟିୟାନମାନଙ୍କ ମଧ୍ୟରେ ପ୍ରଚଳିତ ରହିଛି । ଏହି ପ୍ରଶ୍ନଟିକୁ ଆଲୋଚନା କଲାବେଳେ ଆପଣମାନେ ପ୍ରଥମରୁ ମନେରଖିବା ଉଚିତ ହେବ ଯେ ପୃଥିବୀରେ କେଉଁଠି ମଣିଷ ସମାଜ ଗୋଟିଏ ଏକକ ଜନ ସଂଗଠନ ନୁହେଁ । ସମାଜ ସର୍ବଦା ବହୁ ପ୍ରକାର ସଂଗଠନରେ ଗଢ଼ା । ସାଂସାରିକ କର୍ମ କ୍ଷେତ୍ରରେ ବ୍ୟକ୍ତି ଗୋଟିଏ

ସୀମାରେ ଓ ସମାଜ ଅନ୍ୟ ଗୋଟିଏ ସୀମାରେ ଅବସ୍ଥିତ । ସେମାନଙ୍କ ମଧ୍ୟରେ ସାନ ବଡ଼ ବହୁ ସଂଘୀୟ ଜନସମୂହ ଯଥା ପରିବାର, ବନ୍ଧୁତା, ସମବାୟ ସଂଘ, ବାଣିଜ୍ୟିକ ଗୋଷ୍ଠୀ, ରାଜନୈତିକ ଦଳ ଓ ଏପରିକି ଚୋର ଡାକୁଦଳ ଦୃଷ୍ଟିଗୋଚର ହୁଏ । କ୍ଷୁଦ୍ର ଜନସମୂହଗୁଡ଼ିକ ପରସ୍ପର ସହ କେତେକ କ୍ଷେତ୍ରରେ ସମ୍ବନ୍ଧିତ ଥିବାବେଳେ ଅନ୍ୟ କ୍ଷେତ୍ରରେ ସେମାନେ ଅନ୍ୟମାନଙ୍କଠାରୁ ଜାତି ଭଳି ପୃଥକ୍ ଜଣାପଡ଼ନ୍ତି । ଏପରିକି କେତେକ ସଙ୍କୁଚିତ ଭାବନା ଓ ଗହନ ସଂହିତା ଦ୍ୱାରା ପରିଚାଳିତ ହୁଅନ୍ତି ଯାହା ବହୁ ସମୟରେ ସମାଜ ବିରୋଧୀ ମନେହୁଏ । ୟୁରୋପ ହେଉ ବା ଏସିଆ ହେଉ ପ୍ରତ୍ୟେକ ସମାଜ ପରିପ୍ରେକ୍ଷୀରେ ଏହା ସୂତ୍ର ଅଟେ । ସୁତରାଂ ଏକ ସମାଜ ଏକ ଆଦର୍ଶ ଜନଗୋଷ୍ଠୀ କି ନୁହେଁ ଏହି ପ୍ରଶ୍ନକୁ ନିର୍ଣ୍ଣୟ କଲାବେଳେ ଏଥିରେ କେତେ ସଂଘ ରହିଛି ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ । କାରଣ ପ୍ରତ୍ୟେକ ସମାଜରେ ଛୋଟବଡ଼ ବହୁସଂଘ ରହିଥାଏ । କିନ୍ତୁ ଗୋଟିଏ ଆଦର୍ଶ ସମାଜର ମାନଦଣ୍ଡ ବିଚାର କଲାବେଳେ ଜନସାଧାରଣଙ୍କର ବହୁବିଧ ହିତ ସାଧନ କରିବା ପାଇଁ ଏହି ଜନସଂଘଗୁଡ଼ିକ କେତେଦୂର ସଚେତନ ଭାବରେ ପରସ୍ପର ସମ୍ବନ୍ଧିତ ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଅର୍ଥାତ୍ ବିଭିନ୍ନ ସଂଘ ସ୍ୱାଧୀନ ଭାବେ କେତେଦୂର ପରସ୍ପର ସହିତ ସମ୍ବନ୍ଧିତ ଓ ଜନସମୂହର ହିତ ପ୍ରତି ଉନ୍ମୁକ୍ତ ? ଏହି ଆଦର୍ଶ ଓ ସଂଘୀୟ ଶକ୍ତି ଜନଗଣଙ୍କ ସମ୍ପର୍କକୁ ସୁଦୃଢ଼ କରିବାରେ ଅଥବା ପରସ୍ପରଠାରୁ ପୃଥକ୍ କରିବାରେ ବେଶୀ ସହାୟକ ? ସଂଘବଦ୍ଧ ଜୀବନ ଧାରାରେ ପ୍ରତିଫଳିତ ହେଉଥିବା ଆଦର୍ଶର ସାମାଜିକ ତାତ୍ପର୍ଯ୍ୟ କ'ଣ ? ଜନଗଣଙ୍କୁ ପୃଥକ୍ କରୁଥିବା ଏହି ଆଦର୍ଶ ସମୂହ ପରମ୍ପରାଗତ ବା ସୁବିଧା ପାଇଁ ଉଦ୍ଦିଷ୍ଟ ନା ଏଗୁଡ଼ିକ ଧର୍ମଭିତ୍ତିକ ଏହି ପ୍ରଶ୍ନଗୁଡ଼ିକର ଭିତ୍ତି ଉପରେ ଅଣହିନ୍ଦୁମାନଙ୍କ ଭିତରେ ଥିବା ଜାତି ବ୍ୟବସ୍ଥା ହିନ୍ଦୁମାନଙ୍କ ଭିତରେ ଥିବା ଜାତି ବ୍ୟବସ୍ଥା ସହିତ ସମାନ କି ନୁହଁ ତାହା ବିଚାର କରାଯିବା ଆବଶ୍ୟକ । ଏହିସବୁ ମାନଦଣ୍ଡରୁ ମୁସଲମାନ, ଶିଖ ଓ ଖ୍ରୀଷ୍ଟିୟାନମାନଙ୍କ ମଧ୍ୟରେ ଥିବା ଜାତି ଓ ହିନ୍ଦୁମାନଙ୍କ ଭିତରେ ଥିବା ଜାତି ଭିତରେ ମୌଳିକ ପାର୍ଥକ୍ୟ ବିଦ୍ୟମାନ । ହିନ୍ଦୁମାନଙ୍କୁ ସଚେତନ ଭାବେ ଏକତା ସୂତ୍ରରେ ବାନ୍ଧିରଖିବା ପାଇଁ ସେପରି କୌଣସି ଆଦର୍ଶ ନାହିଁ; ଅଥଚ ଅଣହିନ୍ଦୁମାନଙ୍କ ମଧ୍ୟରେ ସେପରି ଅନେକ ଆଦର୍ଶ ରହିଛି । କୌଣସି ସମାଜର ଶକ୍ତି ବିଭିନ୍ନ ଜନସମୂହଙ୍କ ଭିତରେ ଥିବା ସହଯୋଗର ଆଧାର ଏବଂ ପାରସ୍ପରିକ ସମ୍ବନ୍ଧର ସମ୍ଭାବନା ଉପରେ

ନିର୍ଭର କରେ । କାର୍ଲାଇଲଙ୍କ ଭାଷାରେ କହିଲେ ଏହି ଚେତନ ସୂତ୍ର (Organic filament) ବା ନମନୀୟ ବନ୍ଧନ ସମୂହ ଭିତରେ ଥିବା ବିଭେଦ ଓ ଭିନ୍ନତାକୁ ଦୂରକରି ସମସ୍ତଙ୍କ ଭିତରେ ଏକତ୍ୱ ଭାବ ସୃଷ୍ଟି କରିଥାଏ । ହିନ୍ଦୁମାନଙ୍କର ଜାତିପ୍ରଥାରୁ ଉଦ୍ଭବ ଅସଂହତିକୁ ପ୍ରତିରୋଧ କରି ସେମାନଙ୍କୁ ସଂହତି ସୂତ୍ରରେ ଏକତ୍ର କରିବାର କୌଣସି ଆଦର୍ଶ ନାହିଁ । ଅପରପକ୍ଷରେ ଅଣହିନ୍ଦୁମାନଙ୍କ ଭିତରେ ଏପରି ଚେତନ ସୂତ୍ର ରହିଛି ଯାହା ସେମାନଙ୍କୁ ଏକତ୍ର କରିପାରେ । ଅଣହିନ୍ଦୁମାନଙ୍କ ମଧ୍ୟରେ ଜାତିଥିଲେ ମଧ୍ୟ ହିନ୍ଦୁମାନଙ୍କ କ୍ଷେତ୍ରରେ ଜାତିର ଯେଉଁ ସାମାଜିକ ତାତ୍ପର୍ଯ୍ୟ ରହିଛି ତାହା ସେମାନଙ୍କ ପାଖରେ ନାହିଁ । କୌଣସି ମୁସଲମାନ ବା ଶିଖ୍‌କୁ ତାଙ୍କର ପରିଚୟ ପଚାରିଲେ ସେ ଯାହା ହୋଇଥିବେ ମୁସଲମାନ କିମ୍ବା ଶିଖ୍ ଭାବରେ ନିଜକୁ ପରିଚିତ କରାଇବେ । ସେ କେବେ ହେଲେ ତାଙ୍କ ଜାତିଦ୍ୱାରା ତାଙ୍କର ପରିଚୟ ଦେବେନାହିଁ । ଜଣେ ବ୍ୟକ୍ତିଙ୍କର ମୁସଲମାନ ବା ଶିଖ୍ ଭାବରେ ପରିଚୟ ପାଇଲା ପରେ ଆପଣ ତାଙ୍କୁ ତାଙ୍କର ଜାତି ପଚାରି ନଥାନ୍ତି । ଜଣେ ବ୍ୟକ୍ତି ନିଜକୁ ମୁସଲମାନ ବୋଲି ପରିଚୟ ଦେବା ପରେ ସେ ଶିୟା ବା ସୁନ୍ନି, ଶେଖ୍ ବା ସୟେଦ୍, ଖଟିକ କିମ୍ବା ପିଞ୍ଜର ଏହା ଆପଣ ଜାଣିବା ଆବଶ୍ୟକ ମନେକରନ୍ତି ନାହିଁ । ସେହିପରି ଜଣେ ବ୍ୟକ୍ତି ନିଜକୁ ଶିଖ୍ ବୋଲି ପରିଚୟ ଦେଲା ପରେ ସେ ଜାଟ୍ କି ରୋଡ଼ା, ମାଜବି ବା ରାମଦାସୀ ଆପଣ ତାହା ପଚାରି ନଥାନ୍ତି । କିନ୍ତୁ ଜଣେ ବ୍ୟକ୍ତି ନିଜକୁ ହିନ୍ଦୁ ବୋଲି ପରିଚୟ ଦେଲାପରେ ଆପଣ ସେତିକିରେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ଆପଣ ପୁନଶ୍ଚ ତା'ର ଜାତି ପଚାରିଥାନ୍ତି, କିନ୍ତୁ କାହିଁକି ? ଜଣେ ହିନ୍ଦୁ ପାଖରେ ଜାତିର ପ୍ରଶ୍ନଟି ଏତେ ଗୁରୁତ୍ୱପୂର୍ଣ୍ଣ ମନେହୁଏ ଯେ ଜଣଙ୍କର ଜାତି ନ ଜାଣିଲେ ତା'ର ଅସଲ ପରିଚୟଟି ଆପଣ ଜାଣିଥିବା ମନେକରନ୍ତି ନାହିଁ । ହିନ୍ଦୁମାନଙ୍କ ପାଖରେ ଜାତିର ଯେଉଁ ସାମାଜିକ ମହତ୍ୱ ରହିଛି ତାହା ଅଣହିନ୍ଦୁମାନଙ୍କ ପାଖରେ ନାହିଁ । ଜାତିର ଉଲ୍ଲଂଘନ ନେଇ ଏହାର ପରିଣାମରୁ ଏହାକୁ ସ୍ପଷ୍ଟ କରାଯାଇ ପାରିବ । ଶିଖ୍ ଓ ମୁସଲମାନମାନଙ୍କ ମଧ୍ୟରେ ଜାତି ଥାଇପାରେ କିନ୍ତୁ କେହି ଜାତିର ଉଲ୍ଲଂଘନ କଲେ ଶିଖ୍ ବା ମୁସଲମାନମାନେ ସେହି ବ୍ୟକ୍ତିକୁ ଜାତିରୁ ବହିଷ୍କାର କରି ନଥାନ୍ତି । ଶିଖ ବା ମୁସଲମାନମାନଙ୍କ କ୍ଷେତ୍ରରେ ବହିଷ୍କାର ପ୍ରସଙ୍ଗଟି ଅବାନ୍ତର ଅଟେ । କିନ୍ତୁ ହିନ୍ଦୁମାନଙ୍କ କ୍ଷେତ୍ରରେ ଏହା ସମ୍ପୂର୍ଣ୍ଣ ଅଲଗା । କୌଣସି ହିନ୍ଦୁ

ଜାତିକୁ ଉଲ୍ଲଂଘନ କଲେ ସେ ଜାତିରୁ ବହିଷ୍କୃତ ହୁଏ । ଏଥିରୁ ହିନ୍ଦୁ ଓ ଅଣହିନ୍ଦୁଙ୍କ ଭିତରେ ଥିବା ଜାତିର ସାମାଜିକ ତାତ୍ପର୍ଯ୍ୟ ଯେ ସମ୍ପୂର୍ଣ୍ଣ ପୃଥକ୍ ତାହା ନିଃସନ୍ଦେହ ଅଟେ । ଏହା ହିନ୍ଦୁ ଓ ଅଣହିନ୍ଦୁଙ୍କ ଭିତରେ ଥିବା ଜାତି କ୍ଷେତ୍ରରେ ଦ୍ୱିତୀୟ ପାର୍ଥକ୍ୟ ଅଟେ । ଏହା ବ୍ୟତୀତ ସେମାନଙ୍କ ମଧ୍ୟରେ ଜାତିକୁ ନେଇ ଏକ ତୃତୀୟ ଓ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ମଧ୍ୟ ରହିଛି । ଅଣହିନ୍ଦୁମାନଙ୍କ କ୍ଷେତ୍ରରେ ଜାତିର ଏକ ଧର୍ମୀୟ ସ୍ୱୀକୃତି ନାହିଁ । କିନ୍ତୁ ହିନ୍ଦୁମାନଙ୍କ କ୍ଷେତ୍ରରେ ଏହା ନିର୍ଣ୍ଣାୟକ ଭାବରେ ରହିଛି । ଅଣହିନ୍ଦୁମାନଙ୍କ କ୍ଷେତ୍ରରେ ଜାତି ବ୍ୟାବହାରିକ ସ୍ତରରେ ରହିଛି, ଏହା କୌଣସି ପବିତ୍ର ଅନୁଷ୍ଠାନରେ ପରିଣତ ହୋଇନାହିଁ । ସେମାନେ ଏହାକୁ ସୃଷ୍ଟି କରିନାହାନ୍ତି । ଏହାର ବ୍ୟାବହାରିକ ତାତ୍ପର୍ଯ୍ୟ ବ୍ୟତୀତ ଏହା କୌଣସି ଧର୍ମୀୟ ବନ୍ଧନରେ ପରିଣତ ହୋଇନାହିଁ । ଅପର ପକ୍ଷରେ ଧର୍ମୀୟ ବିଶ୍ୱାସ ଦ୍ୱାରା ପରିଚାଳିତ ହୋଇ ହିନ୍ଦୁମାନେ ଜାତି ଜାତି ଭିତରେ ପାର୍ଥକ୍ୟ ଓ ପ୍ରଭେଦକୁ କଡ଼ାକଡ଼ି ଭାବରେ ଗୁରୁତ୍ୱ ଦେଇ ପରସ୍ପରଠାରୁ ଅଲଗା ରହିବାକୁ ଏକ ମହତ୍ୱପୂର୍ଣ୍ଣ ଗୁଣ ଭାବେ ନେଇଥାନ୍ତି । ଅଣହିନ୍ଦୁମାନଙ୍କ କ୍ଷେତ୍ରରେ ଧର୍ମର ଆଧାର ଉପରେ ଜାତିକୁ ନେଇ ଏପରି କୌଣସି ଦୃଷ୍ଟିଭଙ୍ଗୀ ପ୍ରକାଶ ପାଏନାହିଁ । ହିନ୍ଦୁମାନେ ଜାତି ବ୍ୟବସ୍ଥାକୁ ଲଂଘନ କଲେ ଧର୍ମ ପ୍ରତିବନ୍ଧକ ହୋଇ ଛିଡ଼ା ହୁଏ, କିନ୍ତୁ ଅଣହିନ୍ଦୁମାନଙ୍କ କ୍ଷେତ୍ରରେ ସେପରି ହୁଏନାହିଁ । ସୁତରାଂ ଅଣହିନ୍ଦୁମାନଙ୍କ କ୍ଷେତ୍ରରେ ଜାତି ରହିଛି ବୋଲି ଭାବି ହିନ୍ଦୁମାନେ ଆତ୍ମସନ୍ତୋଷ ଲାଭ କରିବା ଏକ ଭ୍ରାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟମାନଙ୍କ ମଧ୍ୟରେ ଜାତିର ତାତ୍ପର୍ଯ୍ୟ କ'ଣ ଓ ସେମାନଙ୍କ ମଧ୍ୟରେ ଥିବା ଚେତନ-ସୂତ୍ର ଯାହା ସେମାନଙ୍କ ଭିତରେ ଜାତିର ଭାବନା ବଦଳରେ ଏକ ସମୁଦାୟର ଭାବନା ଆଣିଥାଏ ତାହାକୁ ଅବଧାରଣା ନକରି ସେମାନଙ୍କର ଜାତି ଅଛି ବୋଲି କହିବା ଭୟଙ୍କର ପ୍ରବଞ୍ଚନା ଅଟେ । ହିନ୍ଦୁମାନେ ଯେତେ ଶୀଘ୍ର ଏହି ପ୍ରବଞ୍ଚନାରୁ ମୁକ୍ତ ହେବେ ତାହା ସେମାନଙ୍କ ପାଇଁ ମଙ୍ଗଳପ୍ରଦ ହେବ ।

ଜାତି ବ୍ୟବସ୍ଥା ହିନ୍ଦୁମାନଙ୍କ ପାଇଁ ସେପରି କିଛି ବିଚାର ଯୋଗ୍ୟ ସମସ୍ୟା ସୃଷ୍ଟି କରିଛି ବୋଲି ଅନ୍ୟ ଗୋଷ୍ଠୀଟି ଅସ୍ୱୀକାର କରନ୍ତି । ଏହି ହିନ୍ଦୁମାନେ ସାନ୍ତ୍ୱନା ଲାଭ କରନ୍ତି ଯେ ହିନ୍ଦୁ ସମାଜ ଯୁଗ ଯୁଗ ଧରି ରହିଆସିଛି ଓ ଏଥିରୁ ଏହା ପ୍ରମାଣିତ ହେଉଛି

ଯେ ଏହା ଭବିଷ୍ୟତରେ ମଧ ବଞ୍ଚି ରହିବାକୁ କ୍ଷମତା ଅର୍ଜନ କରିଛି । ଅଧ୍ୟାପକ ଏସ୍. ରାଧାକ୍ରିଷ୍ଣନ୍ ତାଙ୍କର "ହିନ୍ଦୁ ଜୀବନ ଦୃଷ୍ଟି" (Hindu view of life) ପୁସ୍ତକରେ ଏହିମତ ସ୍ପଷ୍ଟ ଭାବରେ ବ୍ୟକ୍ତ କରିଛନ୍ତି । ହିନ୍ଦୁଧର୍ମ ପରିପ୍ରେକ୍ଷୀରେ ସେ କହିଛନ୍ତି, "ଏହି ସଭ୍ୟତା ଅଳ୍ପ ଦିନର ସଭ୍ୟତା ନୁହେଁ । ଐତିହାସିକ ପ୍ରମାଣରୁ ଏହା ଚାରିହଜାର ବର୍ଷରୁ ଅଧିକ ବୋଲି ଜଣାପଡ଼େ । ଅବଶ୍ୟ ଏହାର ପ୍ରଗତି ବେଳକେ ଧୀର ଓ ସ୍ଥାଣୁ ହୋଇଥିଲେ ମଧ ଏହି ସଭ୍ୟତା ଅପ୍ରତିହତ ଭାବରେ ଏ ପର୍ଯ୍ୟନ୍ତ ତିଷ୍ଠି ରହିଛି । ଯେ କୌଣସି ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ଏହା ତାହାର ଆଧାତ୍ମିକ ଭାବନା ଓ ଅନୁଭୂତିରେ ଏପରି ପୁଷ୍ଟ ହୋଇଛି ଯେ ଏହା ଚାରି ପାଞ୍ଚହଜାର ବର୍ଷ ଧରି ରହିଆସିଛି । ଇତିହାସର ଆରମ୍ଭ ସମୟରୁ ଯଦି ବି ପୃଥିବୀର ବହୁ ଅଞ୍ଚଳରୁ ବିଭିନ୍ନ ଜନଶାଖା ଓ ସଂସ୍କୃତି ଭାରତ ଭିତରକୁ ପ୍ରବେଶ କରିଛନ୍ତି ତଥାପି ହିନ୍ଦୁଧର୍ମ ଏହାର ପ୍ରାଧାନ୍ୟକୁ ବଜାୟ ରଖିଛି । ରାଜନୈତିକ ଶକ୍ତିଦ୍ୱାରା ଧର୍ମାନ୍ତରିକରଣ ପାଇଁ ଉଦ୍ୟମ ସତ୍ତ୍ୱେ ସମସ୍ତ ବଳ ପ୍ରୟୋଗକୁ ପ୍ରତିହତ କରି ଜନସଂଖ୍ୟାର ବିରାଟ ଅଂଶଟି ହିନ୍ଦୁଧର୍ମ ଭିତରେ ରହିଆସିଛି । ହିନ୍ଦୁ ସଂସ୍କୃତି ଭିତରେ ଥିବା ଆତ୍ମଶକ୍ତି ଯୋଗୁଁ ଏହା ଯେ କୌଣସି ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରି ନିଜର ଅସ୍ତିତ୍ୱକୁ ସୁଦୃଢ଼ କରିଛି । ଏହା ଏକ ବିଶାଳ ଦ୍ରୁମରେ ପରିଣତ ହୋଇଛି । ଗୋଟିଏ ବଡ଼ ବୃକ୍ଷର ଚେର ଯେପରି ବହୁ ଭିତରକୁ ଯାଇ ବୃକ୍ଷକୁ ଦୃଢ଼ କରିଥାଏ ହିନ୍ଦୁ ସଂସ୍କୃତି ସେହିପରି ସୁଦୃଢ଼ ହୋଇ ରହିଛି ଯାହାର ବ୍ୟବଚ୍ଛେଦର କୌଣସି ଆବଶ୍ୟକତା ନାହିଁ" । ଅଧ୍ୟାପକ ରାଧାକ୍ରିଷ୍ଣନ ଜଣେ ବିଦ୍ୱାନ୍ ବ୍ୟକ୍ତି ଓ ତାଙ୍କର ମତ ପାଠକମାନଙ୍କୁ ନିଶ୍ଚିତ ଭାବରେ ପ୍ରଭାବିତ କରିଥାଏ, କିନ୍ତୁ ମୋର ଦୃଷ୍ଟିକୋଣ ଏଠାରେ ବ୍ୟକ୍ତ କରିବାରେ ମୋର କୌଣସି ଦ୍ୱିଧା ନାହିଁ । ମୋର ଆଶଙ୍କା ହୁଏ ତାଙ୍କର ମତକୁ ଆଧାର କରି ଗୋଟିଏ ତ୍ରୁଟିପୂର୍ଣ ଯୁକ୍ତିର ଅବତାରଣା କରାଯାଇପାରେ । ଗୋଟିଏ ଜାତି ଅତୀତରେ ତିଷ୍ଠି ରହିବାର ଭିତ୍ତି ଉପରେ ଏହା ଭବିଷ୍ୟତରେ ତିଷ୍ଠି ରହିବା ପାଇଁ ସମର୍ଥ ବୋଲି ହୁଏତ ଯୁକ୍ତି କରାଯାଇପାରେ । ଗୋଟିଏ ଜନସମୂହ ତିଷ୍ଠି ରହିବା ବା ନ ରହିବା ମୋ ପାଇଁ ବଡ଼ ପ୍ରଶ୍ନ ନୁହେଁ, କିନ୍ତୁ ଏହା କେଉଁ ସ୍ତରରେ ବଞ୍ଚିରହିଛି ତାହା ହିଁ ହେଉଛି ମୁଖ୍ୟ ପ୍ରସଙ୍ଗ । ତିଷ୍ଠି ରହିବାର ବିଭିନ୍ନ ସ୍ତର ଥାଇପାରେ, କିନ୍ତୁ ସବୁଗୁଡ଼ିକ ସମାନ ଭାବରେ ସମ୍ମାନଜନକ ନୁହେଁ । କୌଣସି ବ୍ୟକ୍ତି ବା ସମାଜ କେବଳ ବଞ୍ଚିରହିବା

ଓ ସମ୍ମାନଜନକ ଭାବରେ ବଞ୍ଚି ରହିବା ଭିତରେ ପାର୍ଥକ୍ୟ ରହିଛି । ଗୋଟିଏ ଯୁଦ୍ଧରେ ସଂଗ୍ରାମ କରି ଗୌରବାନ୍ୱିତ ହୋଇ ବଞ୍ଚିବା ଗୋଟିଏ କଥା । ଯୁଦ୍ଧ କ୍ଷେତ୍ରରୁ ପଳାୟନ କରି, ଆତ୍ମ ସମର୍ପଣ କରି ଓ ଅନ୍ୟର ଦାସତ୍ୱ ସ୍ୱୀକାର କରି ବଞ୍ଚିବା ଅନ୍ୟ ଗୋଟିଏ କଥା । ହିନ୍ଦୁମାନେ ଅତୀତରେ ତିଷ୍ଠି ରହିଛନ୍ତି ଏଥିରେ ଆତ୍ମସନ୍ତୋଷ ଲାଭ କରିବା ନିରର୍ଥକ ମନେହୁଏ । ବଞ୍ଚି ରହିବା ଭିତରେ ଜୀବନର ମାନ ଓ ଗୁଣାତ୍ମକ ଭିତ୍ତି କ'ଣ ଥିଲା ଚିନ୍ତା କରିବା ଆବଶ୍ୟକ । ଯଦି ଏହି ଦୃଷ୍ଟିରୁ ବିଚାର କରାଯାଏ ତେବେ ମୁଁ ନିଶ୍ଚିତ ଯେ ହିନ୍ଦୁମାନେ ତିଷ୍ଠି ରହିବା ନେଇ କୌଣସି ଗର୍ବ କରିବେ ନାହିଁ । ହିନ୍ଦୁର ଜୀବନ ସର୍ବଦା ପରାଜୟକୁ ସ୍ୱୀକାର କରୁଥିବା ଜୀବନ ଅଟେ । ଯେଉଁମାନେ ହିନ୍ଦୁର ଜୀବନକୁ ଶାଶ୍ୱତ ବୋଲି ମନେକରନ୍ତି, ସେମାନେ ଏହା ମନେରଖିବା ଉଚିତ ଯେ ଏହା ଶାଶ୍ୱତ ଗ୍ଲାନିର ଜୀବନ ଅଟେ । ସତ୍ୟକୁ ଗ୍ରହଣ କରୁଥିବା ପ୍ରତ୍ୟେକ ବିଚାରଶୀଳ ହିନ୍ଦୁ ଏପରି ଏକ ଜୀବନଧାରାକୁ ନେଇ ଲଜ୍ଜିତ ହେବା ଅବାଶ୍ୟକ ।

## (୨୦)

## ଜାତି ବିନାଶର ପନ୍ଥା

ଆପଣମାନେ ଯଦି ଆପଣମାନଙ୍କର ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ନ ଆଣନ୍ତି ତେବେ ଆପଣମାନେ ପ୍ରଗତି କ୍ଷେତ୍ରରେ କୌଣସି ସଫଳତା ଯେ ହାସଲ କରିପାରିବେ ନାହିଁ ଏଥିରେ ମୋର କୌଣସି ସନ୍ଦେହ ନାହିଁ । ଜନଗଣଙ୍କୁ ଆତ୍ମରକ୍ଷା ପାଇଁ କିମ୍ୱା ଆକ୍ରମଣାତ୍ମକ ଭୂମିକା ନେବାପାଇଁ ଆପଣମାନେ ପ୍ରସ୍ତୁତ କରିପାରିବେ ନାହିଁ । ଜାତିକୁ ଆଧାର କରି କିଛି ବି' ହୋଇପାରିବ ନାହିଁ । ଜାତିର ଆଧାରରେ ନୈତିକତାର ପ୍ରତିଷ୍ଠା ହୋଇପାରିବ ନାହିଁ କିମ୍ୱା ରାଷ୍ଟ୍ରର ନିର୍ମାଣ ମଧ୍ୟ ହୋଇପାରିବ ନାହିଁ । ଜାତିର ମୂଳଦୁଆ ଉପରେ ଆପଣ ଯାହା କିଛି ସୃଷ୍ଟି କରିବେ ତାହା ଭୁଷୁଡ଼ି ପଡ଼ିବ ଏବଂ ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ ।

ସୁତରାଂ ଯେଉଁ ପ୍ରଶ୍ନଟି ଏଠାରେ ଆଲୋଚନା କରିବା ଆବଶ୍ୟକ ତାହା ହେଲା – "ହିନ୍ଦୁ ସାମାଜିକ ବ୍ୟବସ୍ଥାରେ କିପରି ସଂସ୍କାର ଅଣାଯାଇ ପାରିବ ? ଜାତି ପ୍ରଥାକୁ କିପରି ଉଚ୍ଛେଦ କରାଯିବ ? ଏହି ପ୍ରଶ୍ନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜାତିର ସଂସ୍କାର କ୍ଷେତ୍ରରେ

ପ୍ରଥମ ପଦକ୍ଷେପ ସ୍ୱରୂପ ସମସ୍ତ ଉପଜାତିଗୁଡ଼ିକ ବିଲୋପ କରିବା ହେଉଛି ଗୋଟିଏ ମତ । ଏହି ମତଟି ଗୋଟିଏ ଅନୁମାନ ଉପରେ ପ୍ରତିଷ୍ଠିତ ଯଥା – ଆଚରଣ ଓ ସାମାଜିକ ସ୍ଥିତି କ୍ଷେତ୍ରରେ ଉପଜାତିମାନଙ୍କ ମଧ୍ୟରେ ଯେଉଁ ସାମଞ୍ଜସ୍ୟ ରହିଛି ତାହା ଜାତିମାନଙ୍କ ମଧ୍ୟରେ ନାହିଁ । କିନ୍ତୁ ମୋ ମତରେ ଏହା ଏକ ତ୍ରୁଟିପୂର୍ଣ୍ଣ ଅନୁମାନ ଅଟେ । ଉତ୍ତର ଓ ମଧ୍ୟ ଭାରତରେ ରହିଥିବା ବ୍ରାହ୍ମଣମାନେ ଦକ୍ଷିଣ ଭାରତୀୟ ବ୍ରାହ୍ମଣମାନଙ୍କ ତୁଳନାରେ ସାମାଜିକ ସ୍ତରରେ ନିମ୍ନ ସ୍ତରର ଅଟନ୍ତି । ଉତ୍ତର ଓ ପୂର୍ବ ଭାରତରେ ବ୍ରାହ୍ମଣମାନେ ରୋଷେଇ କରନ୍ତି ଓ ଜଳ ଯୋଗାନ୍ତି । ଅପର ପକ୍ଷରେ ଦକ୍ଷିଣ ଭାରତରେ ବ୍ରାହ୍ମଣମାନେ ଉଚ୍ଚ ସାମାଜିକ ସ୍ଥିତିରେ ଅଛନ୍ତି । ଅଧିକନ୍ତୁ ଉତ୍ତର ଭାରତରେ ଥିବା ବୈଶ୍ୟ ଓ କାୟସ୍ଥମାନେ ବୌଦ୍ଧିକ ଓ ସାମାଜିକ ମାନଦଣ୍ଡରୁ ଦକ୍ଷିଣ ଭାରତର ବ୍ରାହ୍ମଣମାନଙ୍କ ସଂହ ସମକକ୍ଷ ଅଟନ୍ତି । ସେହିପରି ଖାଦ୍ୟ କ୍ଷେତ୍ରରେ ବ୍ରାହ୍ମଣମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ନାହିଁ । ଦକ୍ଷିଣ ଭାରତରେ ବ୍ରାହ୍ମଣମାନେ ନିରାମିଷାଶୀ ହୋଇଥିବା ବେଳେ କାଶ୍ମୀର ଓ ବଙ୍ଗଳାର ବ୍ରାହ୍ମଣମାନେ ଆମିଷାଶୀ ଅଟନ୍ତି । ଅନ୍ୟ ପକ୍ଷରେ ଖାଦ୍ୟ ଅଭ୍ୟାସ କ୍ଷେତ୍ରରେ ଦକ୍ଷିଣ ଭାରତର ବ୍ରାହ୍ମଣମାନଙ୍କ ସହିତ ଉତ୍ତର ଭାରତର କେତେକ ଅବ୍ରାହ୍ମଣ ଯଥା- ଗୁଜୁରାଟୀ, ମାରୱାଡ଼ି, ବଣିଆ ଓ ଜୈନମାନଙ୍କର ସାମଞ୍ଜସ୍ୟ ରହିଛି । ଜାତିମାନଙ୍କ ଭିତରେ ମିଶ୍ରଣ କ୍ଷେତ୍ରରେ ଉତ୍ତର ଭାରତର କାୟସ୍ଥ ଏବଂ ଦକ୍ଷିଣ ଭାରତ ଡେକାନ ଓ ଦ୍ରାବିଡ଼ାଞ୍ଚଳ ଅବ୍ରାହ୍ମଣମାନଙ୍କର ସମନ୍ୱୟ ଯେତିକି ବାସ୍ତବ ଓ ସହଜସାଧ୍ୟ ହେବ ଉତ୍ତର ଭାରତର ବ୍ରାହ୍ମଣ ଓ ଦକ୍ଷିଣ ଭାରତର ବ୍ରାହ୍ମଣମାନଙ୍କ ଭିତରେ ମିଶ୍ରଣ ସେତେ ସହଜ ସାଧ୍ୟ ହେବନାହିଁ । ଯଦି ବି ଉପଜାତିମାନଙ୍କର ମିଶ୍ରଣଦ୍ୱାରା ସେମାନଙ୍କୁ ବିଲୋପ କରାଯାଇପାରିବ ବୋଲି ଗ୍ରହଣ କରାଯାଏ, ତେବେ ଏଥିରୁ ଏହା ନିଷ୍ଚିତ ଭାବରେ ସୂଚିତ ହୁଏ ନାହିଁ ଯେ ଏହାଦ୍ୱାରା ଜାତିମାନଙ୍କର ବିଲୋପ ମଧ୍ୟ ସମ୍ଭବ ହେବ । ଅପରପକ୍ଷରେ ଉପଜାତିମାନଙ୍କର ବିଲୋପ ପାଖରେ ଏହି ପ୍ରକ୍ରିୟା ବନ୍ଦ ହୋଇଯାଇପାରେ । ସେପରି ହେଲେ ଉପଜାତିମାନଙ୍କର ଉଚ୍ଛେଦ ଜାତି ବ୍ୟବସ୍ଥାକୁ ଅଧିକ ମଜବୁତ୍ କରିବା ଏବଂ ଜାତିମାନଙ୍କୁ ଅଧିକ ଶକ୍ତିଶାଳୀ କରିବା ସହ ଅନିଷ୍ଟକାରୀ ହେବ । ଏହି ପ୍ରତିକାର ବାସ୍ତବ ପକ୍ଷେ ସଫଳ ହେବନାହିଁ କି କାର୍ଯ୍ୟରେ ପ୍ରୟୋଗ ହୋଇପାରିବ ନାହିଁ । ସୁତରାଂ ଏହି ପ୍ରତିକାର ଯଥାର୍ଥ ମନେହୁଏ ନାହିଁ ।

---

ଜାତିର ବିଲୋପ କ୍ଷେତ୍ରରେ ଅନ୍ୟ ଗୋଟିଏ ପ୍ରସ୍ତାବ ହେଉଛି ଜାତିମାନଙ୍କ ଭିତରେ ଏକତ୍ର ସହଭୋଜନକୁ ପ୍ରୋତ୍ସାହନ ଦେବା । ମୋ ମତରେ ଏହି ସମାଧାନ ସେପରି ଯଥେଷ୍ଟ ନୁହେଁ । ଏପରି ଅନେକ ଜାତି ଅଛନ୍ତି ଯେଉଁମାନେ ଏକତ୍ର ଭୋଜନ କରିବାକୁ ଅନୁମତି ଦିଅନ୍ତି । ଏକତ୍ର ଭୋଜନ ଦ୍ୱାରା ଜାତିଗତ ଦୃଷ୍ଟିଭଙ୍ଗୀ ଓ ଜାତିଆଣ ମାନସିକତା ବିଲୋପ ହୋଇନାହିଁ । ମୋ ମତରେ ଆନ୍ତର୍ଜାତି ବିବାହଦ୍ୱାରା ଏହାର ପ୍ରତିକାର ହୋଇପାରିବ । ରକ୍ତର ମିଶ୍ରଣ ଦ୍ୱାରା ଏକ ଆତ୍ମୀୟତାର ମନୋଭାବ ସୃଷ୍ଟି ହୋଇପାରିବ । ଏହି ଆତ୍ମୀୟତା ପରସ୍ପର ଭିତରେ ପ୍ରତିଷ୍ଠା ହେଲେ ପୃଥକ୍ ମନୋଭାବକୁ ପ୍ରତିହତ କରିବାରେ ଏହା ମୁଖ୍ୟ ଆୟୁଧ ହେବ । ଜାତିଦ୍ୱାରା ପରସ୍ପର ଭିତରେ ଯେଉଁ ବିଭେଦ ସୃଷ୍ଟି ହୋଇଛି ତାହା ଆନ୍ତର୍ଜାତି ବିବାହଦ୍ୱାରା ଦୂର ହୋଇପାରିବ । ଆନ୍ତର୍ଜାତି ବିବାହ ସାମାଜିକ ଜୀବନରେ ଏକ ଶକ୍ତିଶାଳୀ ବନ୍ଧନ-ସୂତ୍ର ହୋଇପାରିବ । ଅଣହିନ୍ଦୁମାନଙ୍କ ଭିତରେ ଯେଉଁ ସାମାଜିକ ଏକତ୍ୱ ରହିଛି ସେହି ଏକତ୍ୱ ହିନ୍ଦୁମାନଙ୍କ ଭିତରେ ଆନ୍ତର୍ଜାତି ବିବାହଦ୍ୱାରା ସମ୍ଭବ ହେବ । ଯେଉଁଠି ଅନ୍ୟ ବନ୍ଧନଦ୍ୱାରା ସାମାଜିକ ସଂହତି ଦୃଢ଼ ସେଠାରେ ବିବାହ ଜୀବନର ଏକ ସାଧାରଣ ଘଟଣା ଅଟେ । କିନ୍ତୁ ଯେଉଁଠି ସମାଜ ବିଚ୍ଛିନ୍ନ ସେଠାରେ ବିବାହ ଦ୍ୱାରା ସାମାଜିକ ବନ୍ଧନକୁ ସୁଦୃଢ଼ କରିବା ଜରୁରୀ ମନେହୁଏ । ଜାତିପ୍ରଥାର ପ୍ରତିକାର ହେଉଛି ଆର୍ନ୍ତଜାତି ବିବାହ । ଜାତିପ୍ରଥାର ବିଲୋପ କ୍ଷେତ୍ରରେ ଅନ୍ୟ କୌଣସି ପ୍ରତିକାର ସଫଳ ହୋଇପାରିବ ନାହିଁ । ଆପଣମାନଙ୍କର ଜାତ-ପାତ-ତୋଡ଼କ ମଣ୍ଡଳ ଏହି ଦୃଷ୍ଟିଭଙ୍ଗୀ ପୋଷଣ କରି ସମସ୍ୟାଟିକୁ ଠିକ୍ ଭାବରେ ଆକ୍ରମଣ କରିଛି । ଆପଣମାନେ ସମସ୍ୟାଟିକୁ ଠିକ୍ ଭାବରେ ହୃଦ୍‌ବୋଧ କରି ଏହାକୁ ପରିବର୍ତ୍ତନ କରିବା ପାଇଁ ଆଗ୍ରହୀ ଥିବାରୁ ମୁଁ ଆପଣମାନଙ୍କୁ ଅଭିନନ୍ଦନ ଜଣାଉଛି । ହିନ୍ଦୁମାନଙ୍କ ବ୍ୟବସ୍ଥାରେ କ'ଣ ତ୍ରୁଟି ରହିଛି ତାହା ସ୍ପଷ୍ଟ ଭାବେ କହିବାକୁ ଆପଣମାନେ ସାହସ ଦେଖାଇଛନ୍ତି । ରାଜନୈତିକ ଅତ୍ୟାଚାର ଅପେକ୍ଷା ସାମାଜିକ ଅତ୍ୟାଚାର ଅଧିକ ଭୟଙ୍କର । କୌଣସି ସରକାରକୁ ଅବମାନନା କରିବା କ୍ଷେତ୍ରରେ ଜଣେ ରାଜନୈତିକ ବ୍ୟକ୍ତିଙ୍କ କାର୍ଯ୍ୟ ଅପେକ୍ଷା ସାମାଜିକ ଅତ୍ୟାଚାରକୁ ପ୍ରତିରୋଧ କରିବା କ୍ଷେତ୍ରରେ ଜଣେ ସଂସ୍କାରକର କାର୍ଯ୍ୟ ଅଧିକ ସାହସିକ ମନେହୁଏ । ଯେତେବେଳେ ଜାତି ଜାତି ଭିତରେ ସହଭୋଜନ ଓ ଆନ୍ତର୍ଜାତି ବିବାହ ସାଧାରଣ ବ୍ୟବହାରରେ ପରିଣତ ହେବ ସେତେବେଳେ ଜାତିପ୍ରଥାର ପ୍ରଭାବ ଓ ଶକ୍ତି ଲୋପ ପାଇବ । ଆପଣମାନଙ୍କର ଏହି

ମତ ଯଥାର୍ଥ ମନେହୁଏ । ଆପଣମାନେ ସାମାଜିକ ବ୍ୟାଧି ଓ ତା'ର କାରଣକୁ ଯଥାର୍ଥ ଭାବରେ ବୁଝି ପାରିଛନ୍ତି । କିନ୍ତୁ ଏହି ବ୍ୟାଧିର ଉପଶମ ପାଇଁ ଆପଣମାନେ ଯେଉଁ ପ୍ରତିଷେଧକ ବ୍ୟବସ୍ଥା ଦର୍ଶାଇଛନ୍ତି ତାହା ଯଥାର୍ଥ କି ? ଆପଣମାନେ ଏହି ପ୍ରଶ୍ନ ନିଜକୁ ପଚାରନ୍ତୁ । କାହିଁକି ଅଗଣିତ ହିନ୍ଦୁମାନେ ଜାତି ଜାତି ଭିତରେ ଭୋଜନ କିମ୍ବା ବିବାହ କରୁ ନାହାନ୍ତି ? ଆପଣମାନଙ୍କର ପ୍ରୟାସ କାହିଁକି ଜନପ୍ରିୟ ହୋଇପାରୁନାହିଁ । ଏହି ପ୍ରଶ୍ନର କେବଳ ଗୋଟିଏ ଉତ୍ତର ସମ୍ଭବ । ଏକତ୍ର ଭୋଜନ ଓ ଆନ୍ତର୍ଜାତି ବିବାହକୁ ଗ୍ରହଣ କରିବା କ୍ଷେତ୍ରରେ ହିନ୍ଦୁମାନଙ୍କର ବିଶ୍ୱାସ ପ୍ରତିବନ୍ଧକ ହେଉଛି । ହିନ୍ଦୁମାନେ ତାଙ୍କର କେତେକ ବିଶ୍ୱାସ ଓ ଧାର୍ମିକ ସିଦ୍ଧାନ୍ତକୁ ପବିତ୍ର ବୋଲି ଗ୍ରହଣ କରୁଛନ୍ତି । ଜାତି ବ୍ୟବସ୍ଥା କୌଣସି ଇଟାର ପ୍ରାଚୀର କିମ୍ବା ତା'ର ବାଡ଼ଦିଆ ଭୌତିକ ବସ୍ତୁ ନୁହେଁ ଯେ ଏହି ପ୍ରତିବନ୍ଧକକୁ ଅକ୍ଳେଶରେ ଦୂରେଇ ଦିଆଯାଇ ଜାତି ଜାତି ଭିତରେ ମିଶ୍ରଣ କରି ଦିଆଯିବ । ଜାତି ହେଉଛି ଏକ ବିଚାର ଓ ଏକ ମାନସିକତା । ସୁତରାଂ ଜାତିର ବିନାଶର ଅର୍ଥ କୌଣସି ଶାରୀରିକ ପ୍ରତିବନ୍ଧକକୁ ଦୂର କରିବା ନୁହେଁ । ବରଂ ଏହା ଦୂରକରିବା ପାଇଁ ମାନସିକ ଭାବ ଧାରାରେ ପରିବର୍ତ୍ତନ ଆସିବା ଦରକାର । ଜାତିପ୍ରଥା ଯେ ଏକ ମନ୍ଦ ଓ ଘୃଣିତ ବ୍ୟବସ୍ଥା ଓ ଏହା ଜଣେ ମଣିଷ ପ୍ରତି ଅନ୍ୟର ଅମାନୁଷିକ ଆଚରଣ, ଏହି ଭାବନା ବୁଝିପାରିଲେ ଜାତିକୁ ଦୂର କରାଯାଇ ପାରିବ । ଅବଶ୍ୟ ହିନ୍ଦୁମାନେ ଜାତିକୁ ଧରି ରଖିବା ଅର୍ଥ ନୁହଁ ସେମାନେ ଅମାନୁଷିକ କିମ୍ବା ବିଚାରଶୂନ୍ୟ । ସେମାନେ ଜାତିକୁ ମାନନ୍ତି । କାରଣ ସେମାନେ ମୁଖ୍ୟତଃ ଧର୍ମଭୀରୁ । ଲୋକମାନେ ଜାତିକୁ ମାନିବା ଯୋଗୁଁ ଖରାପ ନୁହଁନ୍ତି । ମୋ ବିଚାରରେ ସେମାନଙ୍କ ଧର୍ମଭାବନା ହିଁ ଖରାପ ଯାହା ସେମାନଙ୍କ ଭିତରେ ଜାତିଆଣ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିଛି । ଏହି ଆଲୋଚନା ଯଦି ବାସ୍ତବ ମନେହୁଏ ତେବେ ପ୍ରକୃତ ଶତ୍ରୁ ଯେଉଁମାନେ ଜାତିକୁ ଜାବୁଡ଼ି ଧରିଛନ୍ତି ସେମାନେ ନୁହନ୍ତି ବରଂ ସେହି ଶାସ୍ତ୍ର ସକଳ ଯାହା ଲୋକମାନଙ୍କୁ ଜାତିଗତ ବିଶ୍ୱାସ ଦେଉଛି । ଲୋକମାନେ ଏକତ୍ର ଭୋଜନ କିମ୍ବା ଆନ୍ତର୍ଜାତି ବିବାହ ନ କରୁଥିବାରୁ ଅଥବା ଏ ସବୁ କେତେବେଳେ କିପରି କରୁଥିବାରୁ ସେମାନଙ୍କୁ ସେଥିପାଇଁ ସମାଲୋଚନା କରିବା ଯଥାର୍ଥ ଲକ୍ଷ୍ୟପ୍ରାପ୍ତି କ୍ଷେତ୍ରରେ ଏକ ନିରସ୍ତ ପ୍ରୟାସ ଅଟେ । ପ୍ରକୃତରେ ଯଦି ଶାସ୍ତ୍ରର ପବିତ୍ରତା ନେଇ ଯେଉଁ ବିଶ୍ୱାସ ରହିଛି ତାହାକୁ

ପରିବର୍ତ୍ତନ କରି ହେବ, ତେବେ ଯଥାର୍ଥ ଲକ୍ଷ୍ୟ ପୂରଣ ହୋଇପାରିବ । ଯେ ପର୍ଯ୍ୟନ୍ତ ଶାସ୍ତ୍ରଗୁଡ଼ିକ ଲୋକମାନଙ୍କର ବିଶ୍ୱାସ ଓ ଭାବନାକୁ ପ୍ରଭାବିତ କରୁଥିବ ଆପଣମାନେ କେବେହେଲେ ଲକ୍ଷ୍ୟ ଦିଗରେ ସଫଳ ହୋଇପାରିବେ କି ? ଶାସ୍ତ୍ରଗୁଡ଼ିକର ପ୍ରଭୁତ୍ୱକୁ ପ୍ରଶ୍ନ ନ କରିବା ପର୍ଯ୍ୟନ୍ତ ଏବଂ ସେଗୁଡ଼ିକର ପବିତ୍ରତା ଉପରେ ଲୋକମାନେ ବିଶ୍ୱାସ ଜାରି ରଖିବା ପର୍ଯ୍ୟନ୍ତ କେବଳ ଲୋକମାନଙ୍କୁ ଅହେତୁକ ଓ ଅମାନବିକ ବୋଲି ସମାଲୋଚନା କରିବା ସାମାଜିକ ସଂସ୍କାର ପ୍ରକ୍ରିୟା ସହିତ ଅସଙ୍ଗତ ମନେହୁଏ । ଅସ୍ପୃଶ୍ୟତାକୁ ଦୂର କରିବା ପାଇଁ ମହାତ୍ମାଗାନ୍ଧୀଙ୍କ ପରି ଯେଉଁ ସଂସ୍କାରକମାନେ କାର୍ଯ୍ୟ କରୁଛନ୍ତି ଲୋକମାନେ ଅସ୍ପୃଶତାରେ ବିଶ୍ୱାସ କରିବା କେବଳ ଶାସ୍ତ୍ରମାନଙ୍କର ପ୍ରଭାବରୁ ଯେ ହେଉଛି କଥାକୁ ହୃଦବୋଧ କରୁନାହାନ୍ତି । ଯେ ପର୍ଯ୍ୟନ୍ତ ଲୋକମାନେ ଶାସ୍ତ୍ରର ପବିତ୍ରତାକୁ ବିଶ୍ୱାସ କରୁଥିବେ ଏବଂ ଶାସ୍ତ୍ରର ମତ ଅନୁସାରେ ସେମାନଙ୍କର ବିଶ୍ୱାସ ଓ ଆଚରଣକୁ ଯଥାର୍ଥ ବୋଲି ଭାବୁଥିବେ ସେ ପର୍ଯ୍ୟନ୍ତ ସେମାନଙ୍କର ମାନସିକତାରୁ ଅସ୍ପୃଶ୍ୟତାକୁ  ଦୂର କରାଯାଇପାରିବ ନାହିଁ । ବସ୍ତୁତଃ ସଂସ୍କାର ପ୍ରୟାସୀ କାର୍ଯ୍ୟକ୍ରମ ଗୁଡ଼ିକ ଯେ ସଫଳ ହୋଇ ପାରୁନାହିଁ ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ । ସୁତରାଂ ସଂସ୍କାରକମାନେ ଅସ୍ପୃଶ୍ୟତାକୁ ଦୂର କରିବା ପାଇଁ ଯେପରି ଚେଷ୍ଟା କରୁଛନ୍ତି ଆପଣମାନେ ସେହି ପନ୍ଥାରେ ସଂସ୍କାର ଆଣିବା ପାଇଁ ପ୍ରୟାସୀ ହେଲେ ଆପଣମାନେ ସେହି ତ୍ରୁଟି କରି ବସିବେ । ଜାତି ଜାତି ଭିତରେ ସହଭୋଜନ ଓ  ଆନ୍ତର୍ଜାତି ବିବାହ ପାଇଁ ସଂଗଠନ ଗଢ଼ିବା ତଥା ଆନ୍ଦୋଳନ କରିବା ଜଣକୁ କୃତ୍ରିମ ଉପାୟରେ ବଳପୂର୍ବକ ଖାଇବାକୁ ବାଧ କରିବା ସହ ସମାନ । ଶାସ୍ତ୍ରର ଶୃଙ୍ଖଳାରୁ ପ୍ରତ୍ୟେକ ନରନାରୀଙ୍କୁ ମୁକ୍ତ କରିପାରିଲେ,"ସେମାନଙ୍କ ମନରେ ବସା ବାନ୍ଧିଥିବା ଜାତିଗତ ଘୃଣିତ ଭାବନାକୁ ଦୂର କଲେ, ଯାହାକୁ ସେମାନେ ଶାସ୍ତ୍ର ସମ୍ମତ ବୋଲି ଭାବିଛନ୍ତି - ସେମାନେ ସ୍ୱତଃସ୍ଫୁର୍ତ୍ତ ଭାବେ ପରସ୍ପର ସହ ଆନ୍ତର୍ଜାତି ଭୋଜନ ଓ ବିବାହ କରିବାରେ ଆଗଭର ହେବେ ।

ଶବ୍ଦ ଚାତୁରୀ ଭିତରେ ନିଜର ଲକ୍ଷ୍ୟକୁ ହଜାଇ ଦେବା ଠିକ୍ ନୁହେଁ । ଲୋକମାନେ ଯାହା ବିଶ୍ୱାସ କରନ୍ତି ତାହା ଶାସ୍ତ୍ରରେ ନାହିଁ ଏପରି ତର୍କ ବିତର୍କ କରି ଅର୍ଥ ବାହାର କରିବାର ଆବଶ୍ୟକତା ନାହିଁ । ପ୍ରଶ୍ନ ହେଉଛି ଲୋକମାନେ ଶାସ୍ତ୍ରକୁ କି ପ୍ରକାର ବୁଝିଛନ୍ତି ତାହାହିଁ ଦେଖିବା । ବୁଦ୍ଧ ଓ ନାନକ ଯେଉଁ ଭୂମିକା ନେଇଥିଲେ

ଆପଣମାନଙ୍କୁ ସେହି ଭୂମିକା ନେବାକୁ ହେବ । ବୁଦ୍ଧ ଓ ନାନକ ଯେପରି ଶାସ୍ତ୍ରର ପ୍ରଭୁତ୍ୱକୁ ଅସ୍ୱୀକାର କରି ତାହାକୁ ପ୍ରତ୍ୟାଖ୍ୟାନ କରିଥିଲେ ଆପଣମାନେ ତାହା କରିବା ଦରକାର । ହିନ୍ଦୁମାନଙ୍କୁ ସାହସର ସହିତ ଏହା କହିବାକୁ ହେବ ଯେ ସେମାନଙ୍କର ଧର୍ମ ହେଉଛି ଭ୍ରମାତ୍ମକ କାରଣ ଜାତିର ପବିତ୍ରତା ନେଇ ବିଶ୍ୱାସ ସେମାନେ ଧର୍ମରୁ ହିଁ ଲାଭ କରୁଛନ୍ତି । ଆପଣମାନେ ସେମାନଙ୍କୁ ଏହା କହିବାରେ ସାହସ ଦେଖାଇବେ କି ?

## (୨୧)

# ଜାତିବିନାଶ ଓ ବ୍ରାହ୍ମଣ ଶ୍ରେଣୀ

ଆପଣମାନଙ୍କର ସଫଳତା କେତେ ? ସାମାଜିକ ସଂସ୍କାର ବିଭିନ୍ନ ସ୍ତରର ହୋଇପାରେ । ଗୋଟିଏ କ୍ଷେତ୍ରରେ ଧର୍ମଗତ ଧାରଣା ସହ କୌଣସି ସମ୍ପର୍କ ନରଖି ଧର୍ମ ନିରପେକ୍ଷ ଭାବରେ ସଂସ୍କାର ଅଣାଯାଇପାରେ । ଅନ୍ୟ ଏକ ସଂସ୍କାର ପ୍ରକ୍ରିୟାରେ ଲୋକଙ୍କର ଧର୍ମଗତ ଧାରଣାକୁ ଗୁରୁତ୍ୱ ଦିଆଯାଏ । ଏ କ୍ଷେତ୍ରରେ ଦୁଇଟି ପୃଥକ୍ ଧାରାରେ ସଂସ୍କାର କରାଯାଇପାରେ । ଗୋଟିଏ କ୍ଷେତ୍ରରେ ଧର୍ମୀୟ ବିଧାନ ଅନୁଯାୟୀ ଏହା କରାଯାଇ ଯେଉଁମାନେ ଧର୍ମଛାଡ଼ି ଦେଇଛନ୍ତି ସେମାନେ ପୁନଶ୍ଚ ଧର୍ମ ଭିତରକୁ ଆସିବା ପାଇଁ ସ୍ୱାଗତ କରାଯାଏ । ଅନ୍ୟ ଗୋଟିଏ ଧାରାରେ ଧର୍ମର ପ୍ରଭୁତ୍ୱକୁ ପ୍ରଶ୍ନକରି ଧର୍ମୀୟ ବିଧାନ ବିରୋଧରେ କାର୍ଯ୍ୟ କରିବାକୁ ଓ ଏପରି ଧର୍ମକୁ ପ୍ରତ୍ୟାଖ୍ୟାନ କରିବାକୁ ଲୋକମାନଙ୍କୁ ଉତ୍ସାହିତ କରାଯାଏ । କେତେକ ଧର୍ମଗତ ବିଶ୍ୱାସର ଅବଶ୍ୟମ୍ଭାବୀ ପରିଣାମରୁ ଜାତିପ୍ରଥାର ଉଦ୍ଭବ ହୋଇଛି । ଏହି ବିଶ୍ୱାସ ସକଳ ପଶ୍ଚାତରେ ଶାସ୍ତ୍ରର ଅନୁମୋଦନ ରହିଛି । ଶାସ୍ତ୍ରର ବିଶ୍ୱାସଗୁଡ଼ିକ ଦିବ୍ୟଦ୍ରଷ୍ଟା ଋଷିମାନେ ନିଜର ଆଧ୍ୟାତ୍ମିକ ଅନୁଭୂତିଦ୍ୱାରା ଜନସମାଜକୁ ଦେଇଛନ୍ତି, ସୁତରାଂ ଶାସ୍ତ୍ରର ପ୍ରତିପାଦନଗୁଡ଼ିକ ଦିବ୍ୟ ଅନୁଭୂତି ଉପରେ ଆଧାରିତ ଓ ସେଗୁଡ଼ିକ ଶାଶ୍ୱତ ସତ୍ୟ, ସେଗୁଡ଼ିକର ଅବମାନନା କରିବା ଅର୍ଥ ପାପ କରିବା – ଏହି ପ୍ରକାରର ବିଶ୍ୱାସ ସକଳରୁ ଜାତି ବ୍ୟବସ୍ଥା ତିଷ୍ଠି ରହିଛି । ଫଳରେ ଜାତିପ୍ରଥାର ବିନାଶ ପାଇଁ ଯେଉଁ ସଂସ୍କାର କରାଯିବା ଆବଶ୍ୟକ ତାହା ତୃତୀୟ ସ୍ତରର ସଂସ୍କାରଦ୍ୱାରା ସମ୍ଭବ ହେବ । ଜାତିକୁ ପ୍ରତ୍ୟାଖ୍ୟାନ କରିବା ପାଇଁ

କହିବାର ଅର୍ଥ ହେଉଛି ଲୋକମାନଙ୍କର ମୌଳିକ ଧର୍ମଗତ ବିଶ୍ୱାସର ବିରୁଦ୍ଧାଚରଣ କରିବା । ଅବଶ୍ୟ ପ୍ରଥମ ଓ ଦ୍ୱିତୀୟ ସ୍ତରର ସଂସ୍କାର ସହଜ ସାଧ୍ୟ, କିନ୍ତୁ ତୃତୀୟ ସ୍ତରର ସଂସ୍କାର ଅତ୍ୟନ୍ତ କଷ୍ଟସାଧ୍ୟ ଓ ଏପରିକି ବେଳକେ ଅସମ୍ଭବ ମନେହୁଏ । ହିନ୍ଦୁମାନେ ସେମାନଙ୍କର ସାମାଜିକ ବ୍ୟବସ୍ଥାକୁ ପବିତ୍ର ବୋଲି ମନେକରନ୍ତି । ଜାତିବ୍ୟବସ୍ଥା ଏକ ଦିବ୍ୟ ନିୟମର ଆଧାର ଉପରେ ପର୍ଯ୍ୟବସିତ ବୋଲି ଭାବନ୍ତି । ଫଳରେ ଜାତି ବ୍ୟବସ୍ଥା ଯେଉଁ ପବିତ୍ର ଓ ଦିବ୍ୟ ଭାବନା ସହିତ ସଂଶ୍ଳିଷ୍ଟ ପ୍ରଥମେ ତାହାକୁ ଆପଣମାନେ ବିଲୋପ କରିବା ଦରକାର । ଅନ୍ୟଭାବରେ କହିଲେ ଶାସ୍ତ୍ର ଓ ବେଦର ପ୍ରଭୂତ୍ୱକୁ ବିନାଶ କରିବା ଆବଶ୍ୟକ ।

ମୁଁ ଜାତିପ୍ରଥାର ବିଲୋପ କ୍ଷେତ୍ରରେ ଆବଶ୍ୟକୀୟ ପନ୍ଥା ସମ୍ପର୍କୀୟ ପ୍ରଶ୍ନ ଉପରେ ଗୁରୁତ୍ୱ ଦେଇଛି । କାରଣ ମୁଁ ବିଶ୍ୱାସ କରୁଛି ଯେ ଏକ ଆଦର୍ଶକୁ ଜାଣିବା ଅପେକ୍ଷା ଏକ ବ୍ୟବସ୍ଥାକୁ ବଦଳାଇବା ପାଇଁ ସମୀଚୀନ ପନ୍ଥା ନିର୍ଣ୍ଣୟ କରିବା ଅଧିକ ଗୁରୁତ୍ୱପୂର୍ଣ୍ଣ । ଯଦି ଆପଣମାନେ ଏହାକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ଯଥାର୍ଥ ଓ ବାସ୍ତବ ପନ୍ଥା ଅବଲମ୍ବନ ନ କରନ୍ତି ଆପଣମାନଙ୍କର ସମସ୍ତ ପ୍ରୟାସ ବୃଥା ହେବ । ଯଦି ମୋର ଆଲୋଚନା ଯଥାର୍ଥ ମନେହୁଏ ତେବେ ଆପଣମାନଙ୍କର ଉଦ୍ୟମ ଅତ୍ୟନ୍ତ କଷ୍ଟ ସାଧ୍ୟ ହେବ । ଆପଣମାନେ ଠିକ୍ ନିଜ ପନ୍ଥାରେ ଯାଉଛନ୍ତି କି ନାହିଁ ତାହା ନିଜେ ବିଚାର କରିପାରିବେ ।

ମୋ ଦୃଷ୍ଟିରୁ ମୁଁ କହିବି ଯେ ଜାତିପ୍ରଥାର ବିଲୋପ କାର୍ଯ୍ୟ ଅତ୍ୟନ୍ତ କଠିନ ଓ ଏକପ୍ରକାର ଅସମ୍ଭବ ମନେହୁଏ । ହୁଏତ ମୁଁ ଏପରି କାହିଁକି ଭାବୁଛି ତାହା ଜାଣିବାକୁ ଆପଣମାନେ ଆଗ୍ରହୀ ହୋଇପାରନ୍ତି । ଯେଉଁସବୁ କାରଣ ଯୋଗୁଁ ଏହା ଅସମ୍ଭବ ବୋଲି ମୁଁ ବିଚାର କରୁଛି ସେଥିରୁ କେତୋଟି ଗୁରୁତ୍ୱପୂର୍ଣ୍ଣ କାରଣ ମୁଁ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଛି । ଏହି କାରଣ ମାନଙ୍କ ଭିତରୁ ଗୋଟିଏ କାରଣ ହେଉଛି ଜାତି ପ୍ରଥାର ବିଲୋପ କ୍ଷେତ୍ରରେ ବିରୋଧୀ ଭାବ, ବିଶେଷ କରି ଯାହାକି ବ୍ରାହ୍ମଣମାନେ ଏହି ପ୍ରଶ୍ନ ଉପରେ ପ୍ରକାଶ କରିଥାନ୍ତି । ରାଜନୈତିକ ଓ ଅର୍ଥନୈତିକ ସଂସ୍କାର କ୍ଷେତ୍ରରେ ହୋଇଥିବା ଆନ୍ଦୋଳନମାନଙ୍କରେ ବ୍ରାହ୍ମଣମାନେ ସର୍ବଦା ଅଗ୍ରଣୀ ଭୂମିକା ନେଇଛନ୍ତି । କିନ୍ତୁ ଜାତିଗତ ପ୍ରାଚୀରକୁ ଭାଙ୍ଗିବା କ୍ଷେତ୍ରରେ ସେମାନେ କୌଣସି ଭୂମିକା ନେଇନାହାନ୍ତି

ଓ ଏପରିକି ସମସ୍ୟାଟି ଉପରେ କୌଣସି ଧ୍ୟାନ ଦେଇନାହାନ୍ତି । ସୁତରାଂ ଭବିଷ୍ୟତରେ ଜାତିପ୍ରଥାର ଉଚ୍ଛେଦ କ୍ଷେତ୍ରରେ ବ୍ରାହ୍ମଣମାନେ କୌଣସି ନେତୃତ୍ୱ ନେବାର ସମ୍ଭାବନା ଅଛିକି ? ମୁଁ ଭାବୁଛି ସେପରି ସମ୍ଭାବନା ନାହିଁ । ଆପଣମାନେ କାହିଁକି ବୋଲି ପ୍ରଶ୍ନ କରିପାରନ୍ତି । ବ୍ରାହ୍ମଣମାନେ ସାମାଜିକ ସଂସ୍କାରକୁ ପରିହାର କରିବାର ସେପରି କୌଣସି କାରଣ ନାହିଁ ବୋଲି ଆପଣମାନେ କହିପାରନ୍ତି । ଆପଣମାନେ ଯୁକ୍ତି କରିପାରନ୍ତି ଯେ ଜାତିପ୍ରଥା ହିନ୍ଦୁ ସମାଜର ଏକ କଳଙ୍କ ବୋଲି ବ୍ରାହ୍ମଣମାନେ ଜାଣନ୍ତି । ହିନ୍ଦୁ ସମାଜର ସେମାନେ ଏକ ସଚେତନ ଶ୍ରେଣୀ ହୋଇଥିବାରୁ ସେମାନେ ଏହି ସମସ୍ୟାଟି ପ୍ରତି ଉଦାସୀନ ରହିପାରିବେ ନାହିଁ ବୋଲି ଆପଣମାନେ ଦର୍ଶାଇ ପାରନ୍ତି । ଆପଣମାନେ ଏକଥା ମଧ୍ୟ ଯୁକ୍ତି କରିପାରନ୍ତି ଯେ ବ୍ରାହ୍ମଣମାନଙ୍କ ମଧ୍ୟରେ ଧର୍ମନିରପେକ୍ଷ ବ୍ରାହ୍ମଣ ଓ ପୂଜକ ବା ପୁରୋହିତ ଶ୍ରେଣୀର ବ୍ରାହ୍ମଣ ଅଛନ୍ତି । ଯଦି ପୂଜକ ଶ୍ରେଣୀର ଲୋକମାନେ ଜାତି ବ୍ୟବସ୍ଥାକୁ ଭାଙ୍ଗିବା ପାଇଁ କୌଣସି ସ୍ୱର ଉତ୍ତୋଳନ କରିବେ ନାହିଁ, ତେବେ ଅନ୍ତତଃ ଧର୍ମନିରପେକ୍ଷ ବ୍ରାହ୍ମଣମାନେ ଏ କ୍ଷେତ୍ରରେ ଅଗ୍ରସର ହେବେ । ଆପଣମାନଙ୍କର ଏହି ଯୁକ୍ତି ସଙ୍ଗତ ମନେହୁଏ । କିନ୍ତୁ ଏ କ୍ଷେତ୍ରରେ ଆପଣମାନେ ଗୋଟିଏ କଥା ଭୁଲି ଯାଉଛନ୍ତି ଯେ ଜାତିପ୍ରଥାକୁ ଭାଙ୍ଗିବାର ଅର୍ଥ ହେଉଛି ବ୍ରାହ୍ମଣମାନଙ୍କର ସ୍ୱାର୍ଥକୁ ଆଘାତ କରିବା । ସୁତରାଂ ଜାତିପ୍ରଥାକୁ ବିଲୋପ କରି ନିଜ ଜାତିର ପ୍ରତିଷ୍ଠା ଓ ସମ୍ମାନକୁ ନଷ୍ଟ କରିବା ପାଇଁ ଆନ୍ଦୋଳନରେ ବ୍ରାହ୍ମଣମାନେ ଯେ ନେତୃତ୍ୱ ନେବେ ତାହା କିପରି ଆଶା କରାଯାଇ ପାରିବ ? ଧର୍ମ ନିରପେକ୍ଷବାଦୀ ବ୍ରାହ୍ମଣମାନେ ପୂଜକ ଶ୍ରେଣୀର ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବା ବୋଲି କହିବା କେତେଦୂର ଯୁକ୍ତିଯୁକ୍ତ ? ମୋ ବିଚାରରେ ଧର୍ମନିରପେକ୍ଷବାଦୀ ବ୍ରାହ୍ମଣ ଓ ପୂଜକ ଶ୍ରେଣୀର ବ୍ରାହ୍ମଣଙ୍କ ଭିତରେ ପ୍ରଭେଦ ଆଣିବା ଅର୍ଥହୀନ । ସେମାନେ ଉଭୟ ପରସ୍ପରର ବନ୍ଧୁ, ସହୋଦର, ଗୋଟିଏ ଶରୀରର ଦୁଇଟି ବାହୁ ଭଳି । ଗୋଟିଏ ବାହୁ ଅନ୍ୟ ବାହୁଟି ବିରୁଦ୍ଧରେ ଯୁଦ୍ଧ କରିବା ଯାହା ଗୋଟିଏ ଶ୍ରେଣୀ ସେହି ଶ୍ରେଣୀ ବିରୁଦ୍ଧରେ ଆନ୍ଦୋଳନ କରିବା ତାହା । ଏହି ପରିପ୍ରେକ୍ଷୀରେ ଇଂଲଣ୍ଡର ସମ୍ବିଧାନରେ ଅଧ୍ୟାପକ ଡିସିଙ୍କର କିଛି ମନ୍ତବ୍ୟ ମୋର ମନକୁ ଆସୁଛି । ବ୍ରିଟିଶ୍ ସଂସଦର ସାର୍ବଭୌମିକ କ୍ଷମତା କ୍ଷେତ୍ରରେ ଥିବା ବାସ୍ତବ ପ୍ରତିବନ୍ଧକ ସମ୍ବନ୍ଧରେ ଡିସି କହିଛନ୍ତି, "କୌଣସି ସାର୍ବଭୌମିକ ଅନୁଷ୍ଠାନର ଓ ବିଶେଷକରି ସଂସଦର ସମନ୍ୱିତ ଅଧିକାର କ୍ଷେତ୍ରରେ ଦୁଇଟି ପ୍ରତିବନ୍ଧକ ରହିଛି ।

ଗୋଟିଏ ପ୍ରତିବନ୍ଧକ ବାହ୍ୟିକ ହେବା ବେଳେ ଅନ୍ୟଟି ଆଭ୍ୟନ୍ତରୀଣ ଅଟେ । ଏକ ସାର୍ବଭୌମିକ ସଂସ୍କାର ବା ସ୍ୱକ୍ଷମତା କ୍ଷେତ୍ରରେ ବାହ୍ୟ ପ୍ରତିବନ୍ଧକଟି ହେଉଛି ଜନଗଣ ବା ଅଧିକାଂଶ ବ୍ୟକ୍ତି ସଂସ୍କାର ଆଇନକୁ ଅମାନ୍ୟ କରିବା ବା ପ୍ରତିରୋଧ କରିବା । ସାର୍ବଭୌମିକ କ୍ଷମତା ପ୍ରୟୋଗ କ୍ଷେତ୍ରରେ ଆଭ୍ୟନ୍ତରୀଣ ପ୍ରତିବନ୍ଧକଟି ସାର୍ବଭୌମିକ ସଂସ୍ଥାର କ୍ଷମତା ବା ସ୍ୱରୂପ ଭିତରୁ ହିଁ ଆସିଥାଏ । ଏପରିକି ଜଣେ ଏକଛତ୍ରବାଦୀ ଶାସକ ତା'ର ସାର୍ବଭୌମ କ୍ଷମତାକୁ କେତେକ ପରିସ୍ଥିତିକୁ ବିଚାର କରି ପ୍ରୟୋଗ କରିଥାଏ । ବିଶେଷ କରି ସେ କେଉଁ ପରିବେଶରେ କାର୍ଯ୍ୟ କରୁଛି, ସେହି ସମାଜରେ ପ୍ରଚଳିତ ଥିବା ନୈତିକ ବିଚାରବୋଧ ତଥା ସମସାମୟିକ ଘଟଣା ପ୍ରବାହକୁ ସେ ବିଚାରକୁ ନେଇଥାଏ । ଜଣେ ସୁଲତାନ ଚାହିଁଲେ ମଧ୍ୟ ମୁସଲମାନ ଜଗତର ଧର୍ମକୁ ପରିବର୍ତ୍ତନ କରି ଦେଇପାରିବେ ନାହିଁ । ଯଦି ବି ସେ ଏହା କରିବାକୁ ପ୍ରୟାସ କରନ୍ତି ତେବେ ମୁସଲମାନ ଧର୍ମର ପ୍ରବର୍ତ୍ତକ ମହମ୍ମଦଙ୍କର ପ୍ରଚାରିତ ଧର୍ମକୁ ସେ ବିତାଡ଼ିତ କରିପାରିବେ କି ? ଏହା କେବେ ବି ସମ୍ଭବ ହେବନାହିଁ । ସୁଲତାନଙ୍କର ଯେତେ ନିରଙ୍କୁଶ କ୍ଷମତା ଥିଲେବି ସେ ଏଥିରେ ସଫଳ ହେବେ ନାହିଁ । ତାଙ୍କୁ ଯେପରି ବାହ୍ୟ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିବ, ସେପରି ଆଭ୍ୟନ୍ତରୀଣ ପ୍ରତିବନ୍ଧକକୁ ମଧ୍ୟ ସାମ୍ନା କରିବାକୁ ପଡ଼ିବ । ପୋପ୍ କାହିଁକି ସଂସ୍କାର ପାଇଁ ଆଗ୍ରହୀ ନୁହନ୍ତି ବୋଲି କେତେକ ସମୟରେ ପ୍ରଶ୍ନ କରିଥାନ୍ତି । ଏହି ପ୍ରଶ୍ନ ଅବାନ୍ତର କାରଣ କୌଣସି ବିପ୍ଳବୀ ଚରିତ୍ରର ବ୍ୟକ୍ତି କେବେ ହେଲେ ପୋପ୍ ହୋଇପାରିବେ ନାହିଁ କିମ୍ବା ପୋପ୍ ହେଉଥିବା ବ୍ୟକ୍ତି କୌଣସି ବିପ୍ଳବୀ ହେବାକୁ କେବେ ହେଲେ ଆଗ୍ରହ ପ୍ରକାଶ କରିବେ ନାହିଁ" ଡିସିଙ୍କର ଏହି ମନ୍ତବ୍ୟ ଭାରତର ବ୍ରାହ୍ମଣମାନଙ୍କ ପ୍ରତି ପ୍ରଯୁଜ୍ୟ ବୋଲି ମୁଁ ମନେକରେ । ଯେପରି ପୋପ୍ ହେଉଥିବା ବ୍ୟକ୍ତି କ୍ରାନ୍ତିକାରୀ ହେବାକୁ ଆଗ୍ରହ କରନ୍ତି ନାହିଁ, ସେହିପରି ବ୍ରାହ୍ମଣହୋଇ ଜନ୍ମ ହୋଇଥିବା କେହି ବ୍ୟକ୍ତି କ୍ରାନ୍ତିକାରୀ ହେବାକୁ ଆଗ୍ରହ ପ୍ରକାଶ କରିବେ ନାହିଁ । ବ୍ରାହ୍ମଣମାନେ ସାମାଜିକ ସଂସ୍କାର କ୍ଷେତ୍ରରେ କ୍ରାନ୍ତିକାରୀର ଭୂମିକା ନେବେ ବୋଲି ଆଶା କରିବା, ଷ୍ଟିଫେନଙ୍କ ମତରେ ବ୍ରିଟିଶ୍ ସଂସଦ ସମସ୍ତ ନୀଳ ଆଖିର ଶିଶୁମାନଙ୍କୁ ହତ୍ୟାକରିବା ପାଇଁ ଆଇନ କରିବା ଆଶା କରିବା ସହିତ ସମାନ । ଏହା ଯେପରି ଅବାସ୍ତବ ସେପରି ଅସମ୍ଭବ ।

ଆପଣମାନଙ୍କ ଭିତରୁ କେତେକ କହିବେ ଯେ ଜାତିପ୍ରଥା ବିରୁଦ୍ଧରେ କୌଣସି ଆନ୍ଦୋଳନ ପାଇଁ ବ୍ରାହ୍ମଣମାନେ ଅଗ୍ରଗାମୀ ଭୂମିକା ନେବା ବା ନ ନେବା ସେପରି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ନୁହେଁ । କିନ୍ତୁ ଏହା କହିବା ମୋ ବିଚାରରେ ସମାଜର ବୁଦ୍ଧିଜୀବୀ ଶ୍ରେଣୀର ଭୂମିକାକୁ ଅସ୍ୱୀକାର କରିବା ସହିତ ସମାନ । ଇତିହାସକୁ ମୋଡ଼ ଦେବାରେ ମହାନ ବ୍ୟକ୍ତିଙ୍କର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ଏହି ସିଦ୍ଧାନ୍ତକୁ ଆପଣମାନେ ଗ୍ରହଣ କରନ୍ତୁ ବା ନ କରନ୍ତୁ ଆପଣମାନେ ଏ କଥାକୁ ସ୍ୱୀକାର କରିବାକୁ ବାଧ୍ୟ ହେବେ ଯେ ପ୍ରତ୍ୟେକ ଦେଶର ବୁଦ୍ଧିଜୀବୀ ବର୍ଗ ଶାସନ କ୍ଷମତାରେ ଥା'ନ୍ତୁ ବା ନଥା'ନ୍ତୁ ଏକ ପ୍ରଭାବଶାଳୀ ଶ୍ରେଣୀ ଅଟନ୍ତି । ସମାଜର ବୁଦ୍ଧିଜୀବୀ ଶ୍ରେଣୀ ଭବିଷ୍ୟତର ରୂପରେଖ ଆଙ୍କିଥାନ୍ତି ତଥା ସମାଜକୁ ଉଚିତ ଦିଗ୍‌ଦର୍ଶନ ଦେଇଥାନ୍ତି । କୌଣସି ଦେଶରେ ସାଧାରଣ ଲୋକମାନେ ବୁଦ୍ଧିମତ୍ତାପୂର୍ଣ୍ଣ ଜୀବନ ବା ମହାନ କର୍ମରେ ବ୍ୟାପୃତ ନ ଥାନ୍ତି । ସମାଜର ବୁଦ୍ଧିଜୀବୀ ଶ୍ରେଣୀକୁ ସାଧାରଣ ଜନଗଣ କେବଳ ଅନୁକରଣ କରିଥାନ୍ତି । ଗୋଟିଏ ଦେଶର ଭାଗ୍ୟ ତା'ର ବୁଦ୍ଧିଜୀବୀ ଶ୍ରେଣୀ ଉପରେ ଯେ ନିର୍ଭର କରେ ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ଯଦି ବୁଦ୍ଧିଜୀବୀ ଶ୍ରେଣୀଟି ସଚ୍ଚୋଟ, ସ୍ୱାଧୀନ ଓ ନିଃସ୍ୱାର୍ଥପର ହୋଇଥାଏ ତେବେ କୌଣସି ସଙ୍କଟ ସମୟରେ ଏହା ଦେଶକୁ ନେତୃତ୍ୱ ଦେଇପାରିବ ବୋଲି ବିଶ୍ୱାସ କରାଯାଇପାରେ । ଏହା ସତ୍ୟ ଯେ ବୌଦ୍ଧିକତା ଏକ ବିଶେଷ ବା ମହାନ୍ ଗୁଣ ନୁହେଁ, ଏହା କେବଳ ଏକ ସାଧନ ମାତ୍ର । କୌଣସି ସାଧନକୁ କେଉଁ ଲକ୍ଷ୍ୟ ଦିଗରେ ବିନିଯୋଗ କରାଯାଉଛି ତା'ରି ଉପରେ ଏହାର ଗୁଣାତ୍ମକ ମାନ ନିର୍ଭର କରିଥାଏ । ଜଣେ ବୁଦ୍ଧିଜୀବୀ ଲୋକ ଆଦର୍ଶବାଦୀ ବା ଦୁର୍ବୃତ୍ତ ହୋଇପାରନ୍ତି । ସେହି ଭଳି ଗୋଟିଏ ବୁଦ୍ଧିଜୀବୀ ବର୍ଗ ମହାନ୍ ହେଲେ ଅନ୍ୟର ଦୁଃଖକୁ ଦୂର କରିବା ପାଇଁ ସହାୟତା କରିଥାଏ, ମଣିଷ ଜାତିର ତ୍ରୁଟିକୁ ସୁଧାର କରି ଯଥାର୍ଥ ମାର୍ଗ ଦେଖାଇଥାଏ ଓ ମଣିଷର ମୁକ୍ତିପାଇଁ କାର୍ଯ୍ୟ କରିଥାଏ । ପରନ୍ତୁ ଏହି ବର୍ଗ ଧୂର୍ତ୍ତ ହେଲେ ନିଜର ସ୍ୱାର୍ଥକୁ ଅଗ୍ରାଧିକାର ଦେଇ ନିଜର ଅଭିସନ୍ଧି ଭିତରେ ସମାଜର ଅନିଷ୍ଟ କରିଥାଏ । ଏହା ପରିତାପର ବିଷୟ ଯେ ଭାରତ ବର୍ଷରେ ବ୍ରାହ୍ମଣ ଜାତିର ବ୍ୟକ୍ତିମାନେ ହିଁ ବୁଦ୍ଧିଜୀବୀ ଶ୍ରେଣୀରେ ମାନ୍ୟତା ଲାଭ କରିଛନ୍ତି । ଭାରତରେ ବ୍ରାହ୍ମଣମାନେ ହିଁ ବୁଦ୍ଧିଜୀବୀ ବୋଲି ପରିଚିତ ଓ ବୁଦ୍ଧିଜୀବୀ ବର୍ଗ କେବଳ ବ୍ରାହ୍ମଣ ଜାତି ସହିତ ସଂପୃକ୍ତ । ଦେଶର ବୁଦ୍ଧିଜୀବୀ ଶ୍ରେଣୀଟି କେବଳ ବ୍ରାହ୍ମଣ ଜାତି ଭିତରୁ ଆସୁଥିବାରୁ ଏହି ଶ୍ରେଣୀଟି କେବଳ ବ୍ରାହ୍ମଣମାନଙ୍କର ସ୍ୱାର୍ଥପ୍ରତି ସର୍ବଦା ସଚେତନ ହୋଇଛି । ସମଗ୍ର ଦେଶର ସ୍ୱାର୍ଥକୁ

ଦେଖିବା ପରିବର୍ତ୍ତେ ସେମାନେ ଗୋଟିଏ ଜାତିର ସ୍ୱାର୍ଥକୁ ରକ୍ଷାକରିବା ପାଇଁ ସର୍ବଦା ଚେଷ୍ଟା କରିଛନ୍ତି । ଏହା ଯେତେ ଦୁର୍ଭାଗ୍ୟଜନକ ହେଲେ ବି ଏହା ସତ୍ୟ ଯେ ହିନ୍ଦୁମାନଙ୍କ ଭିତରେ ବ୍ରାହ୍ମଣମାନେ ହେଉଛନ୍ତି ବୁଦ୍ଧିଜୀବୀ ଶ୍ରେଣୀର । ହିନ୍ଦୁ ସମାଜରେ ଅନ୍ୟ ସମସ୍ତେ ବ୍ରାହ୍ମଣମାନଙ୍କୁ ଉଚ୍ଚ ସମ୍ମାନ ଦେଇ ଆସିଛନ୍ତି । ହିନ୍ଦୁମାନଙ୍କୁ ଏହି ଶିକ୍ଷା ଦିଆଯାଇଛି ଯେ ବ୍ରାହ୍ମଣମାନେ ହେଉଛନ୍ତି ଭୂଦେବ । ସେମାନେ ମର୍ତ୍ତ୍ୟରେ ଈଶ୍ୱରଙ୍କର ଅବତାର । ଶାସ୍ତ୍ରରେ କୁହାଯାଇଛି, "ବର୍ଣ୍ଣାନାମ୍ ବ୍ରାହ୍ମଣୋ ଗୁରୁ" । କେବଳ ବ୍ରାହ୍ମଣମାନେ ସେମାନଙ୍କର ଗୁରୁ ହୋଇପାରିବେ ବୋଲି ହିନ୍ଦୁମାନଙ୍କୁ କୁହାଯାଇଛି । ମନୁ କହିଛନ୍ତି "ଯଦି କୌଣସି ବିଷୟରେ ଏହା ଧର୍ମ ସଙ୍ଗତ କି ନୁହଁ ବୋଲି ଶାସ୍ତ୍ରରେ କୌଣସି ଉଦ୍ଧୃତି ନ ମିଳେ, ତେବେ ସେ କ୍ଷେତ୍ରରେ ଶିଷ୍ଟ ବ୍ରାହ୍ମଣମାନଙ୍କର ଉକ୍ତିକୁ ହିଁ ନିଃସନ୍ଦେହରେ ବିଧାନ ବୋଲି ମାନିବାକୁ ହେବ ।" ତାଙ୍କ ମତରେ –

ଅନାମ୍ନାତେଷୁ ଧର୍ମେଷୁ କଥଂ ସ୍ୟାଦିତି ଚେଦ୍‌ଭବେତ୍
ଯଂ ଶିଷ୍ଟା ବ୍ରାହ୍ମଣା ବ୍ରୂୟଃ ସ ଧର୍ମଃ ସ୍ୟା ଦଶଙ୍କିତଃ ।

ଯେତେବେଳେ ଏହି ବୁଦ୍ଧିଜୀବୀ ବର୍ଗ ସମାଜର ଅନ୍ୟ ସମସ୍ତଙ୍କୁ ପ୍ରଭାବିତ ଓ କବଳିତ କରି ରଖିଛି ଓ ଜାତିଗତ ସଂସ୍କାରକୁ ବିରୋଧ କରୁଛି, ସେତେବେଳେ ଜାତି ବ୍ୟବସ୍ଥାକୁ ବିନାଶ କରିବା ପାଇଁ କୌଣସି ଆନ୍ଦୋଳନର ସଫଳତା ମୋତେ ଅତ୍ୟନ୍ତ ସୁଦୂରପ୍ରସାରୀ ମନେହୁଏ ।

ସାମାଜିକ ସଂସ୍କାର କାର୍ଯ୍ୟଦ୍ୱାରା ଜାତିପ୍ରଥାର ବିଲୋପ କାହିଁକି ଅସମ୍ଭବ ମନେହେଉଛି ସେ କ୍ଷେତ୍ରରେ ଦ୍ୱିତୀୟ କାରଣଟି ମୁଁ ଆଲୋଚନା କରିବାକୁ ଯାଉଛି । ଏହାକୁ ବୁଝାଇବା ପରିପ୍ରେକ୍ଷୀରେ ପୂର୍ବରୁ ଆଲୋଚିତ ହୋଇଥିବା ଜାତିପ୍ରଥାର ଦୁଇଟି ଦିଗ ସମ୍ପର୍କରେ ମୁଁ ଏଠାରେ ଆପଣମାନଙ୍କୁ ସ୍ମରଣ କରାଇ ଦେଉଛି । ତାହାଦ୍ୱାରା ମୋର ଆଲୋଚନାଟି ସ୍ପଷ୍ଟ ହୋଇପାରିବ । ଜାତି ବ୍ୟବସ୍ଥାର ପ୍ରଥମ ଦିଗଟି ହେଉଛି ଏଥିରେ ଜନଗଣ ବିଭିନ୍ନ ପୃଥକ୍ ଗୋଷ୍ଠୀରେ ବିଭାଜିତ ହୋଇଥାନ୍ତି । ଏହାର ଦ୍ୱିତୀୟ ଦିଗଟି ହେଉଛି ଏଥିରେ ସମସ୍ତ ଗୋଷ୍ଠୀମାନଙ୍କୁ ସାମାଜିକ ସ୍ତରରେ ଉଚ୍ଚ ନୀଚ ଭାବରେ ଗ୍ରହଣ କରାଯାଏ । ପ୍ରତ୍ୟେକ ଜାତି ଅନ୍ୟ କେତେକ ଜାତିଙ୍କଠାରୁ ସାମାଜିକ ସ୍ତରରେ ଉଚ୍ଚରେ ଥିବାରୁ ସେଥିପାଇଁ ଗର୍ବ ଓ ସାନ୍ତ୍ୱନା ପାଇଥାଏ । ବାହ୍ୟିକ ସ୍ତରରେ ଏହି ଉଚ୍ଚ

ନୀଚ ବର୍ଗୀକରଣ କେତେକ ସାମାଜିକ ଓ ଧାର୍ମିକ ଅଧିକାର ଦ୍ୱାରା ନିର୍ଣ୍ଣିତ ହୋଇଥାଏ ଯାହାକୁ ଅଷ୍ଟାଧିକାର ଓ ସଂସ୍କାର ବୋଲି କୁହାଯାଏ । ଗୋଟିଏ ଜାତିର ସାମାଜିକ ସ୍ତର ଉଚ୍ଚରେ ଥିଲେ ତାହା ଅଧିକ ଅଧିକାର ପାଇଥିବା ବେଳେ ତଳ ସ୍ତରରେ ଥିବା ଜାତି ଅଳ୍ପ ଅଧିକାର ଓ ସଂସ୍କାରର ସୁଯୋଗ ପାଇଥାଏ । ଏହି ତାରତମ୍ୟ ଯୋଗୁଁ ଏବଂ ଜାତିମାନଙ୍କୁ ଉଚ୍ଚ ନୀଚ ଭାବରେ ରଖାଯାଇ ଥିବାରୁ ଜାତିପ୍ରଥା ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଏକ ମୋର୍ଚ୍ଚା ଗଠନ କରିବା କଷ୍ଟକର ଓ ଏପରିକି ଅସମ୍ଭବ ଅଟେ । ଯଦି ଗୋଟିଏ ଜାତି ଏହାଠାରୁ ଉଚ୍ଚରେ ଥିବା ଅନ୍ୟ ଏକ ଜାତି ସହିତ ଭୋଜନ ଓ ବିବାହ କରିବା ପାଇଁ ଆଶାପୋଷଣ କରେ, ତେବେ ତତ୍‌କ୍ଷଣାତ୍ ଏହାକୁ ବାରଣ କରାଯାଏ । କଳହପ୍ରିୟ ଲୋକମାନେ ବିଶେଷକରି ବ୍ରାହ୍ମଣମାନେ ସେହି ଜାତିର ଲୋକମାନଙ୍କୁ କହିଥାନ୍ତି ଯେ ସେମାନେ ଚାହିଁଲେ ସେମାନଙ୍କଠାରୁ ତଳେ ଥିବା ଜାତି ସହିତ ଭୋଜନ ବା ବିବାହ କରିପାରିବେ କିନ୍ତୁ ସେମାନଙ୍କ ଉପରେ ଥିବା ଜାତି ସହିତ କରିପାରିବେ ନାହିଁ । ଜାତିପ୍ରଥାର ସମସ୍ତେ ଗୋଲାମ ହୋଇଛନ୍ତି, କିନ୍ତୁ ସବୁ ଗୋଲାମମାନଙ୍କର ସାମାଜିକ ସ୍ତର ସମାନ ନୁହଁ । ଏକ ଅର୍ଥନୈତିକ ବିପ୍ଳବପାଇଁ ସର୍ବହରାମାନଙ୍କୁ ସଂଘବଦ୍ଧ କରିବାକୁ କାର୍ଲମାର୍କସ କହିଥିଲେ, "ତୁମର ବେଡ଼ି ବ୍ୟତୀତ ତୁମେ ଆଉ କିଛି ହରାଇବ ନାହିଁ ।" କିନ୍ତୁ ବିଭିନ୍ନ ଜାତିଗୁଡ଼ିକ ମଧ୍ୟରେ ସାମାଜିକ ଓ ରାଜନୈତିକ ଅଧିକାରକୁ ଯେପରି କୌଶଳପୂର୍ଣ୍ଣ ଭାବରେ ବିତରଣ କରାଯାଇଛି, ଯଦ୍ୱାରା କେତେକ ବେଶୀ ଅଧିକାର ପାଇଥିବାବେଳେ ଅନ୍ୟମାନେ ଅଳ୍ପ ଅଧିକାର ପାଉଛନ୍ତି । ସେ କ୍ଷେତ୍ରରେ ଜାତିପ୍ରଥା ବିରୁଦ୍ଧରେ ହିନ୍ଦୁମାନଙ୍କୁ ସଂଗଠିତ କରିବା ପାଇଁ କାର୍ଲମାର୍କସଙ୍କର ବାଣୀ କୌଣସି ପ୍ରଭାବ ପକାଇ ପାରିବ ନାହିଁ । ଜାତିଗୁଡ଼ିକୁ ଏପରି ସାର୍ବଭୌମିକ ସତ୍ତାରେ ଉଚ୍ଚନୀଚ ଭାବେ ବର୍ଗୀକୃତ କରାଯାଇଛି ଯଦ୍ୱାରା ଜାତିପ୍ରଥାକୁ ବିଲୋପ କରିବା ସମ୍ଭବ ନୁହେଁ । କାରଣ ଯଦି ଜାତି ବ୍ୟବସ୍ଥା ଲୋପପାଏ ତେବେ ଏହି ବ୍ୟବସ୍ଥାରେ ଉଚ୍ଚ ସ୍ତରରେ ଥିବା ଓ ଅଧିକ କ୍ଷମତା ଏବଂ ସାମାଜିକ ସମ୍ମାନ ଲାଭ କରୁଥିବା ଲୋକମାନଙ୍କୁ ତାହା ହରାଇବାକୁ ପଡ଼ିବ । ନିଜର ଉଚ୍ଚ ସାମାଜିକ ସ୍ତର ପାଇଁ ଗର୍ବିତ ଥିବା ଜାତିମାନେ ସେମାନଙ୍କର ସାମାଜିକ ପ୍ରତିଷ୍ଠା ଓ ଅଧିକାର ହରାଇବାକୁ ଚାହିଁବେ ନାହିଁ । ସୁତରାଂ ସମସ୍ତ ହିନ୍ଦୁମାନଙ୍କୁ ସଂଗଠିତ କରି ଜାତିପ୍ରଥାକୁ ଆକ୍ରମଣ କରିବା ସମ୍ଭବ ନୁହେଁ ।

---

(୨୨)

# ଶାସ୍ତ୍ର ଓ ଜାତିର ବେଡ଼ି

ଜାତି ବ୍ୟବସ୍ଥା ବିଚାର ବୁଦ୍ଧିର ବିରୁଦ୍ଧାଚରଣ କରୁଥିବାରୁ ଏହାକୁ ବିନାଶ କରିବା ପାଇଁ ହିନ୍ଦୁମାନଙ୍କର ବିଚାରଶୀଳତାକୁ ଆପଣମାନେ ନିବେଦନ କରିବେ କି ? ଏଠାରେ ଏହି ପ୍ରଶ୍ନଟି ଆସୁଛି ଜଣେ ହିନ୍ଦୁ ନିଜର ବିଚାର ବୁଦ୍ଧି ପ୍ରୟୋଗ କରିବା କ୍ଷେତ୍ରରେ ସ୍ୱାଧୀନ କି ? ମନୁ ପ୍ରତ୍ୟେକ ହିନ୍ଦୁ ନିଜର ଆଚରଣ କ୍ଷେତ୍ରରେ ଯେଉଁ ତିନୋଟି ବିଧାନକୁ ଗ୍ରହଣ କରିବ ତାହା ଦର୍ଶାଇଛନ୍ତି "ବେଦ, ସ୍ମୃତି, ସଦାଚାର, ସ୍ୱସ୍ୟ ଚ ପ୍ରିୟମାତ୍ମନ ।" ସୁତରାଂ ଏ କ୍ଷେତ୍ରରେ ବିଚାରଶୀଳତାର କୌଣସି ଭୂମିକା ନାହିଁ । ପ୍ରତ୍ୟେକ ହିନ୍ଦୁ ବେଦ,ସ୍ମୃତି କିମ୍ବା ସଦାଚାରର ନିର୍ଦ୍ଦେଶକୁ ପାଳନ କରିବାକୁ ବାଧ୍ୟ । ସେ ଅନ୍ୟ କୌଣସି ନିର୍ଦ୍ଦେଶକୁ ମାନିପାରିବ ନାହିଁ । ପ୍ରଥମରେ ବେଦ ଓ ସ୍ମୃତିର ଯଥାର୍ଥ ଅର୍ଥ ନେଇ ଯଦି କୌଣସି ସନ୍ଦେହ ଉପୁଜେ ତେବେ ସେମାନଙ୍କର ପ୍ରକୃତ ବ୍ୟାଖ୍ୟା ନେଇ ସମାଧାନ କିପରି ହେବ ? ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ଉପରେ ମନୁ ଏକ ସ୍ପଷ୍ଟ ଉତ୍ତର ଦେଇଛନ୍ତି । ତାଙ୍କ ମତରେ –

ଯୋଃ ବମନ୍ୟେତ ତେମୂଳେ ହେତୁ ଶାସ୍ତ୍ରାୟାଦ୍‌ଦ୍ୱିଜଃ
ସ ସାଧୁଭିର୍ବହିଷ୍କାର୍ଯୋ ନାସ୍ତିକୋ ବେଦ ନିନ୍ଦକଃ ।।

ଏହି ନିୟମାନୁଯାୟୀ ତର୍କବୁଦ୍ଧିର ଆଧାର ଉପରେ ବେଦ ଓ ସ୍ମୃତିକୁ ବ୍ୟାଖ୍ୟା କରିବା ପାଇଁ ସେ ବାରଣ କରିଛନ୍ତି । ତର୍କଶୀଳ ଭାବରେ ଶାସ୍ତ୍ରକୁ ବ୍ୟାଖ୍ୟା କରିବା ନାସ୍ତିକତା ଅଟେ ଓ ହେତୁବାଦ ଉପରେ ଗୁରୁତ୍ୱ ଦେବା ବ୍ୟକ୍ତିକୁ ଦଣ୍ଡ ସ୍ୱରୂପ ସମାଜରୁ ବହିଷ୍କାର କରିଯିବା ଆବଶ୍ୟକ । ସୁତରାଂ ଯେଉଁ ବିଷୟରେ ବେଦ ଓ ସ୍ମୃତିରେ ଉଲ୍ଲେଖ ଅଛି ବିଚାରଶୀଳ ଯୁକ୍ତିର ଆଶ୍ରୟ ନେଇ କୌଣସି ହିନ୍ଦୁ ତା'ବିରୁଦ୍ଧରେ ମତ ଦେଇ ପାରିବେ ନାହିଁ । ଏପରିକି କୌଣସି ପ୍ରସଙ୍ଗ ଉପରେ ବେଦ ଓ ସ୍ମୃତି ଭିତରେ ମତ ପାର୍ଥକ୍ୟ ହେଲେ ତା'ର ସମାଧାନ ପାଇଁ ବିଚାରଶୀଳତାର ସାହାଯ୍ୟ ନେବା ଆବଶ୍ୟକ ନାହିଁ । ଯଦି ଦୁଇଟି ସ୍ମୃତି ଭିତରେ ମତ ପାର୍ଥକ୍ୟ ହୁଏ, ତେବେ ଉଭୟ ମତକୁ ସମ୍ମାନର ସହ ଗ୍ରହଣ କରାଯିବ । ସେ କ୍ଷେତ୍ରରେ ଯେ କୌଣସି ଗୋଟିଏ ମତକୁ

ଗ୍ରହଣ କରାଯିବ, କିନ୍ତୁ କେଉଁ ମତଟି ଅଧିକ ଯୁକ୍ତିସଙ୍ଗତ ତାହା ବିଚାର କରାଯିବ ନାହିଁ । ମନୁ ଏହାକୁ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି–

ଶ୍ରୁତିଦ୍ୱୈଧଂ ତୁ ଯତ୍ର ସ୍ୟାତ୍ତତ୍ର ଧର୍ମାବୁଭୌ ସ୍ମୃତୌ ।

"ଯଦି ଶ୍ରୁତି ଓ ସ୍ମୃତି ମଧ୍ୟରେ ମତ ପାର୍ଥକ୍ୟ ହୁଏ ତେବେ ଶ୍ରୁତିର ମତକୁ ଗ୍ରହଣ କରାଯିବ । ଏଠାରେ ମଧ୍ୟ କେଉଁ ମତଟି ଅଧିକ ଯୁକ୍ତିଯୁକ୍ତ ତାହା ବିଚାର କରାଯିବ ନାହିଁ । ମନୁ ତଳ ଶ୍ଳୋକରେ ତାହା ବ୍ୟକ୍ତ କରିଛନ୍ତି-

ଯା ବେଦବାହ୍ୟାଃ ସ୍ମୃତୟୋ ଯାଶ୍ଚ କାଶ୍ଚ କୁଦୃଷ୍ଟ ।  
ସର୍ବାସ୍ତା ନିଷ୍ଫଳାଃ ପ୍ରେତ୍ୟ ତମୋନିଷ୍ଠା ହି ତଃ ସ୍ମୃତାଃ ।

ପୁନଶ୍ଚ ଯଦି ଦୁଇଟି ସ୍ମୃତି ଭିତରେ ମତାନ୍ତର ହେବ ତେବେ ମନୁସ୍ମୃତିର ମତ ବଳବତ୍ତର ରହିବ । ଏଠାରେ ମଧ୍ୟ କୌଣସି ମତର ଯଥାର୍ଥତା ନେଇ ବିଚାରଶୀଳତାର ସାହାଯ୍ୟ ନିଆଯିବ ନାହିଁ । ବୃହସ୍ପତି ଏହି ନିର୍ଦ୍ଦେଶ ଦେଇଛନ୍ତି –

ବେଦାଯତ୍ୱୋପନିବଂଧୃତ୍ୱତ୍ ପ୍ରମାଣ୍ୟଂ ହି ମନୋ ସ୍ମୃତଂ ।  
ମନ୍ୱର୍ଥବିପରୀତା ତୁ ଯା ସ୍ମୃତିଃ ସା ନ ଶସ୍ୟତେ ॥

ଏଥିରୁ ଏହା ସ୍ପଷ୍ଟ ହେଉଛି କୌଣସି ବିଷୟ ଉପରେ ଶ୍ରୁତି ଓ ସ୍ମୃତି ଭିତରେ ରହିଥିବା ନିର୍ଦ୍ଦେଶକୁ ଜଣେ ମାନିବାକୁ ବାଧ୍ୟ । ଏ କ୍ଷେତ୍ରରେ ଜଣେ ହିନ୍ଦୁ କୌଣସି ଯୁକ୍ତିସଙ୍ଗତ ମତ ଦେଇ ପାରିବ ନାହିଁ । ଅର୍ଥାତ୍ ନିଜର ବିଚାରଶୀଳତା ପ୍ରୟୋଗ କରିବା ପାଇଁ ଜଣେ ହିନ୍ଦୁ ସ୍ୱାଧୀନ ନୁହେଁ । ମହାଭାରତରେ ସେହି ନିର୍ଦ୍ଦେଶ ମଧ୍ୟ ରହିଛି । -

ପୁରାଣଂ ମାନବୋ ଧର୍ମଃ ସୋଗୋ ବେଦଚିକିତ୍ସିତଂ ।  
ଆଜ୍ଞାସିଦ୍ଧାନି ଚତ୍ୱାରି ନ ହନ୍ତବ୍ୟାନି ହେତୁଭିଃ ॥

ଜଣେ ହିନ୍ଦୁଶାସ୍ତ୍ରର ବିଧାନ ମାନିବାକୁ ବାଧ୍ୟ । ଜାତି ଓ ବର୍ଣ୍ଣ ପ୍ରସଙ୍ଗରେ ବେଦ ଓ ସ୍ମୃତି ଭିତରେ ସ୍ପଷ୍ଟ ନିର୍ଦ୍ଦେଶ ରହିଛି, ଏଣୁ ଜଣେ ହିନ୍ଦୁ ପାଖରେ ଯୁକ୍ତିଯୁକ୍ତ ବିଚାରର କୌଣସି ପ୍ରଭାବ ନାହିଁ । ଜାତି ଓ ବର୍ଣ୍ଣ ପ୍ରସଙ୍ଗରେ ଜଣେ ହିନ୍ଦୁ ନିଜର ବିଚାର ବୁଦ୍ଧି

ପ୍ରୟୋଗ କରି କୌଣସି ସମସ୍ୟା ସମାଧାନ କରିବା ପାଇଁ ଶାସ୍ତ୍ର ବାରଣ କରିବା ସହ ଏହି ବିଶ୍ୱାସ ପଶ୍ଚାତରେ ଥିବା ମତକୁ ଯୁକ୍ତିଦ୍ୱାରା ପ୍ରଶ୍ନ କରିବାକୁ ଶାସ୍ତ୍ରରେ ମନା କରାଯାଇଛି । ହଜାର ହଜାର ସଂଖ୍ୟାରେ ହିନ୍ଦୁମାନେ ରେଳଯାତ୍ରା ଓ ବିଦେଶ ଯାତ୍ରା ଅବସର ପରି ଘଟଣାରେ ଜାତି ବିଧାନକୁ ଲଂଘନ କରିବା ଅଥଚ ଜୀବନର ଅନ୍ୟାନ୍ୟ କାର୍ଯ୍ୟରେ ଜାତିକୁ ମାନି ଚଳିବା ଘଟଣାରେ ଅନେକ ଅଣହିନ୍ଦୁ ବେଶ୍ ଆମୋଦିତ ହୋଇଥାନ୍ତି । ଏହି ବ୍ୟାପାରର ବ୍ୟାଖ୍ୟାରୁ ହିନ୍ଦୁମାନେ କିପରି ବିଚାର ବୁଦ୍ଧି ପ୍ରୟୋଗ ନକରି ରୂଢ଼ିବାଦୀ ଅଟନ୍ତି ତାହା ଜଣାପଡ଼େ । ମଣିଷ ଜୀବନ ସାଧାରଣତଃ ବିଚାର ପରିବର୍ତ୍ତେ ଅଭ୍ୟାସ ଦ୍ୱାରା ପରିଚାଳିତ । ବିଚାରଶୀଳତା ଦ୍ୱାରା ଯେକୌଣସି ବିଶ୍ୱାସୀ ଓ କାର୍ଯ୍ୟକୁ ସ୍ଥିର ଭାବରେ ପର୍ଯ୍ୟାଲୋଚନା କରିବା ଦ୍ୱାରା ଏ କ୍ଷେତ୍ରରେ କ'ଣ ସମସ୍ୟା ରହିଛି ତାହା ଜଣାପଡ଼ିଥାଏ । ଏହା ସହିତ ଏହାର ଆନୁସଙ୍ଗିକ ପରିଣାମ ଓ ସିଦ୍ଧାନ୍ତ କେତେଦୂର ଯୁକ୍ତିଯୁକ୍ତ ତାହା ସ୍ପଷ୍ଟ ହୋଇଥାଏ । ରେଳଯାତ୍ରା କିମ୍ବା ଅନ୍ୟ ଏକ ଦେଶକୁ ଯିବା ଦ୍ୱାରା ଜଣେ ହିନ୍ଦୁ ସଙ୍କଟର ସମ୍ମୁଖୀନ ହୁଏ । ତାକୁ ଯଦି ପ୍ରଶ୍ନ କରାଯାଏ ଯେ ଯଦି ସେ ସବୁ ସମୟରେ ଜାତିର ବିଧାନକୁ ଗ୍ରହଣ କରୁନାହିଁ ତେବେ କେତେକ କ୍ଷେତ୍ରରେ ଏହା କାହିଁକି କରୁଛି ? ଜଣେ କେତେକ ସମୟରେ ଜାତିକୁ ମାନୁନାହିଁ ଅଥଚ ଅନ୍ୟ ସମୟରେ କାହିଁକି ମାନୁଛି, ଜଣେ ହିନ୍ଦୁ ନିଜକୁ ଏହିପ୍ରଶ୍ନ ପଚାରିବା ଦରକାର । ଜଣେ ହିନ୍ଦୁର ଏପରି ପରସ୍ପର ବିରୋଧୀ ଆଚରଣର ବ୍ୟାଖ୍ୟା ଶାସ୍ତ୍ରରେ ମଧ୍ୟ ଦିଆଯାଇଛି । ଶାସ୍ତ୍ରର ମତାନୁଯାୟୀ ଜଣେ ବ୍ୟକ୍ତି ଯେତେ ଦୂର ସମ୍ଭବ ଜାତି ବ୍ୟବସ୍ଥାକୁ ମାନି ଚଳିବ ଓ ଯେଉଁ କ୍ଷେତ୍ରରେ ଏହାକୁ ସେ ମାନି ପାରୁନାହିଁ ସେ କ୍ଷେତ୍ରରେ ପ୍ରାୟଶ୍ଚିତ କରିବ । ଏହିପରି ପ୍ରାୟଶ୍ଚିତର ବିଧାନ ଆଣି ଶାସ୍ତ୍ରୀୟ ସମାଧାନର ସୂତ୍ରଟି ବତାଇଛି । ଯଦ୍ୱାରା ଜାତି ବ୍ୟବସ୍ଥାକୁ ଜୀବନରେ ଚିରସ୍ଥାୟୀ କରିବାକୁ ଉଦ୍ୟମ କରାଯାଇଛି । ଏତଦ୍‌ବ୍ୟତୀତ ମଣିଷର ବିଚାରଶୀଳ ଚିନ୍ତନକୁ ଚାପି ଦିଆଯାଇଛି, ନ ହେଲେ ହୁଏତ ତର୍କଦ୍ୱାରା ଜାତିଗତ ଭାବନାକୁ ବିନାଶ କରାଯାଇ ପାରିଥାନ୍ତା ।

ବହୁତ ବ୍ୟକ୍ତି ଅତୀତରେ ଜାତି ଓ ଅସ୍ପୃଶ୍ୟତାର ଉଚ୍ଛେଦ ପାଇଁ କାର୍ଯ୍ୟ କରିଛନ୍ତି । ରାମାନୁଜ, କବୀର ଏହି ସଂସ୍କାରକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ଏହି ମହାନ୍ ସଂସ୍କାରକମାନଙ୍କର ଉଦାହରଣ ଦେଇ ଜାତିପ୍ରଥାକୁ ବିଲୋପ କରିବା କ୍ଷେତ୍ରରେ

ସେମାନଙ୍କର ଆଦର୍ଶକୁ ଅନୁସରଣ କରିବାକୁ ହିନ୍ଦୁମାନଙ୍କୁ ଆପଣମାନେ ନିବେଦନ କରିପାରିବେ କି ? ଏକଥା ସତ୍ୟ ଯେ ଶ୍ରୁତି ଓ ସ୍ମୃତି ସହିତ ମନୁ ସଦାଚାରର ମହତ୍ତ୍ୱକୁ ମଧ ସ୍ୱୀକାର କରିଛନ୍ତି । ଏପରି କି ସଦୋଚାରକୁ ଶାସ୍ତ୍ରର ଊର୍ଦ୍ଧ୍ୱରେ ରଖାଯାଇଛି;

ଯଦ୍‌ଯଦାଚର୍ଯ୍ୟତେ ଯେନ ଧର୍ମ୍ୟଂ ବାଽଧର୍ମ୍ୟମେବ ବା ।
ଦେଶସ୍ୟାଚରଣଂ ନିତ୍ୟଂ ଚରିତ୍ରଂ ତଦ୍ଧିକୀର୍ତ୍ତିତମ ।।

ଏହା ଅନୁଯାୟୀ ଶାସ୍ତ୍ରର୍ ଅନୁକୂଳ ହୋଇ ଧର୍ମ ସମ୍ମତ ହୋଇଥାଉ ବା ଶାସ୍ତ୍ରର ବିରୁଦ୍ଧାଚରଣ କରି ଅଧର୍ମ ହୋଇଥାଉ ସଦାଚାରର ଅନୁସରଣ କରିବା ଆବଶ୍ୟକ । କିନ୍ତୁ ସଦାଚାରର ଅର୍ଥ କ'ଣ ?ସଦାଚାରକୁ ଉଚିତ ବା ନୈତିକ କାର୍ଯ୍ୟ ଓ ମହତ ଲୋକଙ୍କର ଉତ୍ତମ ବ୍ୟବହାର ଅର୍ଥରେ କେହି ବୁଝିବା ତ୍ରୁଟିପୂର୍ଣ୍ଣ ଅଟେ । ସଦାଚାର ନୈତିକ ଆଚରଣ ବା ମହତ ଲୋକଙ୍କର ନୀତିପୂର୍ଣ୍ଣ କାର୍ଯ୍ୟକୁ ବୁଝାଏ ନାହିଁ ।ଭଲ ହେଉ ବା ଖରାପ ହେଉ ଏହା ପ୍ରାଚୀନ ପରମ୍ପରାକୁ ହିଁ ବୁଝାଏ । ତଳ ଶ୍ଳୋକରୁ ଏହାର ଅର୍ଥ ସୁସ୍ପଷ୍ଟ ହୋଇପାରିବ–

ଯସ୍ମିନ ଦେଶେ ଯ ଆଚାରଃ ପାରଂପର୍ଯ୍ୟକ୍ରମାଗତଃ ।
ବର୍ଣ୍ଣାନାଂ କିଲସର୍ବେଷାଂ ସ ସଦାଚାର ଉଚ୍ୟତେ ।।

ସଦାଚାର ଦ୍ୱାରା ନୈତିକ କାର୍ଯ୍ୟ ବା ମହତ ବ୍ୟକ୍ତିଙ୍କର ଉଚିତ ବ୍ୟବହାରକୁ କାଳେ କେହି ବୁଝିବ ବା ସେହି ନୈତିକ ଆଚରଣକୁ ଅନୁକରଣ କରିବ ସେଥିପାଇଁ ସ୍ମୃତି ଶାସ୍ତ୍ରରେ ହିନ୍ଦୁମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ ଦିଆଯାଇଛି କି, ଯାହା ଶ୍ରୁତି, ସ୍ମୃତିକୁ ବିରୁଦ୍ଧାଚରଣ କରେ ତାହା ଅନୁକରଣୀୟ ନୁହେଁ । ଏପରିକି ଏହା ଦେବତାର କାର୍ଯ୍ୟ ବା ନୀତିପୂର୍ଣ୍ଣ ହେଲେ ମଧ ଯଦି ଏହା ଶ୍ରୁତି ବିରୋଧୀ, ଏହାକୁ ଅନୁକରଣ କରାଯାଇ ପାରିବ ନାହିଁ । ଏହି ନିର୍ଦ୍ଦେଶ ଆଶ୍ଚର୍ଯ୍ୟଜନକ ଓ ଏପରିକି ଶଠତାପୂର୍ଣ୍ଣ ମନେ ହୋଇପାରେ, କିନ୍ତୁ ଶାସ୍ତ୍ରର ଏହି ବାଣୀ ସତ୍ୟ ଅଟେ । "ନ ଦେବଚରିତଂ ଚରେତ" ବୋଲି ଶାସ୍ତ୍ରରେ ହିନ୍ଦୁମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶନାମା ରହିଛି । ଜଣେ ସଂସ୍କାରକ ପାଇଁ ବିଚାରଶୀଳତା ଓ ନୈତିକତା ହେଉଛି ଦୁଇଟି ଶକ୍ତିଶାଳୀ ଅସ୍ତ୍ର ଯାହାଦ୍ୱାରା ସେ ସମାଜରେ କ୍ରାନ୍ତି ସୃଷ୍ଟି କରିଥାନ୍ତି । କିନ୍ତୁ ତାଙ୍କୁ ଏହି ଦୁଇଟି ଅସ୍ତ୍ର ପୟୋଗ କରିବାରୁ ବଞ୍ଚିତ କରିବା ଅର୍ଥ ସାମାଜିକ କ୍ରାନ୍ତି ପାଇଁ ତାଙ୍କର କାର୍ଯ୍ୟକୁ ପଙ୍ଗୁ କରିଦେବା । ଯଦି ଲୋକମାନେ

ବିଚାରଶୀଳ ଭାବରେ କୌଣସି କଥା ଯୁକ୍ତିଯୁକ୍ତ କି ନୁହଁ ତାହା ସ୍ଥିର କରିବା ପାଇଁ ସ୍ୱାଧୀନ ନୁହନ୍ତି, ତେବେ ଆପଣ ଜାତିପ୍ରଥାକୁ କିପରି ବିନାଶ କରିବେ ? ସେହିପରି ଏହି ବ୍ୟବସ୍ଥା ନୈତିକ ବା ଅନୈତିକ ତାହା ମୂଲ୍ୟାୟନ କରିବାରେ ଯଦି ଲୋକମାନେ ସ୍ୱାଧୀନ ନୁହନ୍ତି ତେବେ ଜାତିପ୍ରଥାକୁ କିପରି ବିଲୋପ କରିହେବ ? ଜାତିପ୍ରଥାର ପ୍ରାଚୀର ଦୁର୍ଭେଦ୍ୟ ଏବଂ ଏହି ପ୍ରାଚୀର ଏପରି ଉପାଦାନରେ ଗଢ଼ା ଯାହାକୁ ବିଚାରଶୀଳ ତର୍କ ବୁଦ୍ଧି ଓ ନୈତିକତାର ଅଗ୍ନି ସ୍ପର୍ଶ କରିପାରିବ ନାହିଁ। ଏହାକୁ ଅଧିକ ସ୍ପଷ୍ଟ ଭାବରେ କହିଲେ ଜାତିର ପ୍ରାଚୀର ଭାବରେ ବ୍ରାହ୍ମଣମାନଙ୍କର ସେନାବାହିନୀ ଏହାକୁ ରକ୍ଷା କରିବାକୁ ଜାଗ୍ରତ ଭାବରେ ଦଣ୍ଡାୟମାନ । ବ୍ରାହ୍ମଣମାନେ ହେଉଛନ୍ତି ବୁଦ୍ଧିଜୀବୀ ଗୋଷ୍ଠୀ ଓ ହିନ୍ଦୁମାନଙ୍କର ପ୍ରତିଭୂ । ସେମାନେ ଯେ ଜାତିକୁ ରକ୍ଷାକରିବା ପାଇଁ ନିୟୋଜିତ ସେନାବାହିନୀ ତାହା ନୁହଁ, ବରଂ ସେମାନେ ଜାତିରୂପକ ମାତୃଭୂମିକୁ ରକ୍ଷା କରିବାକୁ ଉତ୍ସର୍ଗୀକୃତ । ଜାତି ବ୍ୟବସ୍ଥାକୁ ବିଲୋପ କରିବା କାହିଁକି ଅସମ୍ଭବ ବୋଲି ମୁଁ କହିଛି ଆପଣ ଏବେ ତାହା ବୁଝିପାରିବେ । ଏହି କାର୍ଯ୍ୟରେ ସଫଳତା ହାସଲ କରିବା ପାଇଁ ଯୁଗ ବିତିଯାଇପାରେ । ଏହାକୁ ବିନାଶ କରିବା ପାଇଁ ବହୁ ବର୍ଷ ଲାଗିବ କିମ୍ବା ଏହା ଅଳ୍ପ ସମୟ ଭିତରେ ସମ୍ଭବ ହେବ, କିନ୍ତୁ ଆପଣମାନଙ୍କୁ ଏହା ମନେ ରଖିବାକୁ ହେବ ଯେ ଯଦି ଆପଣମାନେ ଏହି ଜାତି ବ୍ୟବସ୍ଥାର ବିଲୋପ ଚାହାନ୍ତି ତେବେ ଆପଣମାନଙ୍କୁ ପ୍ରଥମେ ବେଦ ଓ ଶାସ୍ତ୍ରକୁ ଅଗ୍ନି ସଂଯୋଗ କରିବାକୁ ହେବ, କାରଣ ବେଦ ଓ ଶାସ୍ତ୍ର ବିଚାରଶୀଳ ଚିନ୍ତନକୁ କୌଣସି ସ୍ଥାନ ଦେଇନାହିଁ ଓ ବେଦ ଏବଂ ଶାସ୍ତ୍ରରେ ନୈତିକତାର କୌଣସି ମୂଲ୍ୟ ହିଁ ନାହିଁ । ଶ୍ରୁତି ଓ ସ୍ମୃତିର ଧର୍ମକୁ ନଷ୍ଟ କରିବାକୁ ପଡ଼ିବ । ଏହାବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଏହାହିଁ ହେଉଛି ମୋର ସୁଚିନ୍ତିତ ମତ ।

(୨୩)

## ଧର୍ମର ବିଲୋପ ମାନେ କ'ଣ ?

ଧର୍ମର ବିଲୋପ କହିଲେ ମୁଁ କ'ଣ ବୁଝେ ହୁଏତ ତାହାର ତାତ୍ପର୍ଯ୍ୟ ଅନ୍ୟମାନେ ଠିକ୍ ଭାବେ ଅବଧାରଣା କରିପାରି ନଥିବେ । କେତେକ ଏହାକୁ ଧର୍ମ ବିରୁଦ୍ଧରେ ବିଦ୍ରୋହ ବୋଲି କହି ପାରନ୍ତି କିମ୍ବା କେହି ଏହାକୁ ବିପ୍ଳବାତ୍ମକ ବୋଲି ମନେ କରିପାରନ୍ତି । ସୁତରାଂ ମୋର ମତଟିକୁ ମୁଁ ସ୍ପଷ୍ଟ କରିଦେବାକୁ ଚାହୁଁଛି । ସିଦ୍ଧାନ୍ତ ଓ

ନିୟମ ଭିତରେ ଆପଣମାନେ କୌଣସି ପାର୍ଥକ୍ୟ ଆଣନ୍ତି ନାହିଁ କି ମୁଁ ତାହା କରିପାରିବି ନାହିଁ । କିନ୍ତୁ ଏ ଦୁଇ ପ୍ରତ୍ୟୟକୁ ମୁଁ ପୃଥକ ମନେକରେ । ମୋ ମତରେ ସିଦ୍ଧାନ୍ତ ଓ ନିୟମ ଭିତରେ ରହିଥିବା ପାର୍ଥକ୍ୟ ବାସ୍ତବ ଓ ଗୁରୁତ୍ୱପୂର୍ଣ୍ଣ ଅଟେ । ନିୟମଗୁଡ଼ିକ ବ୍ୟାବହାରିକ ସ୍ତରରେ ପ୍ରୟୋଗ ହୁଏ ଓ କେତେକ ଅଭ୍ୟାସଗତ କାର୍ଯ୍ୟ କରିବାକୁ ପ୍ରାଚୀନ ରୀତି ଅନୁଯାୟୀ ନିର୍ଦ୍ଦେଶ ଦେଇଥାଏ । କିନ୍ତୁ ସିଦ୍ଧାନ୍ତଗୁଡ଼ିକ ବୌଦ୍ଧିକ ସ୍ତରର ଅଟେ ତଥା କୌଣସି ବିଷୟରେ ମୂଲ୍ୟାୟନ କ୍ଷେତ୍ରରେ ସେଗୁଡ଼ିକୁ ଉପଯୋଗୀ ମାନଦଣ୍ଡ ଭାବରେ ନିଆଯାଇଥାଏ । କେଉଁ କାର୍ଯ୍ୟ ପଦ୍ଧତି ଗ୍ରହଣ କରିବାକୁ ହେବ ନିୟମ ତାହାହିଁ ସୂଚାଇଥାଏ । ସିଦ୍ଧାନ୍ତଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ସମ୍ପାଦନ ପାଇଁ ନିର୍ଦ୍ଦେଶ ଦିଏନାହିଁ । ପାକ ଶାସ୍ତ୍ର ଯେଉଁଭଳି ରୋଷେଇର ବିଧିଗୁଡ଼ିକୁ ସୂତ୍ରବଦ୍ଧ କରିଥାଏ, ଧାର୍ମିକ ନିୟମାବଳୀ ସେହିପରି ଆମର ବ୍ୟବହାର ପଦ୍ଧତିକୁ ସୂତ୍ର ଆକାରରେ ନିରୂପିତ କରିଥାଏ । କିନ୍ତୁ ସିଦ୍ଧାନ୍ତ କହିଲେ ଏହା ବୌଦ୍ଧିକ ସ୍ତରରେ (ନ୍ୟାୟ ସଦୃଶ) କେତେକ ମାନଦଣ୍ଡକୁ ସୂଚାଇଥାଏ, ଯାହାକୁ ଅବରୋଧ କରି ବ୍ୟକ୍ତି କୌଣସି ବିଷୟର ମୂଲ୍ୟାୟନ କରିଥାଏ ଓ ଜୀବନର ଲକ୍ଷ୍ୟ ବା ଆଭିମୁଖ୍ୟ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ନିଷ୍ପତ୍ତିକୁ ଆସିଥାଏ । ଏହା ମଣିଷର ବିଚାର ଓ ଚିନ୍ତନ କ୍ଷେତ୍ରରେ ମହତ୍ୱପୂର୍ଣ୍ଣ ଭୂମିକା ନେଇଥାଏ । ନିୟମ ଓ ସିଦ୍ଧାନ୍ତ ଭିତରେ ଏହି ପାର୍ଥକ୍ୟ ଯୋଗୁଁ ସେମାନଙ୍କ ଆଧାର ଉପରେ କରାଯାଉଥିବା କାର୍ଯ୍ୟ ସକଳ ମଧ୍ୟରେ ଗୁଣାତ୍ମକ ପାର୍ଥକ୍ୟ ରହିଥାଏ । ନିୟମ ଅନୁସାରେ କୌଣସି ଭଲ କାର୍ଯ୍ୟ କରିବା ଓ ସିଦ୍ଧାନ୍ତ ଅନୁସାରେ ଭଲ କାର୍ଯ୍ୟ କରିବା ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍ ଅଟେ । କୌଣସି ସିଦ୍ଧାନ୍ତ ଭୁଲ ହୋଇପାରେ କିନ୍ତୁ ଏହା ଅନୁଯାୟୀ କରାଯାଉଥିବା କାର୍ଯ୍ୟ ସଚେତନ ଓ ଉତ୍ତରଦାୟୀ ଭାବରେ କରାଯାଏ । ନିୟମ ଅନୁଯାୟୀ କରାଯାଉଥିବା କାର୍ଯ୍ୟ, ଠିକ୍ ଥିଲେ ମଧ୍ୟ, ଯାନ୍ତିକ ଅଟେ । ଏକ ଧର୍ମୀୟ କାର୍ଯ୍ୟ ଠିକ୍ ନ ହୋଇପାରେ, କିନ୍ତୁ ଏହା ଉତ୍ତରଦାୟୀ ହେବା ଆବଶ୍ୟକ । ଧର୍ମୀୟ କାର୍ଯ୍ୟରେ ଉତ୍ତର ଦାୟିତ୍ୱ ରହିବା ଦ୍ୱାରା ସିଦ୍ଧାନ୍ତ ସହ ଧର୍ମ ସଂଶ୍ଲିଷ୍ଟ ହୋଇଥାଏ । ଧର୍ମ କେବଳ ଗୁଡ଼ିଏ ନିୟମ ମାତ୍ର ନୁହେଁ । ଧର୍ମ ଯେତେବେଳେ କେବଳ କେତେକ ନିୟମ ଭିତରେ ଆବଦ୍ଧ ରହେ, ଏହା ଧର୍ମ ହୋଇ ରହେ ନାହିଁ କାରଣ ଏହାଦ୍ୱାରା ଉତ୍ତରଦାୟିତ୍ୱ ଲୋପ ପାଇଯାଏ । ଉତ୍ତରଦାୟିତ୍ୱ ନ ରହିଲେ ଧର୍ମର ମହତ୍ୱ ନଷ୍ଟ ହୁଏ କାରଣ ଏହା ଏକ ଧର୍ମୀୟ କାର୍ଯ୍ୟର ମୌଳିକ ଭିତ୍ତି ଅଟେ । ହିନ୍ଦୁ ଧର୍ମ କହିଲେ କ'ଣ ବୁଝାଯାଏ ? ଏହା ସିଦ୍ଧାନ୍ତ

ଉପରେ ଆଧାରିତ ନା ନିୟମ ଉପରେ ? ବେଦ ଓ ସ୍ମୃତି ଭିତରେ ଯେଉଁ ହିନ୍ଦୁଧର୍ମ ଦେଖିବାକୁ ମିଳେ ତାହା କେବେଳ ସାମୂହିକ ବଳି, ସାମାଜିକ, ରାଜନୈତିକ ଏବଂ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ନିୟମ ଓ କାନୁନର ମିଶ୍ରଣ ଛଡ଼ା ଅନ୍ୟ କିଛି ନୁହେଁ । ହିନ୍ଦୁମାନେ ଧର୍ମ କହିଲେ ଯାହା ବୁଝନ୍ତି ତାହା କେତେଗୁଡ଼ିଏ ଆଦେଶ ଓ ନିଷେଧ ଜନିତ ନିୟମ ଅଟେ । ଧର୍ମକୁ ଯଦି କେତେକ ଆଧ୍ୟାତ୍ମିକ ସିଦ୍ଧାନ୍ତର ଭିତ୍ତି ଉପରେ ଗ୍ରହଣ କରାଯାଏ, ତେବେ ତାହା ସାର୍ବଜନୀନ ହେବା ସହିତ ସବୁ ଦେଶ ଓ ସବୁ କାଳ ପାଇଁ ପ୍ରଯୁଜ୍ୟ ହୋଇଥାଏ । କିନ୍ତୁ ହିନ୍ଦୁମାନଙ୍କ କ୍ଷେତ୍ରରେ ତାହା ଦେଖିବାକୁ ମିଳେ ନାହିଁ; ଯଦିବା କିଛି ଦେଖିବାକୁ ମିଳେ ତାହା ଜୀବନଚର୍ଯ୍ୟାରେ କୌଣସି ନିର୍ଣ୍ଣାୟକ ଭୂମିକା ନିଏନାହିଁ । ଜଣେ ହିନ୍ଦୁ ପାଇଁ ଧର୍ମର ଅର୍ଥ ହେଉଛି କେତେକ ଆଦେଶ ମାତ୍ର; ଯାହାକି ବେଦ ଓ ସ୍ମୃତିରେ ସ୍ପଷ୍ଟ ଭାବରେ ଉଲ୍ଲେଖ ରହିଛି ଏବଂ ଯାହାକୁ ବ୍ୟାଖ୍ୟାକାରମାନେ ମଧ୍ୟ ଗ୍ରହଣ କରିଛନ୍ତି । ବେଦରେ ଧର୍ମକୁ ଯେଉଁ ଅର୍ଥରେ ବ୍ୟବହାର କରାଯାଇଛି ସେଥିରୁ ଏହା କେତେଗୁଡିଏ ଆଦେଶ ଓ ସଂସ୍କାର ବୋଲି ନିଷ୍ପନ୍ନ ହୁଏ । ଏପରିକି ପୂର୍ବ ମୀମାଂସାରେ ଜୈମିନି ଧର୍ମର ସଂଜ୍ଞା ଦେବାକୁ ଯାଇ କହିଛନ୍ତି "ବାଞ୍ଛିତ ଲକ୍ଷ୍ୟ ବା ପରିଣାମ ପ୍ରାପ୍ତି ଦିଗରେ ବୈଦିକ ଶ୍ଳୋକରେ ବର୍ଣ୍ଣିତ ଅନୁଜ୍ଞା ହିଁ ଧର୍ମ ।'' ସ୍ପଷ୍ଟ ଭାବରେ କହିଲେ ହିନ୍ଦୁମାନେ ଧର୍ମଦ୍ୱାରା କେତେଗୁଡ଼ିଏ ବିଧି ବା ଅତିବେଶୀରେ ଆଇନ ସମ୍ମତ ଶ୍ରେଣୀ-ଆଚରଣ କିମ୍ବା ନୈତିକତାକୁ ହିଁ ବୁଝନ୍ତି । ବିଧି ସମ୍ମତ ଅନୁଜ୍ଞାକୁ ଧର୍ମ ବୋଲି ଗ୍ରହଣ କରିବା ମତ ସହିତ ମୁଁ ଏକମତ ନୁହେଁ । ଏହାର ପ୍ରଧାନ ତ୍ରୁଟି ହେଉଛି ଏଥିରେ କେତେକ ଅନୁଜ୍ଞା ଜନିତ ନିର୍ଦ୍ଦେଶକୁ ଭ୍ରମାତ୍ମକ ଭାବରେ ବ୍ୟାଖ୍ୟା କରି ତାହାକୁ ଧର୍ମ ଭାବରେ ଗ୍ରହଣ କରିବାକୁ କୁହାଯାଇଛି । ଅଧିକନ୍ତୁ ସ୍ୱତନ୍ତ୍ର ଓ ସ୍ୱତଃପ୍ରବୃତ ଭାବରେ ନୈତିକ ଜୀବନଧାରାର ଅନୁଶୀଳନରୁ ଜନଗଣଙ୍କୁ ବଞ୍ଚିତ କରାଯିବା ସହିତ ବାହ୍ୟିକ ଭାବରେ କେତେକ ନିୟମକୁ ଲଦି ଦିଆଯାଇ ତାହାକୁ ଅନ୍ଧାନୁକରଣ କରିବାକୁ ବାଧ୍ୟ କରାଯାଇଛି । ଏଥିରେ ଆଦେଶ ପ୍ରତି ଅନୁରକ୍ତି ପରିବର୍ତ୍ତେ ଅନୁଜ୍ଞାଗୁଡ଼ିକୁ ପାଳନ କରିବାକୁ ହିଁ ଗୁରୁତ୍ୱ ଦିଆଯାଇଛି । ଏହି ଅନୁଜ୍ଞାବିଧିର ସବୁଠାରୁ ମନ୍ଦ ଦିଗଟି ହେଉଛି ଏଥିରେ ନିୟମଗୁଡ଼ିକୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ପ୍ରଯୋଗ ହୋଇପାରିବ ବୋଲି ଗ୍ରହଣ କରାଯାଏ; କିନ୍ତୁ ନିୟମଗୁଡ଼ିକ ସମାନ ନୁହେଁ । ଭିନ୍ନ ଭିନ୍ନ ଶ୍ରେଣୀ ପାଇଁ

ଭିନ୍ନ ଭିନ୍ନ ନିୟମ ରହିଥାଏ ଓ ଏହି ଅସମତାକୁ ଚିରସ୍ଥାୟୀ କରାଯାଏ । ଏହି ନିୟମକୁ ନିର୍ଣ୍ଣାୟକ ଭାବରେ ଅପରିବର୍ତ୍ତନୀୟ ବୋଲି ଗ୍ରହଣ କରାଯାଏ । ସୁଖ, ଶାନ୍ତି, ବ୍ୟକ୍ତିମାନଙ୍କର ଅବସ୍ଥା ଏବଂ ପରିସ୍ଥିତି ଅନୁଯାୟୀ ତଥା ବିଭିନ୍ନ ସମୟରେ ସାମାଜିକ ସ୍ଥିତି ନେଇ ପୃଥକ୍ ହୋଇଥାଏ । ସବୁ ପରିସ୍ଥିତିରେ କେତେକ ଅନୁଜ୍ଞାକୁ ମାନବ ସମାଜ ଉପରେ ଲଦିଦେବା ଦ୍ୱାରା ଓ ସେହି ସବୁ ଆଦେଶ ଓ ନିଷେଧକୁ ଗ୍ରହଣ କରିବା ଦ୍ୱାରା ସମାଜ ପୀଡ଼ିତ ଓ ପଙ୍ଗୁ ହୁଏ ନାହିଁ କି ? ସୁତରାଂ ଏହି ପ୍ରକାରର ଏକ ଧର୍ମକୁ ବିନଷ୍ଟ କରିବା ପାଇଁ କହିବା ଦ୍ୱାରା ମୁଁ କୌଣସି ଦ୍ୱିଧା ଅନୁଭବ କରେନାହିଁ ବା ସେହି ପ୍ରକାର ଏକ ଧର୍ମକୁ ବିଲୋପ କରିବା ପାଇଁ କହିବା କ୍ଷେତ୍ରରେ କୌଣସି ଅଧର୍ମ ହୁଏନାହିଁ । ବାସ୍ତବରେ କେତେଗୁଡ଼ିଏ ନିୟମକୁ ଭ୍ରାନ୍ତ ଭାବରେ ଯେପରି ଧର୍ମ ବୋଲି ହିନ୍ଦୁମାନେ ଗ୍ରହଣ କରିଛନ୍ତି ସେହି ଆବରଣକୁ ନଷ୍ଟ କରିବା ଆପଣମାନଙ୍କର ନୈତିକ ଦାୟିତ୍ୱ ଅଟେ । ଏହା କରିବା ଆପଣମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ବୋଲି ମୁଁ ବିଚାର କରୁଛି । ଯେତେବେଳେ ଆପଣମାନେ ଲୋକମାନଙ୍କ ମନ ଭିତରୁ ଏହି ଭାବନା ଦୂର କରିବେ ଯେ ସେମାନେ ଯାହାକୁ ଧର୍ମ ବୋଲି ବୁଝିଛନ୍ତି ତାହା ଧର୍ମ ନୁହେଁ ବରଂ କେବଳ କେତେଗୁଡ଼ିଏ ପ୍ରଥା, ବିଧାନ ଓ ନିୟମ ମାତ୍ର; ସେତେବେଳେ ଆପଣମାନେ ସେଗୁଡ଼ିକର ପରିବର୍ତ୍ତନ ବା ବିଲୋପ କରିବା ପାଇଁ ସମର୍ଥ ହେବେ । ଯେତେବେଳ ପର୍ଯ୍ୟନ୍ତ ସେଗୁଡ଼ିକୁ ଲୋକମାନେ ଧର୍ମ ବୋଲି ଭାବୁଥିବେ ସେମାନେ ତାହାକୁ ପରିବର୍ତ୍ତନ କରିବାକୁ ଚାହିଁବେ ନାହିଁ, କାରଣ ସାଧାରଣ ଭାବରେ କହିଲେ ଧର୍ମ ପରିବର୍ତ୍ତନର ବସ୍ତୁ ନୁହେଁ । କିନ୍ତୁ ଯେତେବେଳେ ଲୋକମାନେ ବୁଝିବାକୁ ସମର୍ଥ ହେବେ ଯେ ସେମାନେ ଯାହାକୁ ଧର୍ମ ବୋଲି କହୁଛନ୍ତି ତାହା କେବଳ କେତେକ ପ୍ରାଚୀନ ଓ ପ୍ରଚଳିତ ବିଧାନ ମାତ୍ର ସେମାନେ ତାହା ପରିବର୍ତ୍ତନ କରିବାକୁ ସମ୍ମତ ହେବେ । କାରଣ ଲୋକମାନେ ଏହା ଜାଣନ୍ତି ଓ ସ୍ୱୀକାର କରନ୍ତି ଯେ ଆଇନକୁ ପରିବର୍ତ୍ତନ କରାଯାଇପାରେ ।

---

(୨୪)

# ହିନ୍ଦୁଧର୍ମରେ ସଂସ୍କାର

ଅନୁଜ୍ଞା ଓ ନିଷେଧାଜ୍ଞା ଜନିତ ନିୟମ ଉପରେ ଆଧାରିତ ଧର୍ମକୁ ମୁଁ ନିନ୍ଦା କରିବା ଅବସରରେ ଏପରି କେହି ବୁଝିବା ଠିକ୍ ନୁହେଁ ଯେ ଧର୍ମର ଆବଶ୍ୟକତା ନାହିଁ ବୋଲି ମୁଁ ମତ ଦେଉଛି । ଅପରପକ୍ଷରେ ମୁଁ ଶ୍ରୀ ବର୍କଙ୍କ ମତ ସହିତ ଏକମତ ଯେ "ପ୍ରକୃତ ଧର୍ମ ହେଉଛି ସମାଜର ଭିତ୍ତିଭୂମି ଯାହା ଉପରେ କି ସରକାର ପ୍ରତିଷ୍ଠିତ ହୋଇଥାଏ ।" ପରିଣାମତଃ ଜୀବନକୁ ନିୟନ୍ତ୍ରଣ କରୁଥିବା ପ୍ରାଚୀନ ନିୟମଗୁଡ଼ିକୁ ପ୍ରତ୍ୟାଖ୍ୟାନ କରି ତାହା ସ୍ଥାନରେ ସିଦ୍ଧାନ୍ତ ଭିତ୍ତିକ ଧର୍ମକୁ ଗ୍ରହଣ କରିବା ମୋର ମତ ଅଟେ । ସିଦ୍ଧାନ୍ତ ଆଧାରିତ ଧର୍ମଦ୍ୱାରା ଆମର ଜୀବନ ପରିଚାଳିତ ହେବା ଦରକାର, କାରଣ ତାହାହିଁ ହେଉଛି ପ୍ରକୃତ ଧର୍ମ । ମୁଁ ସ୍ଥିର ନିଶ୍ଚିତ ଯେ ଧର୍ମର ସମାଜ ପାଇଁ ଯଥେଷ୍ଟ ଆବଶ୍ୟକତା ରହିଛି, ସୁତରାଂ ପ୍ରଚଳିତ ଧର୍ମରେ କେଉଁ ପ୍ରକାରର ସଂସ୍କାର ଅଣାଯିବା ଆବଶ୍ୟକ ତାହା ଆପଣମାନଙ୍କ ପାଖରେ ମୁଁ ଉପସ୍ଥାପନ କରିବା ଉଚିତ ମନେକରୁଛି । ମୋ ମତରେ ଧର୍ମୀୟ ସଂସ୍କାର ପ୍ରକ୍ରିୟାରେ ନିମ୍ନଲିଖିତ ବିଷୟଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯିବା ଦରକାର ।

(୧) ସମସ୍ତ ହିନ୍ଦୁମାନଙ୍କ ଦ୍ୱାରା ଗ୍ରହଣ ଯୋଗ୍ୟ ଓ ଆଦୃତ ହେବାଭଳି ହିନ୍ଦୁଧର୍ମର ଗୋଟିଏ ଧର୍ମଗ୍ରନ୍ଥ ରହିବା ଆବଶ୍ୟକ । ଏହାର ଅର୍ଥ ହେଉଛି ହିନ୍ଦୁଧର୍ମରେ ଥିବା ଅନ୍ୟାନ୍ୟ ଗ୍ରନ୍ଥ ଯଥା- ବେଦ, ଶାସ୍ତ୍ର, ପୁରାଣ ଇତ୍ୟାଦିକୁ ଯେପରି ପବିତ୍ର ଓ ପ୍ରାମାଣିକ ବୋଲି ଗ୍ରହଣ କରାଯାଉଛି ଆଇନଦ୍ୱାରା ସେ ସବୁକୁ ନିଷେଧ କରାଯିବା ସହ ସେଥିରେ ଥିବା କୌଣସି ମତକୁ, ତାହା ଧର୍ମୀୟ ହେଉ ବା ସାମାଜିକ ହେଉ, ପ୍ରଚାର କରିବା ଆଇନଦ୍ୱାରା ଦଣ୍ଡନୀୟ ହେବା ଆବଶ୍ୟକ ।

(୨) ହିନ୍ଦୁମାନଙ୍କ ମଧ୍ୟରୁ ପୁରୋହିତ ପ୍ରଥା ଲୋପ କରିବା ଯଥାର୍ଥ ହେବ । କିନ୍ତୁ ଏହା ଅସମ୍ଭବ ମନେ ହେଉଥିବାରୁ ପୁରୋହିତ କାର୍ଯ୍ୟ ବଂଶାନୁକ୍ରମିକ ଭାବେ କରିବା ବନ୍ଦ ହେବା ଦରକାର । ପ୍ରତ୍ୟେକ ହିନ୍ଦୁ ପୁରୋହିତ ବା ପୂଜକ ହେବାପାଇଁ ଅଧିକାର ପାଇବା ଆବଶ୍ୟକ । ଆଇନଦ୍ୱାରା ଏହି ବ୍ୟବସ୍ଥା ହେବା ଉଚିତ ଯେ ନିର୍ଦ୍ଦିଷ୍ଟ ଯୋଗ୍ୟତା ନଥାଇ ଓ ଏଥି ସହିତ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ପରୀକ୍ଷାରେ ଉତ୍ତୀର୍ଣ୍ଣ

ହୋଇ ଏକ ପ୍ରମାଣପତ୍ର ନ ପାଇବା ପର୍ଯ୍ୟନ୍ତ କୌଣସି ହିନ୍ଦୁ ପୁରୋହିତ କାର୍ଯ୍ୟ କରିପାରିବେ ନାହିଁ ।

(୩) ପ୍ରମାଣପତ୍ର ନ ପାଇ କେହି ବ୍ୟକ୍ତି ପୁରୋହିତ ହୋଇ କୌଣସି ଧାର୍ମିକ ସଂସ୍କାର କାର୍ଯ୍ୟ ସମ୍ପାଦନ କଲେ ତାହା ଆଇନ ଦ୍ୱାରା ବୈଧ ହେବନାହିଁ ଏବଂ ସେପରି କରିଥିବା ବ୍ୟକ୍ତି ଆଇନ ଦୃଷ୍ଟିରେ ଦଣ୍ଡିତ ହେବା ଚାହି ।

(୪) ଜଣେ ପୁରୋହିତ ରାଜ୍ୟର ଏକ ସେବକ ବା କର୍ମଚାରୀ ଭାବରେ ଗଣ୍ୟ ହେବେ । ଅନ୍ୟ ନାଗରିକଙ୍କ ପରି ରାଜ୍ୟର ଅନୁଶାସନ ତାଙ୍କ ପାଇଁ ପ୍ରୟୋଗ ହେବ । ଏହାବ୍ୟତୀତ ତାଙ୍କର ନୈତିକତା, ବିଶ୍ୱାସ ଓ ପୂଜା ଇତ୍ୟାଦି କ୍ଷେତ୍ରରେ ସେ ଦାୟୀ ରହିବେ ଓ କୌଣସି ନିୟମ ଲଂଘନ କଲେ ଶୃଙ୍ଖଳାଗତ ଦଣ୍ଡବିଧାନର ସମ୍ମୁଖୀନ ହେବେ ।

(୫) ଆବଶ୍ୟକତା ଅନୁଯାୟୀ ଯେପରି ଆଇ.ସି.ଏସ୍. କର୍ମଚାରୀ ନିଯୁକ୍ତ ହେଉଛନ୍ତି ସେପରି ପୁରୋହିତମାନଙ୍କର ସଂଖ୍ୟା ରାଜ୍ୟର ଚାହିଦା ଅନୁସାରେ ସୀମିତ ରହିବ । କେତେକଙ୍କ ପାଇଁ ମୋର ମତ ଅସାଧାରଣ ମନେ ହୋଇପାରେ । କିନ୍ତୁ ଏଥିରେ କୌଣସି ବୈପ୍ଳବିକ ଆଭିମୁଖ୍ୟ ନାହିଁ । ଭାରତବର୍ଷରେ ପ୍ରତ୍ୟେକ ବୃତ୍ତି କ୍ଷେତ୍ରରେ କିଛି ନୀତି ନିୟମ ରହଛି । ଇଂଜିନିୟର, ଡାକ୍ତର, ଓକିଲ ଇତ୍ୟାଦି ନିଜର ବୃତ୍ତି ଅବଲମ୍ବନ କରିବା ପୂର୍ବରୁ ସେମାନେ ସେଥିପାଇଁ ନିର୍ଦ୍ଦିଷ୍ଟ ଯୋଗ୍ୟତା ଲାଭ କରିଥାନ୍ତି । ସେମାନେ ଦେଶର ଦେୱାନୀ ଓ ଫୌଜଦାରୀ ଆଇନ ଦ୍ୱାରା ନିୟନ୍ତ୍ରିତ ହେବା ସହ ସେମାନଙ୍କ ବୃତ୍ତିଗତ ଜୀବନରେ ବୃତ୍ତିଗତ-ନୈତିକତାକୁ ମଧ୍ୟ ମାନି ଚଳିଥାନ୍ତି । କିନ୍ତୁ ପୁରୋହିତ କାର୍ଯ୍ୟ ଏପରି ଏକ ବୃତ୍ତି ଯେଉଁଥିରେ କୌଣସି ଦକ୍ଷତା ଆବଶ୍ୟକ ହୁଏନାହିଁ । ଜଣେ ହିନ୍ଦୁ ପୂଜକଙ୍କର ବୃତ୍ତି କ୍ଷେତ୍ରରେ କୌଣସି ନୈତିକତା ବା ନିୟମର ପ୍ରଶ୍ନ ଉଠେନାହିଁ । ଜଣେ ପୂଜକ ମାନସିକ ସ୍ତରରେ ନିର୍ବୋଧ, ଶାରୀରିକ ସ୍ତରରେ ସିଫିଲିସ ବା ଗନେରିଆ ଭଳି ମାରାତ୍ମକ ରୋଗରେ ଆକ୍ରାନ୍ତ ଓ ନୈତିକ ଦୃଷ୍ଟିରୁ ଅତ୍ୟନ୍ତ ନଷ୍ଟ ସ୍ୱଭାବର ହୋଇପାରନ୍ତି, ତଥାପି ସେ ପୁରୋହିତ ହୋଇପାରିବେ । ସେ ପୂଜା ସଂସ୍କାର କରି ପାରିବେ ଏବଂ ହିନ୍ଦୁମାନଙ୍କର ପବିତ୍ର ପୀଠ ମନ୍ଦିର ଭିତରେ ପ୍ରବେଶ କରି ଦିଅଁଙ୍କର ଆରାଧନା ବି କରିପାରିବେ । ଏହା ହିନ୍ଦୁମାନଙ୍କ ପାଖରେ

ସମ୍ଭବ କାରଣ ପୁରୋହିତ କାର୍ଯ୍ୟ କରିବାକୁ ଜଣେ କେବଳ ଏକ ପୂଜକ ଜାତିରେ ଜନ୍ମ ହୋଇଥିବା ଦରକାର । ସମଗ୍ର ବିଷୟଟି ଏକ ଘୃଣିତ ବ୍ୟବସ୍ଥା ଅଟେ । ଏହାର କାରଣ ହେଉଛି ହିନ୍ଦୁମାନଙ୍କର ପୁରୋହିତ ବର୍ଗ କୌଣସି ବିଧାନ ବା ନୈତିକତା ଦ୍ୱାରା ପରିଚାଳିତ ହୁଅନ୍ତି ନାହିଁ । ସେମାନଙ୍କର କୌଣସି କର୍ତ୍ତବ୍ୟଜନିତ ଉତ୍ତରଦାୟିତ୍ୱ ନାହିଁ । ସେମାନେ କେବଳ ନିଜର ଅଧିକାର ଓ ସୁବିଧା ପାଇଁ ଚିନ୍ତିତ । ଏହି ବ୍ୟବସ୍ଥା ସତେ ଯେପରି ଈଶ୍ୱରଙ୍କ ଦ୍ୱାରା ତାଙ୍କୁ ଦିଆଯାଇଛି ଓ ସେମାନେ ନିଜ କାର୍ଯ୍ୟ କ୍ଷେତ୍ରରେ ଯାହା କିଛି କରିବା ଅଧିକାର ପାଇଛନ୍ତି । ଜନଗଣଙ୍କର ମାନସିକ ଓ ନୈତିକ ସ୍ଖଳନ ଏହାଯୋଗୁଁ ହୋଇଛି । ସୁତରାଂ ମୋର ମତ ହେଉଛି ପୁରୋହିତ ବର୍ଗ ଆବଶ୍ୟକୀୟ ଆଇନ ଦ୍ୱାରା, ଯାହା ମୁଁ ପୂର୍ବରୁ ସୂଚାଇଛି, ନିୟନ୍ତ୍ରିତ ହେବା ଆବଶ୍ୟକ । ଏହାଦ୍ୱାରା ସେମାନେ ଅନ୍ୟାୟ କାର୍ଯ୍ୟ କରିବା ଓ ଲୋକମାନଙ୍କୁ ବିଭ୍ରାନ୍ତ କରିବାରୁ ନିବୃତ୍ତ ରହିପାରିବେ । ଯଦି ପ୍ରତ୍ୟେକ ଜାତିର ହିନ୍ଦୁମାନଙ୍କୁ ପୁରୋହିତ କାର୍ଯ୍ୟ କରିବାର ଅଧିକାର ମିଳିପାରିବ ତେବେ ଏହି ବ୍ୟବସ୍ଥାଟି ଗଣତାନ୍ତ୍ରିକ ରୂପ ଧାରଣ କରିବ । ଫଳରେ ବ୍ରାହ୍ମଣବାଦର ବିଲୋପ ହେବ ଓ ପରିଣାମତଃ ଜାତିପ୍ରଥା ମଧ୍ୟ ବିଲୋପ ହେବ,କାରଣ ଜାତିପ୍ରଥା ବ୍ରାହ୍ମଣବାଦରୁ ହିଁ ସୃଷ୍ଟି ହୋଇଛି । ବିଷରୂପୀ ବ୍ରାହ୍ମଣବାଦ ହିନ୍ଦୁଧର୍ମକୁ କଳୁଷିତ କରିଛି । ହିନ୍ଦୁଧର୍ମକୁ ରକ୍ଷାକରିବାକୁ ହେଲେ ବ୍ରାହ୍ମଣବାଦର ବିନାଶ ଦରକାର । ଏହିପ୍ରକାର ସଂସ୍କାରକୁ କୌଣସି ସ୍ତରରୁ ବିରୋଧ କରାଯିବା ଠିକ୍ ନୁହେଁ । ଏପରିକି ଆର୍ଯ୍ୟ ସମାଜୀମାନେ ଏହାକୁ ସ୍ୱାଗତ କରିବା ଦରକାର । କାରଣ ଏହାଦ୍ୱାରା ସେମାନେ ବିଶ୍ୱାସ କରୁଥିବା ଗୁଣ କର୍ମର ପ୍ରତିଷ୍ଠା ହୋଇପାରିବ ।

ଆପଣମାନେ ଏହା କରିବାକୁ ସମର୍ଥ ହୁଅନ୍ତୁ ବା ନହୁଅନ୍ତୁ ଆପଣଙ୍କର ଧର୍ମକୁ ଏକ ନୂଆ ସୈଦ୍ଧାନ୍ତିକ ଭିତ୍ତି ଦେବା ଉଚିତ । ସେହି ସୈଦ୍ଧାନ୍ତିକ ଭିତ୍ତି ସ୍ୱତନ୍ତ୍ରତା, ସମାନତା ଓ ଭ୍ରାତୃତ୍ୱର ଆଧାର ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ ଯାହାକୁ ସଂକ୍ଷେପରେ ଗଣତନ୍ତ୍ର କୁହାଯାଏ । ମୁଁ ଏ ବିଷୟ ଉପରେ ଅଧିକାରୀ ନୁହେଁ । କିନ୍ତୁ ମୁଁ ଜାଣେ ଯେ ଏହି ଧର୍ମୀୟ ସିଦ୍ଧାନ୍ତ ଯାହା ସ୍ୱତନ୍ତ୍ରତା, ସମାନତା ଓ ଭ୍ରାତୃତ୍ୱର ଆଧାର ଉପରେ ପ୍ରତିଷ୍ଠିତ ହେବ ତାହା କୌଣସି ବିଦେଶରୁ ଆଣିବା ଆବଶ୍ୟକ ନାହିଁ ବରଂ ତାହା ଉପନିଷଦରୁ ମିଳିପାରିବ । ହିନ୍ଦୁଧର୍ମ ଯେଉଁ ଉପାଦାନରେ ଗଢ଼ା ତା'ର ଆମୂଳଚୂଳ

ପରିବର୍ତ୍ତନ ନ ଆଣି ପାରିଲେ ସୁଦ୍ଧା ଏ କ୍ଷେତ୍ରରେ ସାଧାରଣ ପ୍ରଚେଷ୍ଟା ଅନେକ କିଛି ସଫଳତା ଆଣିଦେଇ ପାରିବ । ଏହାଦ୍ୱାରା ଜୀବନ ପ୍ରତି ଥିବା ଦୃଷ୍ଟିଭଙ୍ଗୀରେ ମୌଳିକ ପରିବର୍ତ୍ତନ ହେବ । ଜୀବନର ମୂଲ୍ୟବୋଧ କ୍ଷେତ୍ରରେ ଏହା ଆମୂଳ ପରିବର୍ତ୍ତନ ଆଣିପାରିବ । ମଣିଷ ଓ ବ୍ୟବସ୍ଥା ପ୍ରତି ଥିବା ଦୃଷ୍ଟିକୋଣ ଓ ମନୋଭାବ ସମ୍ପୂର୍ଣ୍ଣ ବଦଳିଯିବ । ତାହାହେଲେ "ଧର୍ମ ପରିବର୍ତ୍ତନ" ହେଲାବୋଲି କୁହାଯିବ । ଯଦି ଆପଣମାନେ ଏହି ଶବ୍ଦଟିର ପ୍ରୟୋଗକୁ ଉଚିତ ମନେକରିବେ ନାହିଁ ତେବେ ମୁଁ କହିବି ଯେ ଏହାଦ୍ୱାରା ଏକ ନୂଆ ଜୀବନର ସଂଚାର ହେବ । କିନ୍ତୁ ଗୋଟିଏ ମୃତ ଶରୀରରେ ନୂଆ ଜୀବନର ସଂଚାର ହୋଇପାରିବ ନାହିଁ । ଏକ ନୂଆ ଶରୀରରେ ହିଁ ନୂଆ ଜୀବନର ଉଦ୍ଭବ ହେବ । ଗୋଟିଏ ନୂତନ ଶରୀର ଆସିବାକୁ ହେଲେ ଜୀର୍ଣ୍ଣ ଶୀର୍ଣ୍ଣ ଶରୀରଟିର ମୃତ୍ୟୁ ହେବା ଆବାଶ୍ୟକ । ତାହାହେଲେ ନୂଆ ଶରୀରରେ ନୂଆ ଜୀବନର ପ୍ରବେଶ ହେବ । ଆହୁରି ସରଳ ଭାବରେ କହିଲେ ପୁରାତନର ମୃତ୍ୟୁ ହେଲେ ନୂତନ ପ୍ରାଣର ସଞ୍ଚାର ଓ ନୂତନ ଅନୁଭୂତିର ସ୍ପନ୍ଦନ ଅନୁଭବ କରିହେବ । ଶାସ୍ତ୍ରର ପ୍ରଭୁତ୍ୱକୁ ପ୍ରତ୍ୟାଖାନ କରି ଶାସ୍ତ୍ର ଆଧାରିତ ଧର୍ମକୁ ବିଲୋପ କରିବା ପାଇଁ ମୁଁ ପୂର୍ବରୁ ଯାହା କହିଛି ତାହା ମୋର ଏହି ମତ ଉପରେ ହିଁ ପର୍ଯ୍ୟବସିତ ।

## (୨୫)

ମୁଁ ଆପଣମାନଙ୍କର ବହୁତ ସମୟ ନେଲିଣି । ମୋର ଭାଷଣକୁ ଏବେ ଶେଷ କରିବା ଆବଶ୍ୟକ । ମୁଁ ଏହିଠାରେ ମୋର ଭାଷଣକୁ ଶେଷ କରିବା ଠିକ୍ ହୋଇଥାନ୍ତା । କିନ୍ତୁ ସମ୍ଭବତଃ ହିନ୍ଦୁମାନଙ୍କର ଏକ ମୁଖ୍ୟ ଓ ମହତ୍ୱପୂର୍ଣ୍ଣ ସମସ୍ୟା ଉପରେ ଏହା ମୋର ହିନ୍ଦୁ ଶ୍ରୋତାମଣ୍ଡଳୀକୁ ଶେଷ ଭାଷଣ ଅଟେ । ସୁତରାଂ ମୁଁ ଶେଷ କରିବା ପୂର୍ବରୁ ଯଦି ହିନ୍ଦୁମାନେ ମୋତେ ଅନୁମତି ଦିଅନ୍ତି ତେବେ ସେମାନଙ୍କର ସମ୍ମୁଖରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ରଖିବାକୁ ଚାହୁଁଛି ଏବଂ ଆଶାକରୁଛି ସେମାନେ ତାହା ଉପରେ ଗମ୍ଭୀରତାର ସହ ବିଚାର କରିବେ ।

ପ୍ରଥମରେ ବିଭିନ୍ନ ସମୂହ ମଧ୍ୟରେ ରହିଥିବା ବିଶ୍ୱାସ, ଅଭ୍ୟାସ, ନୈତିକ ଆଚରଣ, ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଇତ୍ୟାଦି କ୍ଷେତ୍ରରେ ଯେଉଁ ପାର୍ଥକ୍ୟ ରହିଛି ସେ ବିଷୟରେ ନୃତତ୍ତ୍ୱ ବିଜ୍ଞାନୀଙ୍କର ମତକୁ ଶାନ୍ତ ଭାବରେ ଗ୍ରହଣ କରିନେବା ଯଥେଷ୍ଟ

ହେବ ଅଥବା କେଉଁ ପ୍ରକାରର ନୈତିକତା, ବିଶ୍ୱାସ, ଅଭ୍ୟାସ ଓ ଦୃଷ୍ଟିଭଙ୍ଗୀ ପୋଷଣ କରିବାଦ୍ୱାରା ଏକ ଜନ ସମୁଦାୟ ଉନ୍ନତ ହେବା, ପ୍ରଗତି ହାସଲ କରିବା, ଶକ୍ତିଶାଳୀ ହେବା ଓ ପୃଥିବୀରେ ନିଜର ପ୍ରଭୁତ୍ୱ ବିସ୍ତାର କରିବା ସମ୍ଭବ ହେବ – ଏହି ପ୍ରଶ୍ନକୁ ହିନ୍ଦୁମାନେ ବିଚାର କରିବା ଆବଶ୍ୟକ । ଏଠାରେ ଅଧ୍ୟାପକ କାର୍ଭେରଙ୍କରମତ ପ୍ରଣିଧାନ ଯୋଗ୍ୟ । "ଜୀବନ ସଂଗ୍ରାମ କ୍ଷେତ୍ରରେ ଆତ୍ମରକ୍ଷା ପାଇଁ ବା ଅନ୍ୟ ଉପରେ ଆକ୍ରମଣ କରିବା ପାଇଁ ଦାନ୍ତ ଓ ନଖ, ଶିଙ୍ଘ ଓ ଖୁରା, ଥଣ୍ଟ ଓ ପରର ଯେପରି ମହତ୍ୱ ରହିଛି ସେହିପରି ସାମାଜିକ ସ୍ତରରେ ପ୍ରଚଳିତ ଥିବା ନୈତିକ ନିୟମାବଳୀ ଓ ଧର୍ମ ଗୋଷ୍ଠୀ ଜୀବନକୁ ସୁରକ୍ଷା ପ୍ରଦାନ କରିଥାଏ । ଯଦି କୌଣସି ସାମାଜିକ ଗୋଷ୍ଠୀ, ସଂପ୍ରଦାୟ, ଜନଜାତି ବା ରାଷ୍ଟ୍ରରେ ପ୍ରଚଳିତ ଥିବା ନୈତିକ ବ୍ୟବସ୍ଥା ଅବାସ୍ତବ ଓ ଅକାମୀ ହୋଇଥାଏ ଅଥଚ ଉକ୍ତ ସମୂହକୁ ଦୁର୍ବଳ କରି ଚାଲିଥିବା ସତ୍ତ୍ୱେ ଲୋକେ ତାକୁ ଅନୁମୋଦନ କରି ଚାଲିଥାନ୍ତି ଏବଂ ଅନ୍ୟ ପକ୍ଷରେ ସମୂହକୁ ସବଳ ଓ ସଂପ୍ରସାରଣଶୀଳ କରୁଥିବା ବ୍ୟବସ୍ଥାକୁ ଅସ୍ୱୀକାର କରି ଚାଲିଥାନ୍ତି, ତେବେ ସେହି ସମାଜ ପତନୋନ୍ମୁଖୀ ହୋଇ ବିଲୁପ୍ତ ହୋଇଯିବ । ଧର୍ମ ଓ ନୈତିକ ନିୟମାବଳୀରୁ ସୃଷ୍ଟ ଏହି ଅନୁମୋଦନ ଓ ଅସ୍ୱୀକୃତି ସମାଜକୁ ପଙ୍ଗୁ କରିଥାଏ, ଯେପରିକି ଗୋଟିଏ ପଟରେ ଆଦୌ ଡେଣା ନଥାଇ ଅନ୍ୟ ପଟରେ ଦୁଇଟି ଡେଣା ଥିବା ମାଛି ସମୂହ ପଙ୍ଗୁ ହୋଇଥାନ୍ତି । ଅର୍ଥାତ୍ ଗୋଟିଏ ଜାତି ପଙ୍ଗୁ ହେବା ପଶ୍ଚାତରେ ଏହାର ଧର୍ମ ଓ ନୈତିକ ବିଚାରବୋଧ ମୁଖ୍ୟଭୂମିକା ନେଇଥାଏ । ଏହି ସ୍ଥିତିରେ ଭଲ ମନ୍ଦର ବିଚାର ନିରର୍ଥକ ହୋଇଥାଏ । ସୁତରାଂ ଧର୍ମ ଓ ନୈତିକତା ପରିପ୍ରେକ୍ଷୀରେ ଆମର ପସନ୍ଦ ବା ଅପସନ୍ଦ ଗୁରୁତ୍ୱପୂର୍ଣ୍ଣ ନୁହେଁ ।" କୌଣସି ନୈତିକ ବ୍ୟବସ୍ଥାକୁ ଆପଣମାନେ ଆଦୌ ଗ୍ରହଣ କରି ନ ପାରନ୍ତି କିନ୍ତୁ ଏକ ରାଷ୍ଟ୍ରରେ ତାହାର ସାର୍ବିକ ପ୍ରୟୋଗ ଦ୍ୱାରା ସେହି ରାଷ୍ଟ୍ର ସମଗ୍ର ପୃଥିବୀରେ ଶକ୍ତିଶାଳୀ ହୋଇପାରେ । ସେହିପରି ଏକ ବ୍ୟବସ୍ଥାକୁ ନୈତିକ ଓ ନ୍ୟାୟପୂର୍ଣ୍ଣ ବୋଲି ଆପଣମାନେ ସମ୍ପୂର୍ଣ୍ଣ ପସନ୍ଦ କରିପାରନ୍ତି କିନ୍ତୁ ରାଷ୍ଟ୍ରରେ ତାହାର ସାର୍ବିକ ପ୍ରୟୋଗ ଦ୍ୱାରା ରାଷ୍ଟ୍ର ଅନ୍ୟ ରାଷ୍ଟ୍ରମାନଙ୍କ ସହ ପ୍ରତିଯୋଗିତାରେ ନିଜକୁ ଛିଡ଼ା କରାଇବାରେ ସମର୍ଥ ହୋଇ ନପାରେ । ସୁତରାଂ ଆପଣମାନଙ୍କର ଏକ ବ୍ୟବସ୍ଥାକୁ ଅନୁମୋଦନ ବା ପ୍ରଶଂସା ସତ୍ତ୍ୱେ ରାଷ୍ଟ୍ରର ସତ୍ତା ଧ୍ୱଂସ

ହୋଇଯାଇପାରେ । ଏଣୁ ନିଜର ଅସ୍ତିତ୍ୱ ଓ ଜୀବନର ସଫଳତାର ଭିତ୍ତି ଉପରେ ହିନ୍ଦୁମାନେ ନିଜର ଧର୍ମ ଓ ନୈତିକତାର ମୂଲ୍ୟାୟନ କରିବା ଆବଶ୍ୟକ ଅଟେ ।

ଦ୍ୱିତୀୟରେ, ହିନ୍ଦୁମାନେ ସେମାନଙ୍କର ସାମାଜିକ ପରମ୍ପରାର ସବୁକିଛି ସୁରକ୍ଷିତ ରଖିବେ ଅଥବା ଯାହାକିଛି ଉପଯୋଗୀ କେବଳ ତାହାକୁ ମନୋନୀତ କରି ଭବିଷ୍ୟତ ବଂଶଧରମାନଙ୍କୁ ପ୍ରଦାନ କରିବେ ତାହା ବିଚାର କରିବା ଆବଶ୍ୟକ । ଅଧ୍ୟାପକ ଜନ୍ ଡିଓ୍ୱେ (ଯେ କି ମୋର ଶିକ୍ଷକ ଥିଲେ ଓ ଯାହାଙ୍କ ପାଖରେ ମୁଁ କୃତଜ୍ଞ)ଙ୍କର ମତ ପ୍ରଣିଧାନ ଯୋଗ୍ୟ । "ପ୍ରତ୍ୟେକ ସମାଜ ଅତୀତର ଛୋଟ ଛୋଟ ବିଷୟ ବା ଅନାବଶ୍ୟକ ଭାବନା ଓ କ୍ଷୟଶୀଳ ଦୃଷ୍ଟିକୁ ଜାବୁଡ଼ି ଧରିବା ଦ୍ୱାରା ଭାରାକ୍ରାନ୍ତ ହୋଇଥାଏ । ସମାଜ ଯେତିକି ସଚେତନ ହୁଏ ଅନୁଭବ କରେ ଯେ ତା'ର ସକଳ କୀର୍ତ୍ତି ବା ସାଫଲ୍ୟକୁ ସୁରକ୍ଷିତ କରିବା ଆବଶ୍ୟକ ନୁହେଁ, ବରଂ କେବଳ ସେତିକି ସୁରକ୍ଷିତ ରଖିବା ଆବଶ୍ୟକ ଯାହା ଏକ ଉନ୍ନତ ଭବିଷ୍ୟତ ପାଇଁ ଦରକାର ହେବ ।" ଏପରିକି ଅଧ୍ୟାପକ ବର୍କ ଫରାସୀ ରାଷ୍ଟ୍ରବିପ୍ଳବ ଦ୍ୱାରା ହୋଇଥିବା ପରିବର୍ତ୍ତନ ପଶ୍ଚାତରେ ଥିବା ସୈଦ୍ଧାନ୍ତିକ ପ୍ରତିପାଦନର ଗଭୀର ସମାଲୋଚକ ହେଲେ ମଧ ସ୍ୱୀକାର କରିଛନ୍ତି "ପରିବର୍ତ୍ତନର ଉପାୟଗୁଡ଼ିକ ନଥିଲେ କୌଣସି ରାଷ୍ଟ୍ରର ସଂରକ୍ଷଣ ସମ୍ଭବ ନୁହେଁ । ଆବଶ୍ୟକତା ଅନୁସାରେ ପରିବର୍ତ୍ତନ କରି ନପାରିଲେ ମୂଳ ତତ୍ତ୍ୱଟିକୁ ମଧ ହରାଇବାର ବିପଦ ରହିଛି ।" ବର୍କ ଏକ ରାଷ୍ଟ୍ର ପରିପ୍ରେକ୍ଷୀରେ ଯାହା କହିଛନ୍ତି ତାହା ଗୋଟିଏ ସମାଜ ପାଇଁ ମଧ୍ୟ ପ୍ରଯୁଜ୍ୟ ।

ତୃତୀୟରେ, ଅତୀତ ହିଁ ଆମ ଆଦର୍ଶର ମୂଳ ମନ୍ତ୍ର – ଏହି ଭାବନାକୁ ହିନ୍ଦୁମାନଙ୍କୁ ତ୍ୟାଗ କରିବାକୁ ହେବ । ଅତୀତକୁ ପୂଜା କରିବାର କ୍ଷତିକାରକ ପ୍ରଭାବ ସମ୍ବନ୍ଧରେ ଅଧ୍ୟାପକ ଡିଓ୍ୱେଙ୍କର ସୁଚିନ୍ତିତ ବକ୍ତବ୍ୟ ପ୍ରଣିଧାନ ଯୋଗ୍ୟ । ସେ କହିଛନ୍ତି, 'ପ୍ରତ୍ୟେକ ବ୍ୟକ୍ତି ବର୍ତ୍ତମାନକୁ ନେଇ ବଞ୍ଚିଥାଏ । ବର୍ତ୍ତମାନ ଏପରି କିଛି ନୁହଁ ଯାହାକି ଅତୀତ ପରେ ଆସିଥାଏ । ବରଂ ଅତୀତକୁ ପରିତ୍ୟାଗ କରିବା ଦ୍ୱାରା ବର୍ତ୍ତମାନ ସମ୍ଭବ ହୋଇଥାଏ । ଅତୀତରେ ସମସ୍ତ ଘଟଣାକୁ ଅଧ୍ୟୟନ କରିବା ଦ୍ୱାରା ବର୍ତ୍ତମାନକୁ ଯେ ସଠିକ ଭାବରେ ବୁଝି ହୋଇଥାଏ ଏପରି କହିବାର କୌଣସି ଅର୍ଥ ନାହିଁ ।

ଅତୀତ ଓ ଏହାର ପରମ୍ପରା ମଧ୍ୟରୁ ଯାହା ବର୍ତ୍ତମାନ ପାଇଁ ଉପଯୋଗୀ ସେତିକି ଜ୍ଞାନ ଗୁରୁତ୍ୱପୂର୍ଣ୍ଣ ଅଟେ, ଅନ୍ୟଥା ଏହାର କୌଣସି ଗୁରୁତ୍ୱ ନାହିଁ । ଅତୀତର ଅଭିଲେଖ ଏବଂ ତତ୍ତ୍ୱକୁ ବର୍ତ୍ତମାନ ଶିକ୍ଷାର ଉପାଦାନ ଭାବରେ ନେବାଦ୍ୱାରା ଏଥିରେ ଏହି ତ୍ରୁଟି ହୁଏ ଯେ ଏହାଦ୍ୱାରା ଅତୀତ ବର୍ତ୍ତମାନର ପ୍ରତିଦ୍ୱନ୍ଦୀ ହୁଏ ଓ ବର୍ତ୍ତମାନ ଅତୀତର ଅନାବଶ୍ୟକ ଅନୁକରଣ ପାଲଟି ଥାଏ । ଯେଉଁ ସିଦ୍ଧାନ୍ତ ଜୀବନ୍ତ ବର୍ତ୍ତମାନକୁ ତାର ଉଚିତ୍ ମୂଲ୍ୟ ଦିଏନାହିଁ, ତାହା ବର୍ତ୍ତମାନକୁ ମହତ୍ୱହୀନ ଓ ଭବିଷ୍ୟତକୁ ଆଶାଶୂନ୍ୟ କରିପକାଏ । ଏହି ସିଦ୍ଧାନ୍ତ ବିକାଶର ପରିପନ୍ଥୀ ତଥା ଦୃଢ଼ ଜୀବନ ପ୍ରବାହର ପ୍ରତିକୂଳ ।

ଚତୁର୍ଥରେ, କୌଣସି ବିଷୟ ଯେ ଅପରିବର୍ତ୍ତନୀୟ, ଚିରନ୍ତନ ଓ ସନାତନ ନୁହେଁ, ସବୁ କିଛି ଯେ ପରିବର୍ତ୍ତନଶୀଳ ଏହା ବିଚାର କରିବା ପାଇଁ ସମୟ କ'ଣ ହିନ୍ଦୁମାନଙ୍କର ଆସିନାହିଁ ? ବ୍ୟକ୍ତିପାଇଁ ଓ ସମାଜ ପାଇଁ ପରିବର୍ତ୍ତନଶୀଳତା ହେଉଛି ଜୀବନର ଧର୍ମ । ଏକ ପରିବର୍ତ୍ତନଶୀଳ ସମାଜରେ ପ୍ରାଚୀନ ମୂଲ୍ୟବୋଧକୁ ବଦଳାଇବା ପାଇଁ ସତତ ଚେଷ୍ଟା ରହିବା ଆବଶ୍ୟକ । ହିନ୍ଦୁମାନେ ଅନୁଭବ କରିବା ଦରକାର ଯେ, ଲୋକମାନଙ୍କର ଆଚରଣର ମୂଲ୍ୟାୟନ ପାଇଁ ଯଦି ମାନଦଣ୍ଡ ଦରକାର, ତାହାହେଲେ ସେହି ମାନଦଣ୍ଡଗୁଡ଼ିକର ମଧ୍ୟ ସଂଶୋଧନ ହେବା ଉଚିତ ।

(୨୬)

ମୁଁ ଏହା ସ୍ୱୀକାର କରୁଛି ଯେ ମୋର ଏହି ଭାଷଣଟି ସୁଦୀର୍ଘ ହୋଇଛି । ସେହି ତ୍ରୁଟିଟି ଆଲୋଚନାର ବ୍ୟାପକତା ଓ ଗଭୀରତା ଦ୍ୱାରା କେତେଦୂର ପ୍ରଶମିତ ହୋଇଛି ତାହା ଆପଣମାନେ ବିଚାର କରିବେ । ମୁଁ ମୋର ମତକୁ ଆପଣମାନଙ୍କ ପାଖରେ ଯେତେଦୂର ସମ୍ଭବ ସ୍ପଷ୍ଟ ଭାବରେ ବ୍ୟକ୍ତ କରିଛି ବୋଲି ଭାବୁଛି । ମୋର ଏ କ୍ଷେତ୍ରରେ ଆପଣମାନଙ୍କୁ କିଛି ପରାମର୍ଶ ଦେବା ଧୃଷ୍ଟତା ହେବ । କିନ୍ତୁ ଏତିକି ନିବେଦନ କରିବି ଯେ ଏହି ସମସ୍ୟା ଓ ଆପଣମାନଙ୍କର ଭବିଷ୍ୟତ ଉପରେ ଆପଣମାନେ ଗଭୀର ଚିନ୍ତା କରିବା ଦରକାର । ଯଦି ଆପଣମାନେ ମୋତେ ଅନୁମତି ଦେବେ ମୁଁ କହିବି ଏହି ମତଗୁଡ଼ିକ ଏପରି ଜଣେ ବ୍ୟକ୍ତିର ଯାହାର କୌଣସି

ରାଜନୈତିକ କ୍ଷମତା ନାହିଁ ବା ଯିଏ କୌଣସି ମହାନ ବ୍ୟକ୍ତିଙ୍କର ପ୍ରଶଂସକ ନୁହେଁ । ଏହି ବିଚାର ସେହି ବ୍ୟକ୍ତିର ଯେ ଜୀବନ ସାରା ଅସହାୟ ଓ ଦଳିତ ଲୋକଙ୍କର ମୁକ୍ତି ପାଇଁ ଅବିରତ ସଂଗ୍ରାମ କରି ଆସିଛି ଓ ଯାହାର ପ୍ରତିଦାନ ସ୍ୱରୂପ ସେ ଜାତୀୟ ସମ୍ବାଦପତ୍ର ଓ ଜାତୀୟ ସ୍ତରର ନେତାମାନଙ୍କଠାରୁ ସର୍ବଦା ଗାଳି ଓ ମିଥ୍ୟା ଅପବାଦ ହିଁ ପାଇଛି । ଏହାର କାରଣ ଅନ୍ୟ କିଛି ନୁହେଁ କେବଳ ଏଥିପାଇଁ ଯେ ମୁଁ କୌଣସି ଚମତ୍କାରିତା ହାସଲ ପାଇଁ, ମୁଁ ଏହାକୁ ହାତ ସଫାଇ କହୁନାହିଁ, ସେମାନଙ୍କ ସହ ସହଯୋଗ କରିନାହିଁ ଯଦ୍ୱାରା ଅତ୍ୟାଚାରୀମାନଙ୍କ ପ୍ରଭୁତ୍ୱ ଦ୍ୱାରା ଦଳିତମାନଙ୍କର ସ୍ୱାଧୀନତା ମିଳିବ ଓ ଧନୀମାନଙ୍କର ଅର୍ଥରେ ଗରିବମାନଙ୍କର ଉନ୍ନତି ହେବ । ମୁଁ ଯାହା କିଛି କହିଛି ତାହା ମୋର ବିଚାରକୁ ସ୍ପଷ୍ଟ କରିବାରେ ହୁଏତ ଯଥେଷ୍ଟ ନୁହେଁ । ସେହିପରି ଏହା ଆପଣମାନଙ୍କର ମତକୁ ଯେ ପରିବର୍ତ୍ତନ କରିବ ତାହା ମୁଁ ଭାବୁନାହିଁ । ଆପଣମାନଙ୍କର ମତ ପରିବର୍ତ୍ତନ ହେବ କି ନାହିଁ ଏହି ଦାୟିତ୍ୱ ସମ୍ପୂର୍ଣ୍ଣ ରୂପେ ଆପଣଙ୍କର । ମୋ ପନ୍ଥାରେ ନହେଲେ ମଧ୍ୟ ଆପଣମାନେ ନିଜସ୍ୱ ଶୈଳୀରେ ଜାତିପ୍ରଥାକୁ ବିଲୋପ କରିବାକୁ ପ୍ରୟାସ କରିବା ଆବଶ୍ୟକ । କିନ୍ତୁ ମୁଁ ଦୁଃଖିତ ଯେ ମୁଁ ଆପଣମାନଙ୍କ ସହିତ ରହି ଆପଣମାନଙ୍କର ପ୍ରୟାସରେ ସହଯୋଗ କରିପାରିବି ନାହିଁ । ମୁଁ ଧର୍ମ ପରିବର୍ତ୍ତନ କରିବା ପାଇଁ ନିଷ୍ପତ୍ତି କରିସାରିଛି । ମୁଁ କାହିଁକି ଏହା କରିବାକୁ ଯାଉଛି ତାହାର କାରଣ ଏଠାରେ ବ୍ୟକ୍ତ କରିବାର ଆବଶ୍ୟକତା ନାହିଁ । ଯଦିବି ମୁଁ ଆପଣମାନଙ୍କର ଖୁଆଡ଼ ଭିତରୁ ଚାଲିଯିବି ତଥାପି ମୁଁ ସକ୍ରିୟ ଭାବରେ ଓ ସହାନୁଭୂତିର ସହ ଆପଣମାନଙ୍କର ଆନ୍ଦୋଳନକୁ ଲକ୍ଷ୍ୟ କରିବି ଓ ଆପଣମାନେ ଯେତେବେଳେ ଚାହିଁବେ ମୋର ସହଯୋଗ ପାଇପାରିବେ । ଆପଣମାନଙ୍କର ଏହି ପ୍ରୟାସ ଏକ ଜାତୀୟ ଲକ୍ଷ୍ୟ ପାଇଁ ଅଭିପ୍ରେତ । ଜାତି ହିନ୍ଦୁମାନଙ୍କର ଯେ ଶ୍ୱାସବାୟୁ ବା ପ୍ରାଣ ଏହା ନିଃସନ୍ଦେହ । କିନ୍ତୁ ହିନ୍ଦୁମାନେ ନିଜର ଏହି ଶ୍ୱାସକ୍ରିୟା ଦ୍ୱାରା ସମଗ୍ର ବାତାବରଣଟିକୁ ଦୂଷିତ କରିଛନ୍ତି ଓ ସେଥିରେ, ଶିଖ, ମୁସଲମାନ ଏବଂ ଖ୍ରୀଷ୍ଟିୟାନ ସମସ୍ତେ ଆକ୍ରାନ୍ତ ହୋଇଛନ୍ତି । ଫଳରେ ଜାତି ବ୍ୟବସ୍ଥା ଦ୍ୱାରା ପୀଡ଼ିତ ହୋଇଥିବା ଶିଖ୍, ମୁସଲମାନ ଓ ଖ୍ରୀଷ୍ଟିୟାନ ସବୁ ଲୋକଙ୍କର ସହଯୋଗ ଆପଣମାନେ ଲାଭ କରିପାରିବେ । ଅନ୍ୟ ରାଷ୍ଟ୍ରୀୟ ଲକ୍ଷ୍ୟ ଯଥା ସ୍ୱାଧୀନତାଠାରୁ ଆପଣମାନଙ୍କର କାର୍ଯ୍ୟ

ଅଧିକ କଠିନ । ସ୍ୱାଧୀନତା ପାଇଁ ଆନ୍ଦୋଳନ ବେଳେ ଆପଣ ସମଗ୍ର ଦେଶର ସମର୍ଥନରେ ସଂଗ୍ରାମ କରୁଛନ୍ତି । କିନ୍ତୁ ଜାତି ପ୍ରଥା ବିରୁଦ୍ଧରେ ସଂଗ୍ରାମ ବେଳେ ଆପଣଙ୍କୁ ସମଗ୍ର ଦେଶ ବିରୁଦ୍ଧରେ ଓ ନିଜ ଦେଶର ଲୋକଙ୍କ ବିରୁଦ୍ଧରେ ଲଢାଇ କରିବାକୁ ହେଉଛି । କିନ୍ତୁ ଏହି ସଂଗ୍ରାମ ସ୍ୱରାଜ ପାଇଁ ସଂଗ୍ରାମ ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ଅଟେ । ସ୍ୱରାଜକୁ ରକ୍ଷାକରିବା ଯେପରି ଗୁରୁତ୍ୱପୂର୍ଣ୍ଣ ସ୍ୱରାଜ ଅଧୀନରେ ହିନ୍ଦୁମାନଙ୍କୁ ରକ୍ଷା କରିବା ତା ଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ । ମୋ ମତରେ ହିନ୍ଦୁ ସମାଜ ଯେତେବେଳେ ଏହି ଜାତିବିହୀନ ସମାଜରେ ପରିଣତ ହେବ ସେତେବେଳେ ଏହା ଏପରି ଶକ୍ତିଲାଭ କରିବ ଯଦ୍ୱାରା ଏହାନିଜକୁ ରକ୍ଷା କରିବାକୁ ସମର୍ଥ ହେବ । ଏହି ଆତ୍ମଶକ୍ତି ବ୍ୟତୀତ ସ୍ୱରାଜ ହିନ୍ଦୁମାନଙ୍କ ପାଇଁ ଦାସତ୍ୱ ପ୍ରତିଷ୍ଠା ଦିଗରେ ଆଉ ଏକ ପାହୁଣ୍ଡ ଆଗକୁ ହେବ । ଆପଣମାନଙ୍କର ସଫଳତା ପାଇଁ ଶୁଭକାମନା ଜଣାଇ ମୁଁ ବିଦାୟ ନେଉଛି ।

## ପରିଶିଷ୍ଟ-୧

## ମହାତ୍ମା ଗାନ୍ଧୀଙ୍କର ଜାତିପ୍ରଥାକୁ ସମର୍ଥନ

("ହରିଜନ"ରେ ପ୍ରକାଶିତ ତାଙ୍କ ପ୍ରବନ୍ଧର ପୁନଃମୁଦ୍ରଣ)

### ଡକ୍ଟର ଆମ୍ବେଦକରଙ୍କ ଅଭିଯୋଗ

### (୧)

ପାଠକମାନେ ମନେ ରଖିଥିବେ ଲାହୋରସ୍ଥିତ ଜାତ-ପାତ-ତୋଡ଼କ ମଣ୍ଡଳରେ ମେ' ମାସରେ ହେବାକୁ ଥିବା ବାର୍ଷିକ ସମ୍ମିଳନୀରେ ଡ. ଆମ୍ବେଦକର ସଭାପତିତ୍ୱ କରିବାର ଥିଲା । ଡ. ଆମ୍ବେଦକରଙ୍କର ଅଭିଭାଷଣଟି ଅଭ୍ୟର୍ଥନା ସମିତି ଦ୍ୱାରା ଗ୍ରହଣଯୋଗ୍ୟ ନ ହେବାରୁ ସମ୍ମିଳନୀକୁ ଶେଷରେ ବାତିଲ୍ କରିଦିଆଗଲା । ଏକ ଅଭ୍ୟର୍ଥନା ସମିତି ମନୋନୀତ କରିଥିବା ଜଣେ ସଭାପତିଙ୍କର ଅଭିଭାଷଣକୁ ଗ୍ରହଣ ନକରିବା ଓ ସମ୍ମିଳନୀ ବାତିଲ କରିବା କେତେଦୂର ଯୁକ୍ତିଯୁକ୍ତ ତାହା ଅନ୍ୟମାନେ ବିଚାର କରିବା ଦରକାର । ସମିତି ଜାତିପ୍ରଥା ଓ ହିନ୍ଦୁମାନଙ୍କର ଧର୍ମଗ୍ରନ୍ଥ ଉପରେ ଡ. ଆମ୍ବେଦକରଙ୍କର ମତ ସହିତ ପରିଚିତ । ଡ. ଆମ୍ବେଦକର ଅସନ୍ଦିଗ୍ଧ ଭାବରେ ହିନ୍ଦୁ

ଧର୍ମ ପରିତ୍ୟାଗ କରିବାକୁ ସ୍ଥିର କରିଥିବା କଥା ମଧ୍ୟ ସେମାନେ ଜାଣନ୍ତି । ଏଣୁ ଡ. ଆମ୍ବେଦକର ଯେଉଁ ପ୍ରକାରର ଅଭିଭାଷଣ ପ୍ରସ୍ତୁତ କରିଛନ୍ତି ତାହାଛଡ଼ା ତାଙ୍କଠାରୁ ଅନ୍ୟ କିଛି ଆଶା କରାଯିବା ଠିକ୍ ନୁହେଁ । ସମିତି ଜନସାଧାରଣଙ୍କୁ ଜଣେ ବ୍ୟକ୍ତିଙ୍କର ମୌଳିକ ଚିନ୍ତା ସମ୍ବଳିତ ଭାଷଣ ଶୁଣିବାର ସୁଯୋଗରୁ ବଞ୍ଚିତ କରିଛି ଯେ କି ନିଜର ଦକ୍ଷତା ବଳରେ ସମାଜରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ଭବିଷ୍ୟତରେ ସେ ଯେଉଁ ଧର୍ମକୁ ଯାଆନ୍ତୁ ନା କାହିଁକି ସେ ତାଙ୍କର ବ୍ୟକ୍ତିତ୍ୱକୁ ଜନଗଣଙ୍କ ଦ୍ୱାରା ବିସ୍ମୃତ ହେବାକୁ ଦେବେନାହିଁ ।

ଡ. ଆମ୍ବେଦକର ଅଭ୍ୟର୍ଥନା ସମିତି ସହ ହୋଇଥିବା ଘଟଣାରେ ପରାଜୟ ସ୍ୱୀକାର କରିନାହାନ୍ତି । ସେ ତାଙ୍କର ଭାଷଣକୁ ପ୍ରଦାନ କରିପାରି ନଥିଲେ ମଧ୍ୟ ଏହାକୁ ନିଜ ଖର୍ଚ୍ଚରେ ଛପାଇ ପ୍ରକାଶ କରିଛନ୍ତି । ସେ ଏହାର ମୂଲ୍ୟ ଆଠଅଣା ରଖିଛନ୍ତି । ସେ ବହିଟିର ଦାମ୍ କମାଇ ଦୁଇ ଅଣା ବା ଚାରିଅଣା ରଖିବା ପାଇଁ ମୁଁ ତାଙ୍କୁ ପରାମର୍ଶ ଦେଉଛି ।

କୌଣସି ସଂସ୍କାରକ ତାଙ୍କର ଭାଷଣକୁ ଅଗ୍ରାହ୍ୟ ପରିପାରିବ ନାହିଁ । ଏପରିକି ରକ୍ଷଣଶୀଳ ଲୋକମାନେ ମଧ୍ୟ ଏହାକୁ ପଢ଼ିବାଦ୍ୱାରା ଉପକୃତ ହେବେ । ଏହା କହିବାର ଅର୍ଥ ନୁହେଁ ଯେ ତାଙ୍କ ଭାଷଣ ବିରୁଦ୍ଧରେ କୌଣସି ସମାଲୋଚନା କରାଯାଇ ପାରିବ ନାହିଁ । ବରଂ ଏହାକୁ ପଢ଼ିବା ଦ୍ୱାରା ଏହାକୁ ଗଭୀର ଭାବରେ ସମାଲୋଚନା କରିହେବ । ଡ. ଆମ୍ବେଦକର ହିନ୍ଦୁଧର୍ମ ପ୍ରତି ଏକ ଆହ୍ୱାନ । ସେ ହିନ୍ଦୁ ଭାବରେ ଗଢ଼ି ଉଠିଛନ୍ତି, ଜଣେ ହିନ୍ଦୁ ରାଜାଙ୍କ ସାହାଯ୍ୟଦ୍ୱାରା ଉଚ୍ଚ ଶିକ୍ଷା ପ୍ରାପ୍ତ ହୋଇଛନ୍ତି । କିନ୍ତୁ ତାଙ୍କ ପ୍ରତି ଓ ତାଙ୍କ ଜାତିର ଲୋକମାନଙ୍କ ପ୍ରତି ତଥାକଥିତ ସବର୍ଣ୍ଣ ହିନ୍ଦୁମାନଙ୍କର ବ୍ୟବହାର ଏପରି ହୋଇଛି ଯେଉଁଥିରେ ସେ କ୍ଷୁବ୍ଧ ହୋଇ ସବର୍ଣ୍ଣ ହିନ୍ଦୁମାନଙ୍କ ସହ ସମ୍ପର୍କ ତୁଟାଇ ଦେବା ସହିତ ସେ ନିଜର ପରମ୍ପରାଗତ ଧର୍ମକୁ ପରିତ୍ୟାଗ କରିବାକୁ ନିଷ୍ପତ୍ତି କରିଛନ୍ତି । କେତେକ ହିନ୍ଦୁଙ୍କର ଦୁର୍ବ୍ୟବହାରରେ ଅତିଷ୍ଠ ହୋଇ ସେ ହିନ୍ଦୁଧର୍ମ ପ୍ରତି ତାଙ୍କର ଅସନ୍ତୋଷ ବ୍ୟକ୍ତ କରିଛନ୍ତି ।

---

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜଣେ ଗୋଟିଏ ବ୍ୟବସ୍ଥା ବା ଗୋଟିଏ ଅନୁଷ୍ଠାନର ମୂଲ୍ୟାୟନ ତା'ର ପ୍ରତିନିଧିମାନଙ୍କର ଆଚରଣରୁ କରିଥାଏ । ଆଉ ଅଧିକ କ'ଣ କୁହାଯିବ ! ଆମ୍ବେଦକର ଅନୁଭବ କରିଛନ୍ତି ଯେ ଅଧିକାଂଶ ସବର୍ଣ୍ଣ ହିନ୍ଦୁ ନିଜ ଧର୍ମର ଅଗଣିତ ବ୍ୟକ୍ତି ଯାହାଙ୍କୁ ସେମାନେ ଅସ୍ପୃଶ୍ୟ କହୁଛନ୍ତି ସେମାନଙ୍କ ପ୍ରତି ଅତି ଅମାନବିକ ବ୍ୟବହାର ପ୍ରଦର୍ଶନ କରୁଛନ୍ତି । ଏପରି ବ୍ୟବହାର ପ୍ରଦର୍ଶନ କ୍ଷେତ୍ରରେ ସେମାନଙ୍କର ଧର୍ମଶାସ୍ତ୍ରର ସ୍ୱୀକୃତି ରହିଛି ଓ ଆମ୍ବେଦକର ଏ କ୍ଷେତ୍ରରେ ଅନୁଧ୍ୟାନ କରି ହିନ୍ଦୁଧର୍ମ ଶାସ୍ତ୍ରରେ ଅସ୍ପୃଶ୍ୟତା ଓ ତତ୍‌ଜନିତ ଦୃଷ୍ଟିଭଙ୍ଗୀର ବହୁ ପ୍ରମାଣ ପାଇଛନ୍ତି । ତାଙ୍କର ଅଭିଯୋଗକୁ ପ୍ରମାଣ କରିବା ପାଇଁ ସେ ଶାସ୍ତ୍ରମାନଙ୍କରୁ ଅନେକ ପଂକ୍ତି ଓ ଶ୍ଳୋକ ଉଦ୍ଧାର କରିଛନ୍ତି । ହିନ୍ଦୁମାନଙ୍କର ଅମାନବିକ ବ୍ୟବହାର, ତଥା ସେପରି ଲଜ୍ଜାଜନକ ବ୍ୟବହାରକୁ ଦୁଷ୍କୃତକାରୀମାନଙ୍କ ସମର୍ଥନ ଏବଂ ଏ କ୍ଷେତ୍ରରେ ରହିଥିବା ଶାସ୍ତ୍ରୀୟ ଅନୁମୋଦନକୁ ଆଧାର କରି ସେ ତାଙ୍କର ଅଭିଯୋଗ ଆଣିଛନ୍ତି ।

କୌଣସି ହିନ୍ଦୁ ଯେ ନିଜ ଧର୍ମକୁ ଜୀବନଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ମନେକରେ ଡ. ଆମ୍ବେଦକରଙ୍କ ଅଭିଯୋଗର ଗୁରୁତ୍ୱକୁ ନ୍ୟୁନ କରିପାରିବ ନାହିଁ । ସେ କେବଳ ଏକମାତ୍ର ବ୍ୟକ୍ତି ନୁହଁନ୍ତି ଯେ କି ଏପରି ଅସନ୍ତୋଷ ବ୍ୟକ୍ତ କରୁଛନ୍ତି । ବରଂ ସେ ହେଉଛନ୍ତି ସମସ୍ତଙ୍କଠାରୁ ଅଧିକ ଯୋଗ୍ୟ ଓ ଜଣେ ସାଲିସହୀନ ବ୍ୟକ୍ତି । ଅନ୍ୟାୟକୁ ସହି ସନ୍ତୁଷ୍ଟ ରହିବା ପରି ବ୍ୟକ୍ତି ସେ ନୁହନ୍ତି । ଈଶ୍ୱରଙ୍କୁ ଧନ୍ୟବାଦ ସମସ୍ତ ଅଗ୍ରଗାମୀ ନେତାମାନଙ୍କ ମଧ୍ୟରେ ସେ ଏକା ଓ ଗୋଟିଏ କ୍ଷୁଦ୍ର ଗୋଷ୍ଠୀର ପ୍ରତିନିଧି । କିନ୍ତୁ ସେ ଯାହା କହୁଛନ୍ତି ଦଳିତ ଶ୍ରେଣୀର ବହୁନେତା ଆବେଗପୂର୍ଣ୍ଣ ଭାବରେ ମଧ୍ୟ ସେକଥା କହୁଛନ୍ତି । ଉଦାହରଣ ସ୍ୱରୂପ ରାଓ ବାହାଦୂର, ଏମ୍.ସି. ରାଜା, ଦେୱାନ ବାହାଦୂର, ଶ୍ରୀନିବାସନ୍ ହିନ୍ଦୁଧର୍ମକୁ ପରିତ୍ୟାଗ କରିବେ ବୋଲି ଯେ ଧମକ ଦେଇଛନ୍ତି ତା ନୁହଁ, ସେମାନେ ଅଗଣିତ ହରିଜନମାନଙ୍କ ପ୍ରତି ହେଉଥିବା ଲଜ୍ଜାଜନକ ଅତ୍ୟାଚାରର କ୍ଷତିପୂରଣ ପାଇଁ ଡ. ଆମ୍ବେଦକରଙ୍କର ବିଚାରକୁ ସମର୍ଥନ କରୁଛନ୍ତି ।

ଯଦି ବି ବହୁ ନେତା ହିନ୍ଦୁଧର୍ମ ଭିତରେ ରହିଛନ୍ତି ଏଥିରୁ ଏହା ବୁଝିବା ଠିକ୍ ନୁହେଁ ଯେ ଆମ୍ବେଦକରଙ୍କର ମତର କୌଣସି ଗୁରୁତ୍ୱ ନାହିଁ । ବରଂ ସବର୍ଣ୍ଣମାନେ ସେମାନଙ୍କର ବିଶ୍ୱାସ ଓ ବ୍ୟବହାରକୁ ସଂଶୋଧନ କରିବା ଆବଶ୍ୟକ । ଅଧିକନ୍ତୁ

ଯେଉଁ ସବର୍ଣ୍ଣମାନେ ବିଜ୍ଞ ଓ ପ୍ରଭାବଶାଳୀ ସେମାନେ ଧର୍ମଗ୍ରନ୍ଥର ଯଥାର୍ଥ ଓ ନିର୍ଭରଯୋଗ୍ୟ ବ୍ୟାଖ୍ୟା କରିବା ଦରକାର । ଡ. ଆମ୍ବେଦକରଙ୍କର ଅଭିଯୋଗ ପରିପ୍ରେକ୍ଷୀରେ ଯେଉଁ ପ୍ରଶ୍ନଗୁଡ଼ିକ ଉଠୁଛି ତାହା ହେଲା –

(୧) ଧର୍ମଗ୍ରନ୍ଥଗୁଡ଼ିକ କ'ଣ ?

(୨) ସମସ୍ତ ମୁଦ୍ରିତ ଧର୍ମ ପୁସ୍ତକକୁ ଧର୍ମଗ୍ରନ୍ଥର ଅବିଚ୍ଛେଦ୍ୟ ଅଂଶ ଭାବରେ ଗ୍ରହଣ କରିଯିବ ନା ସେମାନଙ୍କ ଭିତରୁ ଅସ୍ୱୀକୃତ ଓ ପ୍ରକ୍ଷିପ୍ତ ଅଂଶକୁ ବାଦ ଦିଆଯିବ ?

(୩) ଅସ୍ପୃଶ୍ୟତା, ଜାତିପ୍ରଥା, ସାମାଜିକ ସ୍ତରରେ ସମାନତା, ଆନ୍ତର୍ଜାତି ଭୋଜନ ଓ ଆନ୍ତର୍ଜାତ ବିବାହ ଇତ୍ୟାଦି ପ୍ରଶ୍ନଗୁଡ଼ିକ ଉପରେ ସର୍ବମାନ୍ୟ ଓ ପବିତ୍ର ଧର୍ମଗ୍ରନ୍ଥଗୁଡ଼ିକର ଉତ୍ତର କ'ଣ ?

(ଡ. ଆମ୍ବେଦକର ତାଙ୍କର ଅଭିଭାଷଣରେ ଏହି ସମସ୍ତ ପ୍ରଶ୍ନର ଆଲୋଚନା କରିଛନ୍ତି ।)

ଏହି ସମସ୍ତ ପ୍ରଶ୍ନଗୁଡ଼ିକ ଉପରେ ମୋର ଉତ୍ତର ଓ ଡ. ଆମ୍ବେଦକରଙ୍କର ବକ୍ତବ୍ୟରେ କହିଥିବା କେତେକ ତ୍ରୁଟି ସମ୍ପର୍କରେ ଆଗାମୀ ସଂଖ୍ୟାରେ ମୋର ମତ ବ୍ୟକ୍ତ କରିବି ।

(ହରିଜନ, ଜୁଲାଇ ୧୧.୧୯୩୬)

## (୨)

ବେଦ, ଉପନିଷଦ, ସ୍ମୃତି ଓ ପୁରାଣ ଯଥା ରାମାୟଣ ଓ ମହାଭାରତ ହିନ୍ଦୁ ଧର୍ମଗ୍ରନ୍ଥ ଭିତରେ ଅନ୍ତର୍ଭୁକ୍ତ । ଏହି ସଂଖ୍ୟା ଏତିକିରେ ସୀମିତ ନୁହେଁ । ପ୍ରତ୍ୟେକ ଯୁଗରେ ଓ ପ୍ରତ୍ୟେକ ପୀଢ଼ିରେ ନୂଆ ଗ୍ରନ୍ଥ ମଧ୍ୟ ଲେଖାଯାଇଛି । ଏଥିରୁ ଏହା ଭାବିବା ଠିକ୍ ନୁହେଁ ଯେ ଛପା ଯାଇଥିବା ଧର୍ମ ପୁସ୍ତକ କିମ୍ବା ହାତ ଲେଖା ଗ୍ରନ୍ଥ ଧର୍ମଗ୍ରନ୍ଥ ସହ ସଂଶ୍ଳିଷ୍ଟ । ଉଦାହରଣ ସ୍ୱରୂପ ସ୍ମୃତିଗୁଡ଼ିକରେ ଏପରି ଅନେକ କଥା ରହିଛି ଯାହାକୁ ଈଶ୍ୱରଙ୍କର ବାଣୀ ଭାବରେ ନିଆଯାଇ ପାରିବ ନାହିଁ । ସୁତରାଂ ଡ. ଆମ୍ବେଦକର ସ୍ମୃତିଗୁଡ଼ିକରୁ ଯେଉଁସବୁ ଉଦ୍ଧୃତି ଦେଇଛନ୍ତି ସେସବୁର ନିର୍ଭରଯୋଗ୍ୟ ମାନ୍ୟତା ନାହିଁ ।

ବାସ୍ତବ ଧର୍ମଗ୍ରନ୍ଥ କେବଳ ବିବିଧ ଓ ଶାଶ୍ୱତ ସତ୍ୟକୁ ପ୍ରକାଶ କରେ ଏବଂ ସମସ୍ତ ବିଚାରଶୀଳ ବ୍ୟକ୍ତିମାନଙ୍କର ହୃଦୟକୁ ସ୍ପର୍ଶ କରେ । ଯାହାକୁ ବିଚାରଶୀଳତା ଦ୍ୱାରା ପ୍ରମାଣ କରିହେବ ନାହିଁ କିମ୍ବା ଆଧାତ୍ମିକ ସ୍ତରରେ ଅନୁଭବ କରାଯାଇ ପାରିବ ନାହିଁ ତାହାକୁ ଈଶ୍ୱରଙ୍କର ବାଣୀ ବୋଲି ନିଆଯାଇ ପାରିବ ନାହିଁ । ଯଦି ବି ଆପଣଙ୍କ ପାଖରେ କୌଣସି ପବିତ୍ର ଧର୍ମଗ୍ରନ୍ଥ ଥାଏ ତେବେ ତାହାର ଯଥାର୍ଥ ବ୍ୟାଖ୍ୟା ଆବଶ୍ୟକ । ଉତ୍ତମ ବ୍ୟାଖ୍ୟାକାର କିଏ ହୋଇପାରିବ ? କେବଳ ବିଦ୍ୱାନ ଲୋକମାନେ ନୁହଁନ୍ତି । ବିଦ୍‌ବତ୍ତା ରହିବା ଆବଶ୍ୟକ, କିନ୍ତୁ ଧର୍ମ କେବଳ ପାଣ୍ଡିତ୍ୟ ଭିତରେ ସୀମିତ ନୁହେଁ । ସନ୍ଥ ଓ ଦ୍ରଷ୍ଟାମାନଙ୍କର ଅନୁଭୂତି, ଜୀବନଧାରା ଓ ଉପଦେଶ ମାଧମରେ ଧର୍ମ ପ୍ରକାଶିତ ହୋଇଥାଏ । ଧର୍ମ ଗ୍ରନ୍ଥମାନଙ୍କର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାକାରମାନେ ବିସ୍ମୃତ ହୋଇଯାଇ ପାରନ୍ତି, କିନ୍ତୁ ସନ୍ଥ ଓ ଋଷିମାନଙ୍କର ଦିବ୍ୟାନୁଭୂତି ସର୍ବଦା ଜୀବିତ ରହିବ ଓ ତାହା ସବୁ ଯୁଗପାଇଁ ପ୍ରେରଣାର ଉତ୍ସ ହୋଇ ପଥ ଦେଖାଇବ ।

ଜାତିର ଧର୍ମ ସହିତ କୌଣସି ସମ୍ବନ୍ଧ ନାହିଁ । ଜାତି ବ୍ୟବସ୍ଥା ହେଉଛି ଏକ ପରମ୍ପରା, ଯାହାର ଉତ୍ପତ୍ତି ସମ୍ପର୍କରେ ମୁଁ ଜାଣିନାହିଁ । ମୋର ଆଧାତ୍ମିକ ଅନୁସନ୍ଧିତ୍ସା ପାଇଁ ଏହା ଜାଣିବାକୁ ମୁଁ ଇଚ୍ଛା ମଧ୍ୟ କରୁନାହିଁ । ଉଭୟ ଆଧାତ୍ମିକ ଓ ରାଷ୍ଟ୍ରୀୟ ପ୍ରଗତି ପାଇଁ ଏହା ଯେ କ୍ଷତିକାରକ ଏହା ମୁଁ ନିଶ୍ଚିତ ଭାବରେ କହିପାରେ । ବର୍ଣ୍ଣ ଓ ଆଶ୍ରମ ପରି ଅନୁଷ୍ଠାନମାନଙ୍କର ଜାତି ସହିତ କୌଣସି ସମ୍ବନ୍ଧ ହିଁ ନାହିଁ । ବର୍ଣ୍ଣର ବିଧାନ ଆମକୁ ଏହି ଶିକ୍ଷା ଦିଏ ଯେ ପ୍ରତ୍ୟେକ ନିଜ ବଂଶର କୌଳିକ ବୃତ୍ତି ଅନୁଯାୟୀ ନିଜ ଜୀବନର ଆବଶ୍ୟକତା ପୂରଣ କରିବେ । ଏହା ଆମର ଅଧିକାର ପରିବର୍ତ୍ତେ ଆମର କର୍ତ୍ତବ୍ୟକୁ ବ୍ୟାଖ୍ୟା କରିଛି । ଏହା ଆବଶ୍ୟକତା ଅନୁଯାୟୀ ଏପରି ବୃତ୍ତି ସମ୍ପର୍କରେ ଉଲ୍ଲେଖ କରିଛି ଯାହା ମାନବ ଜାତିର କଲ୍ୟାଣ ପାଇଁ ଉଦ୍ଦିଷ୍ଟ, ଅନ୍ୟ କୌଣସି କାରଣ ପାଇଁ ନୁହେଁ । ଏଥିରୁ ଏହା ମଧ ସ୍ପଷ୍ଟ ହେଉଛି ଯେ କୌଣସି ବୃତ୍ତି ଉଚ୍ଚ ବା କୌଣସି ବୃତ୍ତି ନୀଚ ନୁହେଁ । ସମସ୍ତ ବୃତ୍ତି ଉତ୍ତମ, ବିଧିସମ୍ମତ ଓ ସାମାଜିକ ସ୍ତରରେ ସମ୍ପୂର୍ଣ୍ଣ ସମାନ । ଆଧ୍ୟାତ୍ମିକ ଗୁରୁ ବ୍ରାହ୍ମଣଙ୍କର ବୃତ୍ତି ଓ ମେହେନ୍ତରଙ୍କର ବୃତ୍ତି ସମାନ ଅଟେ ଓ ଉଭୟଙ୍କର କାର୍ଯ୍ୟର ସଠିକ୍ ନିର୍ବାହ ଈଶ୍ୱରଙ୍କ ଦୃଷ୍ଟିରେ ସମାନ । ଗୋଟିଏ ସମୟରେ ଏଥିପାଇଁ ସମାନ ପାରିତୋଷିକ ମଧ୍ୟ ମିଳୁଥିଲା । ଉଭୟ ସମାନ ଭାବରେ ନିଜ ଜୀବନର ଆବଶ୍ୟକତା ପୂରଣ କରିବା ପାଇଁ ଅଧିକାର ପାଇଥିଲେ । ଏବେ ବି ଗ୍ରାମମାନଙ୍କରେ ଏହି ସୁବ୍ୟବସ୍ଥିତ ନିୟମର ଝଲକ କେତେକାଂଶରେ ଦେଖିବାକୁ

ମିଳେ । ଛ'ଶହ ଜନସଂଖ୍ୟା ବିଶିଷ୍ଟ ଗ୍ରାମ ସେଗାଁଓରେ ରହିଥିବା ବେଳେ ସେଠାରେ ଥିବା ବ୍ୟବସାୟୀମାନଙ୍କର, ଯେଉଁଥିରେ ବ୍ରାହ୍ମଣମାନେ ମଧ୍ୟ ରହିଥିଲେ, ଉପାର୍ଜନରେ ବିଶେଷ କିଛି ପ୍ରଭେଦ ଥିବା ମୁଁ ଦେଖିନାହିଁ । ଆଜିର କ୍ଷୟଶୀଳ ପରିସ୍ଥିତିରେ ଏପରି ନିଷ୍ପାପର ବ୍ରାହ୍ମଣମାନେ ରହିଥିବା ମୁଁ ଦେଖିଛି ଯେଉଁମାନେ ଭିକ୍ଷା ବୃତ୍ତି କରି ଜୀବନ ଧାରଣ କରିବା ସହିତ ଅନ୍ୟମାନଙ୍କୁ ସେମାନଙ୍କର ଆଧାତ୍ମିକ ଜ୍ଞାନ ମୁକ୍ତ ଭାବରେ ପ୍ରଦାନ କରିଥାନ୍ତି । କେତେକ ବ୍ୟକ୍ତି ବର୍ଣ୍ଣ ବ୍ୟବସ୍ଥାକୁ ଧରି ରଖିଥାନ୍ତି ବା ସମର୍ଥନ କରୁଥାନ୍ତି ଅଥଚ ପ୍ରତି ପଦକ୍ଷେପରେ ଏହାର ଅନ୍ତର୍ନିହିତ ବିଧାନକୁ ଲଂଘନ କରୁଥାନ୍ତି । ସେହିମାନଙ୍କର ବିକୃତ ପ୍ରୟୋଗକୁ ଦେଖି ବର୍ଣ୍ଣ ବ୍ୟବସ୍ଥାର ମୂଲ୍ୟାୟନ କରିବା ତ୍ରୁଟିପୂର୍ଣ୍ଣ ଓ ଅନୁଚିତ ଅଟେ । କୌଣସି ବର୍ଣ୍ଣର ବ୍ୟକ୍ତି ଅନ୍ୟ ବର୍ଣ୍ଣର ଲୋକଙ୍କ ସହିତ ନିଜକୁ ତୁଳନା କରି ନିଜର ସାମାଜିକ ସ୍ତର ଉଚ୍ଚ ବୋଲି ଅହଂକାର ପ୍ରଦର୍ଶନ କରିବା ବର୍ଣ୍ଣ ବ୍ୟବସ୍ଥାର ଉଲ୍ଲଂଘନ ଅଟେ । ବର୍ଣ୍ଣ ବ୍ୟବସ୍ଥାର ବିଧାନ ଭିତରେ ଅସ୍ପୃଶ୍ୟତାର ସ୍ଥାନ ହିଁ ନାହିଁ । (ହିନ୍ଦୁ ଧର୍ମର ସାରତତ୍ତ୍ୱ ଏହାର ଏକେଶ୍ୱରବାଦ, ଈଶ୍ୱର ହିଁ ସତ୍ୟ ଓ ପରିବାରର ମୂଳ ଭିତ୍ତି ଅହିଂସା ଆଦି ନୀତି ଉପରେ ଆଧାରିତ ।)

ହିନ୍ଦୁଧର୍ମ ଉପରେ ମୋର ଏହି ବ୍ୟାଖ୍ୟାନକୁ ଡ. ଆମ୍ବେଦକରଙ୍କ ସହିତ ବହୁଲୋକ ଗ୍ରହଣ କରିବେ ନାହିଁ ଓ ବିବାଦ ଉଠାଇବେ । କିନ୍ତୁ ତାହା ମୋର ବିଚାରକୁ ପ୍ରଭାବିତ କରିବ ନାହିଁ । ମୋର ଏହି ବ୍ୟାଖ୍ୟାର ଆଧାର ଉପରେ ମୁଁ ଗତ ଅର୍ଦ୍ଧ ଶତାବ୍ଦୀ ଧରି ବଞ୍ଚି ରହିବା ସହିତ ଯେତେ ଦୂର ସମ୍ଭବ ତାରି ମୂଲ୍ୟ ଉପରେ ମୋର ଜୀବନକୁ ଶୃଙ୍ଖଳିତ କରିବାକୁ ପ୍ରୟାସ କରିଛି ।

ମୋ ବିଚାରରେ ଡ. ଆମ୍ବେଦକରଙ୍କର ସବୁଠାରୁ ବଡ଼ ତ୍ରୁଟି ହେଉଛି ସେ ତାଙ୍କ ଭାଷଣରେ ଶାସ୍ତ୍ରର ଯେଉଁସବୁ ଉଦ୍ଧୃତି ଦେଇଛନ୍ତି ସେଗୁଡ଼ିକର ପ୍ରାମାଣିକତା ଓ ମୂଲ୍ୟ ସନ୍ଦେହପୂର୍ଣ୍ଣ ଏବଂ ଯେଉଁ ହିନ୍ଦୁମାନଙ୍କର ଚର୍ଚ୍ଚା ସେ କରିଛନ୍ତି ହିନ୍ଦୁଧର୍ମରେ ସେମାନଙ୍କ ମତର ସେପରି କୌଣସି ମହତ୍ତ୍ୱ ନାହିଁ ବା ସେମାନେ ହିନ୍ଦୁଧର୍ମ ଧାରାରେ ସେପରି ଉଦାହରଣ ଯୋଗ୍ୟ ବ୍ୟକ୍ତି ନୁହନ୍ତି କାରଣ ସେମାନଙ୍କର ମତ ବହୁ ଭାବରେ ତ୍ରୁଟିପୂର୍ଣ୍ଣ ଅଟେ । ଡ. ଆମ୍ବେଦକର ନିଜର ମୂଲ୍ୟାୟନ କ୍ଷେତ୍ରରେ ଯେଉଁ ମାନଦଣ୍ଡଟି ସ୍ଥିର କରିଛନ୍ତି ତାହାକୁ ଗ୍ରହଣ କଲେ ସମସ୍ତ ଧର୍ମ ନିରର୍ଥକ ମନେହେବ ।

ବିଦ୍ୱାନ ଡକ୍ଟର ତାଙ୍କର ସୁଚିନ୍ତିତ ଭାଷଣରେ ଆବଶ୍ୟକତାଠାରୁ ବହୁ ଅଧିକ କିଛି ସାବ୍ୟସ୍ତ କରିବାକୁ ପ୍ରୟାସ କରିଛନ୍ତି । ଚୈତନ୍ୟ, ଜ୍ଞାନଦେବ, ତୁକାରାମ, ତିରୁବଲ୍ଲୁବର, ରାମକୃଷ୍ଣ ପରମହଂସ, ରାଜା ରାମମୋହନ ରାୟ, ମହର୍ଷି ଦେବେନ୍ଦ୍ର ନାଥ ଟାଗୋର, ବିବେକାନନ୍ଦ ଓ ଏପରି ଆହୁରି ବହୁ ମହାନ ସନ୍ଥ ଯାହାଙ୍କର ଉଦାହରଣ ଦିଆଯାଇ ପାରିବ, ଯେଉଁ ଧର୍ମକୁ ପ୍ରତିପାଦିତ କରିଛନ୍ତି ତାହା କ'ଣ ଏପରି ମୂଲ୍ୟହୀନ ଯାହା ଡ. ଆମ୍ବେଦକର ତାଙ୍କ ଭାଷଣରେ ସୂଚାଇଛନ୍ତି ? କୌଣସି ଧର୍ମର ମୂଲ୍ୟାୟନ ସେହି ଧର୍ମର ଅଧମ ବ୍ୟକ୍ତିଙ୍କ ପରିବର୍ତ୍ତେ ମହାନ୍ ବ୍ୟକ୍ତିଙ୍କର ଉଦାହରଣର ଆଧାର ଉପରେ କରାଯିବା ଆବଶ୍ୟକ । କୌଣସି ନିର୍ଣ୍ଣୟ କ୍ଷେତ୍ରରେ ଅଧିକ ନହେଲେ ବି ଅନ୍ତତଃ ଏତିକି ହିଁ କଷଟିର ମାନଦଣ୍ଡ ହେବା ଉଚିତ । (ହରିଜନ, ଜୁଲାଇ ୧୮, ୧୯୩୬).

## (୩)

## ବର୍ଣ୍ଣ ବନାମ ଜାତି

ଲାହୋର ସ୍ଥିତ ଜାତ-ପାତ-ତୋଡ଼କ ମଣ୍ଡଳ ତରଫରୁ ଶ୍ରୀ ସନ୍ତରାମଜୀ ନିମ୍ନ ବିବୃତିଟିକୁ ପ୍ରକାଶ କରିବା ପାଇଁ ପଠାଇଛନ୍ତି ।

"ଡ. ଆମ୍ବେଦକର ଓ ଲାହୋର ଜାତ-ପାତ-ତୋଡ଼କ ମଣ୍ଡଳ ସମ୍ପର୍କରେ ଆପଣଙ୍କର ମନ୍ତବ୍ୟ ମୁଁ ପଢ଼ିଲି । ସେହି ପରିପ୍ରେକ୍ଷୀରେ ମୁଁ ଏହି ମତାମତ ଦେଉଛି ।"

ଡ. ଆମ୍ବେଦକର ଦଳିତ ଶ୍ରେଣୀର ହୋଇଥିବାରୁ ଆମେ ତାଙ୍କୁ ଆମ ସମ୍ମିଳନୀରେ ସଭାପତିତ୍ୱ କରିବାକୁ ନିମନ୍ତ୍ରଣ କରି ନଥିଲୁ, କାରଣ ଆମେ ହିନ୍ଦୁମାନଙ୍କ ମଧ୍ୟରେ ସ୍ପୃଶ୍ୟ ଓ ଅସ୍ପୃଶ୍ୟ ଏପରି କୌଣସି ପାର୍ଥକ୍ୟ କରୁନାହୁଁ । ଅପର ପକ୍ଷରେ ହିନ୍ଦୁ ସମୁଦାୟ ଭିତରେ ଥିବା ଦୁରୂହ ବ୍ୟାଧିର ସେ ଯେଉଁ କାରଣ ଦର୍ଶାଇଛନ୍ତି ତାହା ସହିତ ଆମ ବିଚାରର ମେଳ ଥିବାରୁ ଆମେ ତାଙ୍କୁ ସମ୍ମିଳନୀକୁ ଡାକିବା ପାଇଁ ସ୍ଥିର କରିଥିଲୁ । ଆମ ଦୃଷ୍ଟି ସହ ସେ ମଧ୍ୟ ଏକମତ ଯେ ଜାତିପ୍ରଥା ହିନ୍ଦୁ ସମାଜରେ ସକଳ ଭେଦଭାବ ସୃଷ୍ଟି ପାଇଁ ତଥା ହିନ୍ଦୁମାନଙ୍କର ଅବନତି ପାଇଁ ମୁଖ୍ୟତଃ ଦାୟୀ । ଡ. ଆମ୍ବେଦକର ତାଙ୍କର ଡକ୍ଟରେଟ୍ ଡିଗ୍ରୀପାଇଁ ଜାତିପ୍ରଥା ଉପରେ ଗବେଷଣା କରି ଥିବାରୁ ସେ ଏ ସମ୍ପର୍କରେ ବିସ୍ତୃତ ଅଧ୍ୟୟନ କରିଛନ୍ତି । ଜାତିପ୍ରଥାର ବିଲୋପ ପାଇଁ ହିନ୍ଦୁମାନଙ୍କୁ

ପ୍ରବର୍ତ୍ତାଇବା ଆମ ସମ୍ମିଳନୀର ଉଦ୍ଦେଶ୍ୟ ଥିଲା । କିନ୍ତୁ ଜଣେ ଅଣହିନ୍ଦୁଙ୍କର ସାମାଜିକ ଓ ଧର୍ମୀୟ ବ୍ୟବସ୍ଥା ଉପରେ କୌଣସି ଉପଦେଶ ଯେ କିଛି ପ୍ରଭାବ ପକାଇବ ନାହିଁ, ଏହା ଆମେ ଅନୁଭବ କଲୁ । ଡ. ମହୋଦୟ ତାଙ୍କ ଭାଷଣର ଅତିରିକ୍ତ ଅଂଶରେ ଜଣେ ହିନ୍ଦୁ ଭାବରେ ଏହା ତାଙ୍କର ଶେଷ ଅଭିଭାଷଣ ବୋଲି ଗୁରୁତ୍ୱର ସହ ଉଲ୍ଲେଖ କଲେ । ସମ୍ମିଳନୀର ଉଦ୍ଦେଶ୍ୟ ପାଇଁ ଏହା ଯେପରି ଅନାବଶ୍ୟକ ସେପରି ଅନିଷ୍ଟକାରୀ ଥିଲା । ସୁତରାଂ ତାଙ୍କ ଭାଷଣରୁ ଏହି ଅଂଶକୁ ବାଦ୍ ଦେବାପାଇଁ ଆମେ ତାଙ୍କୁ ଅନୁରୋଧ କଲୁ । ତାଙ୍କର ଏହି ବକ୍ତବ୍ୟ ହୁଏତ ସେ ଅନ୍ୟ କୌଣସି ପରିପ୍ରେକ୍ଷୀରେ ପ୍ରକାଶ କରି ପାରିଥାନ୍ତେ । କିନ୍ତୁ ସେ ଆମର ଅନୁରୋଧକୁ ରକ୍ଷା କଲେନାହିଁ । ଏହି ପରିସ୍ଥିତିରେ ଆମେ ଆମର ଉତ୍ସବକୁ ଏକ ହାସ୍ୟାସ୍ପଦ ଭାବରେ ଶେଷ କରିବାକୁ ଚାହିଁଲୁ ନାହିଁ । କାରଣ ତାହାଦ୍ୱାରା ଆମର କୌଣସି ଉଦ୍ଦେଶ୍ୟ ସାଧିତ ହୋଇ ନଥାନ୍ତା । ଏ ସମସ୍ତ ସତ୍ତ୍ୱେ ତାଙ୍କର ଭାଷଣକୁ ପ୍ରଶଂସା ନ କରି ମୁଁ ରହିପାରୁ ନାହିଁ । ମୁଁ ଯେତେଦୂର ଜାଣେ ସମସ୍ୟାଟି ଉପରେ ଏହା ଏକ ପାଣ୍ଡିତ୍ୟପୂର୍ଣ୍ଣ ସନ୍ଦର୍ଭ ଯାହା ସମସ୍ତ ଭାରତୀୟ ଭାଷାରେ ଅନୁବାଦ ହେବା ଆବଶ୍ୟକ ।"

"ଅଧିକନ୍ତୁ ଏଠାରେ ମୁଁ ଆପଣଙ୍କ ସମ୍ମୁଖକୁ ଅନ୍ୟ ଏକ ପ୍ରସଙ୍ଗ ଆଣୁଛି । ଆପଣ ଜାତି ଓ ବର୍ଣ୍ଣ ଭିତରେ ଯେଉଁ ସୂକ୍ଷ୍ମ ଏବଂ ଦାର୍ଶନିକ ପାର୍ଥକ୍ୟ ଆଣିଛନ୍ତି ତାହା ଲୋକମାନେ ସାଧାରଣତଃ ଅବଧାରଣା କରିପାରିବେ ନାହିଁ । କାରଣ ବାସ୍ତବରେ ଦେଖିଲେ ହିନ୍ଦୁ ସମାଜରେ ଜାତି ଓ ବର୍ଣ୍ଣ ପରସ୍ପରଠାରୁ ଅଭିନ୍ନ । ପ୍ରତ୍ୟେକର ଲକ୍ଷ୍ୟ ଓ କାର୍ଯ୍ୟ ଅନ୍ୟର ଲକ୍ଷ୍ୟ ଓ କାର୍ଯ୍ୟ ସହିତ ସମାନ; ତାହା ହେଉଛି ଆନ୍ତର୍ଜାତି ବିବାହ ଏବଂ ଜାତି ଜାତି ଭିତରେ ଏକତ୍ର ଭୋଜନକୁ ବାରଣ କରିବା । ବର୍ଣ୍ଣ ବ୍ୟବସ୍ଥା ନେଇ ଆପଣଙ୍କର ସିଦ୍ଧାନ୍ତ ଏ ଯୁଗରେ ସମ୍ପୂର୍ଣ୍ଣ ଭାବରେ ଅବାସ୍ତବ ଓ ଭବିଷ୍ୟତରେ ଏହାର ପୁନରୁଦ୍ଧାର ଅସମ୍ଭବ । ହିନ୍ଦୁମାନେ ଜାତି ବ୍ୟବସ୍ଥାର ଗୋଲାମ ଏବଂ ସେମାନେ ଏହାକୁ ବିନାଶ କରିବାକୁ ଚାହାନ୍ତି ନାହିଁ । ଫଳରେ ଆପଣ ଯେତେବେଳେ ଆପଣଙ୍କର କାଳ୍ପନିକ ବର୍ଣ୍ଣ ବ୍ୟବସ୍ଥାକୁ ସମର୍ଥନ କରୁଛନ୍ତି ତାହା ଜାତିପ୍ରଥାକୁ ଧରି ରଖିବାରେ ସହାୟକ ହେବ ଓ ଲୋକମାନେ ଜାତିକୁ ମାନିବାକୁ ଉଚିତ ମନେକରିବେ । ଆପଣ କାଳ୍ପନିକ ବର୍ଣ୍ଣ ବିଭାଜନର ଉପଯୋଗିତା କଥା କହି ସମାଜ ସଂସ୍କାର କାର୍ଯ୍ୟପ୍ରତି ଅନ୍ୟାୟ

କରିଛନ୍ତି କାରଣ ତାହା ଆମର ସାମାଜିକ ସଂସ୍କାର କ୍ଷେତ୍ରରେ ପ୍ରତିବନ୍ଧକ ହେବ । ମୂଳ ବର୍ଣ୍ଣ ବ୍ୟବସ୍ଥାକୁ କୁଠାରଘାତ ନକଲେ ଅସ୍ପୃଶ୍ୟତାକୁ ଦୂରକରି ହେବନାହିଁ । ଅର୍ଥାତ୍ ଅସ୍ପୃଶ୍ୟତାକୁ ବିଲୋପ କରିବାକୁ ହେଲେ ତାର ଉତ୍ସ ବର୍ଣ୍ଣ ବ୍ୟବସ୍ଥାକୁ ନିର୍ମୂଳ କରିବାକୁ ପଡ଼ିବ । ଅନ୍ୟଥା ଗୋଟିଏ ରୋଗରେ ଚିକିତ୍ସା କ୍ଷେତ୍ରରେ ତାହାର ମୂଳକୁ ନ ଯାଇ ବାହାରର ଲକ୍ଷଣକୁ ଚିକିତ୍ସା କରିବା ସହ ସମାନ ହେବ କିମ୍ବା ଜଳର ଉପରି ଭାଗରେ ଗାର ପକାଇବା ସଦୃଶ ହେବ । ଯେହେତୁ ବ୍ରାହ୍ମଣମାନେ ସେମାନଙ୍କର ହୃଦୟର ଅନ୍ତରତମ ପ୍ରଦେଶରେ ତଥାକଥିତ ସ୍ପୃଶ୍ୟ, ଅସ୍ପୃଶ୍ୟ ଓ ଶୂଦ୍ରଙ୍କୁ ସମାନ ସାମାଜିକ ସ୍ତର ଦେବାକୁ ଚାହାନ୍ତି ନାହିଁ, ତେଣୁ ସେମାନେ ଜାତି ବ୍ୟବସ୍ଥାକୁ ଭାଙ୍ଗିବା ପାଇଁ ଅସ୍ୱୀକାର କରନ୍ତି ଏବଂ ଅସ୍ପୃଶ୍ୟତାକୁ ଦୂର କରିବା ପାଇଁ ହେଉଥିବା କାର୍ଯ୍ୟକ୍ରମରେ କୌଣସି ସାହାଯ୍ୟ, ସହଯୋଗ ଦେବାକୁ ମନା କରନ୍ତି । ଅସ୍ପୃଶ୍ୟତା ଓ ଜାତିପ୍ରଥାକୁ ଦୂର କରିବା ପାଇଁ ଶାସ୍ତ୍ରର ସହାୟତା ନେବା ପଙ୍କକୁ ପଙ୍କ ସାହାଯ୍ୟରେ ଧୋଇବା ସଦୃଶ ହେବ ।"

ରାମଜୀଙ୍କର ଶେଷ ଅନୁଚ୍ଛେଦଟି ପ୍ରଥମ ଅନୁଚ୍ଛେଦର ବିରୁଦ୍ଧାଚରଣ କରୁଛି । ଯଦି ମଣ୍ଡଳ ଶାସ୍ତ୍ରର ସାହାଯ୍ୟକୁ ପ୍ରତ୍ୟାଖ୍ୟାନ କରୁଛି ତେବେ ତାହା ଡ. ଆମ୍ବେଦକରଙ୍କର ମତ ସହିତ ସମାନ । ଫଳରେ ମଣ୍ଡଳ ମଧ୍ୟ ହିନ୍ଦୁ ହୋଇ ରହିବାକୁ ଅସ୍ୱୀକାର କରୁଛି । ଏ କ୍ଷେତ୍ରରେ ସେମାନେ କିପରି ଡ. ଆମ୍ବେଦକରଙ୍କର ଭାଷଣରେ ଥିବା ବକ୍ତବ୍ୟ ଯଥା - "ଏହା ଜଣେ ହିନ୍ଦୁ ଭାବରେ ତାଙ୍କର ଶେଷ ଭାଷଣ" ବକ୍ତବ୍ୟକୁ ବିରୋଧ କରିବେ ? ମଣ୍ଡଳର ପ୍ରବକ୍ତା ଶ୍ରୀ ସନ୍ତରାମ ଯେତେବେଳେ ଡ. ଆମ୍ବେଦକରଙ୍କର ଭାଷଣର ସମସ୍ତ ଯୁକ୍ତିକୁ ଗ୍ରହଣ କରୁଛନ୍ତି ସେତେବେଳେ ସେ ଆମ୍ବେଦକରଙ୍କର ମନ୍ତବ୍ୟକୁ ବିରୋଧ କରିବା ଯୁକ୍ତିଯୁକ୍ତ ହୋଇନାହିଁ ।

ଯଦି ମଣ୍ଡଳ ଶାସ୍ତ୍ରକୁ ପ୍ରତ୍ୟାଖ୍ୟାନ କରୁଛି, ତେବେ ଏହା କ'ଣ ବିଶ୍ୱାସ କରୁଛି ଏହି ପ୍ରଶ୍ନ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯଦି ଜଣେ ମୁସଲମାନ କୋରାନକୁ ପ୍ରତ୍ୟାଖ୍ୟାନ କରେ ତେବେ ସେ କିପରି ମୁସଲମାନ ହୋଇ ରହିପାରିବ, କିମ୍ବା ଯଦି ଜଣେ ଖ୍ରୀଷ୍ଟିୟାନ ବାଇବେଲକୁ ପ୍ରତ୍ୟାଖ୍ୟାନ କରେ ସେ କିପରି ଖ୍ରୀଷ୍ଟିୟାନ ହୋଇରହିବ ? ଯଦି ଜାତି ଓ ବର୍ଣ୍ଣ ଗୋଟିଏ ଅନ୍ୟ ପାଇଁ ପ୍ରୟୋଗ ହୋଇପାରୁଥିବା ଶବ୍ଦ ଅଟେ ଏବଂ ବର୍ଣ୍ଣ ଶାସ୍ତ୍ରର ଏକ ଅବିଚ୍ଛେଦ୍ୟ ଅଙ୍ଗ ଯାହା ହିନ୍ଦୁଧର୍ମର ସଂଜ୍ଞା ନିରୂପଣ କରିଛି, ତେବେ ମୁଁ ବୁଝି

ପାରୁନାହିଁ ଜଣେ ବ୍ୟକ୍ତି ଜାତି ଅର୍ଥାତ୍ ବର୍ଣ୍ଣକୁ ପ୍ରତ୍ୟାଖ୍ୟାନ କରି କିପରି ନିଜକୁ ହିନ୍ଦୁ ବୋଲି ପରିଚୟ ଦେବ ।

ଶ୍ରୀ ସନ୍ତରାମ ଶାସ୍ତ୍ରର ତୁଳନା ପଙ୍କ ସହିତ କରିଛନ୍ତି । ମୁଁ ଯେତେଦୂର ସ୍ମରଣ ରଖିଛି ଡ. ଆମ୍ବେଦକର ଶାସ୍ତ୍ରର ଏପରି କୌଣସି ତୁଳନା ଦେଇ ନାହାନ୍ତି । ଯଦି ଶାସ୍ତ୍ର ଅସ୍ପୃଶ୍ୟତାକୁ ସମର୍ଥନ କରୁଛି ତେବେ ମୁଁ ଏହା ନିଶ୍ଚିତ ଭାବରେ କହିବାକୁ ଚାହେଁ ଯେ ମୁଁ ହିନ୍ଦୁ ହୋଇ ରହିବାକୁ ଚାହେଁ ନାହିଁ । ସେହିପରି ଆଜିର ବିଭତ୍ସ ଜାତିପ୍ରଥାକୁ ଯଦି ଶାସ୍ତ୍ର ସମର୍ଥନ କରୁଛି ତେବେ ମୁଁ ନିଜକୁ ହିନ୍ଦୁ କହିବାକୁ କିମ୍ବା ହିନ୍ଦୁ ହୋଇ ରହିବାକୁ ଚାହିଁବି ନାହିଁ । କାରଣ ମୁଁ ଜାତି ଜାତି ଭିତରେ, ଏକତ୍ର ଭୋଜନ ଓ ଆନ୍ତର୍ଜାତି ବିବାହକୁ ପୂର୍ଣ୍ଣ ଭାବରେ ଗ୍ରହଣ କରୁଛି । ଶାସ୍ତ୍ରଗୁଡ଼ିକର ବ୍ୟାଖ୍ୟା କ୍ଷେତ୍ରରେ ମୋର ମତକୁ ପୁନଶ୍ଚ ବ୍ୟକ୍ତ କରିବାକୁ ମୁଁ ଚାହୁଁ ନାହିଁ । ଶ୍ରୀ ସନ୍ତରାମଙ୍କୁ ମୁଁ ପରାମର୍ଶ ଦେବାକୁ ଚାହୁଁଛି ଯେ ଶାସ୍ତ୍ରର ଯୁକ୍ତିସଙ୍ଗତ, ଯଥାର୍ଥ ଓ ନୈତିକ ଆଭିମୁଖ୍ୟ ରହିଛି । ସେହି ଆଭିମୁଖ୍ୟ ହିନ୍ଦୁ ପରମ୍ପରା ଭିତରେ ଦେଖିବାକୁ ମିଳିପାରିବ ।

(ହରିଜନ, ଅଗଷ୍ଟ ୧୫, ୧୯୩୬)

## ପରିଶିଷ୍ଟ-୨

## ମହାତ୍ମାଙ୍କୁ ଡ. ଆମ୍ବେଦକରଙ୍କର ପ୍ରତ୍ୟୁତ୍ତର

### (୧)

ଜାତ-ପାତ-ତୋଡ଼କ ମଣ୍ଡଳ ପାଇଁ ମୁଁ "ଜାତି ପ୍ରଥା" ସମ୍ବନ୍ଧରେ ଯେଉଁ ଭାଷଣ ପ୍ରସ୍ତୁତ କରିଥିଲି ମହାତ୍ମାଜୀ ତାଙ୍କ ପତ୍ରିକା "ହରିଜନ"ରେ ଏହା ଉପରେ ସମୀକ୍ଷା ଲେଖି ମତେ ସମ୍ମାନିତ କରିଛନ୍ତି । ମୋ ଭାଷଣ ଉପରେ ତାଙ୍କର ସମୀକ୍ଷାକୁ ଅଧ୍ୟୟନ ଦ୍ୱାରା ଏହା ସ୍ପଷ୍ଟ ହୋଇଛି ଯେ ମୁଁ ଜାତି ସମ୍ପର୍କରେ ଯେଉଁ ମତାମତ ବ୍ୟକ୍ତ କରିଛି ମହାତ୍ମା ସେହି ମତ ସହିତ ଆଦୌ ଏକମତ ନୁହନ୍ତି । ସେପରି ବିଶେଷ କାରଣ ନଥିଲେ ସାଧାରଣତଃ ମୁଁ ମୋର ସମାଲୋଚକମାନଙ୍କ ସହିତ କୌଣସି ବିବାଦରେ ସଂପୃକ୍ତ ହେବାକୁ ଚାହେଁ ନାହିଁ । ମୋର ପ୍ରତିପକ୍ଷ କୌଣସି ଅଶିଷ୍ଟ ବା ଅବୋଧ୍ୟ ବ୍ୟକ୍ତି ହୋଇଥିଲେ ମୁଁ ସେହି ସମାଲୋଚନାକୁ କୌଣସି ଗୁରୁତ୍ୱ ଦେଇ ନଥାଏ । କିନ୍ତୁ

ମୋର ସମୀକ୍ଷକ ନିଜେ ମହାତ୍ମା ହୋଇଥିବାରୁ ସେ ଯେଉଁ ମତବ୍ୟକ୍ତ କରିଛନ୍ତି ମୁଁ ତାହାର ସମୁଚିତ ଉତ୍ତର ଦେବାକୁ ଉଚିତ ମନେକରୁଛି । ତାଙ୍କର ସମୀକ୍ଷା ପାଇଁ ମୁଁ ସମ୍ମାନିତ ଅନୁଭବ କରୁଥିଲେ ମଧ ଅନ୍ୟ ସମାଲୋଚକଙ୍କ ପରି ମହାତ୍ମା ମୋ ପ୍ରତି କରିଥିବା ଆକ୍ଷେପ (ଯଥା, ମୁଁ ଏହି ଅପ୍ରଦତ୍ତ ଭାଷଣ ଏଥିପାଇଁ ପ୍ରକାଶ କରୁଛି ଯଦ୍ୱାରା ଲୋକମାନଙ୍କ ଦ୍ୱାରା "ବିସ୍ମୃତ ହେବିନାହିଁ") ପାଠକରି ମୁଁ ଆଶ୍ଚର୍ଯ୍ୟ ହେଉଛି । ମହାତ୍ମା ଯାହା କୁହନ୍ତୁ, ଏହା ପ୍ରକାଶ କରିବା ପଛରେ ମୋର ଉଦ୍ଦେଶ୍ୟ ହେଉଛି ହିନ୍ଦୁମାନେ ମୋର ଏହି ଭାଷଣ ପଢ଼ି ଚିନ୍ତା କରିବେ ଓ ସେମାନେ କେଉଁ ସ୍ଥିତିରେ ଅଛନ୍ତି ତାହା ଅନୁଭବ କରିବେ । ମୁଁ ଜୀବନରେ କେବେ ପ୍ରଚାରପାଇଁ ଆଶାୟୀ ହୋଇନାହିଁ, ବରଂ ମୁଁ କହିବି ଯେ ମୋର ଚାହିଁବା ବା ଦରକାର କରିବାଠାରୁ ମୋର ବେଶୀ ପ୍ରଚାର ହୋଇଛି । ଯଦିବି ଧରାଯାଏ ଯେ ମୁଁ ପ୍ରଚାର ଉଦ୍ଦେଶ୍ୟ ରଖି ଏହାକୁ ପ୍ରକାଶ କରିଛି, ତେବେ ଏଥିପାଇଁ ମୋ ପ୍ରତି ଆକ୍ଷେପ ଅସଙ୍ଗତ ନୁହେଁ କି ? ଅନ୍ତତଃ ମହାତ୍ମାଙ୍କ ପରି କାଚର ମହଲ ଭିତରେ ରହିଥିବା ବ୍ୟକ୍ତିମାନେ ସେପରି ଆକ୍ଷେପ କରିବା ସମୀଚୀନ ନୁହେଁ ।

(୨)

ମହାତ୍ମାଙ୍କର ଯାହା ଉଦ୍ଦେଶ୍ୟ ଥାଉନା କାହିଁକି ମୁଁ ଭାଷଣରେ ଯେଉଁସବୁ ପ୍ରଶ୍ନ ଉତ୍‌ଥାପନ କରିଛି ସେ ପ୍ରସଙ୍ଗରେ ତାଙ୍କର କ'ଣ କହିବାର ଅଛି ? ପ୍ରଥମରେ ଯେ କେହି ମୋର ଭାଷଣକୁ ପଢ଼ିବେ ସେ ଅନୁଭବ କରିବେ ଯେ ମୁଁ ଯେଉଁ ସବୁ ପ୍ରଶ୍ନ ଉଠାଇଛି ମହାତ୍ମା ସେ ସମ୍ପର୍କରେ କୌଣସି ଗୁରୁତ୍ୱ ଦେଇନାହାନ୍ତି । ଅଥଚ ମୋର ଭାଷଣର ଯେଉଁ ସବୁ କଥାକୁ ହିନ୍ଦୁଧର୍ମ ପ୍ରତି ଅଭିଯୋଗ ବୋଲି କହିଛନ୍ତି ସେ ତାଙ୍କ ସମୀକ୍ଷାରେ ଯେଉଁ ସବୁ ବିଷୟରେ ଅବତାରଣା କରିଛନ୍ତି ତାହାର କୌଣସି ସମ୍ବନ୍ଧ ହିଁ ନାହିଁ । ମୁଁ ମୋର ଭାଷଣରେ ଯେଉଁ ମୁଖ୍ୟ ପ୍ରସଙ୍ଗ ଗୁଡ଼ିକୁ ଉଠାଇଛି ତାହାକୁ ନିମ୍ନମତେ ବ୍ୟକ୍ତ କରାଯାଇପାରିବ: (୧) ଜାତିପ୍ରଥା ହିନ୍ଦୁମାନଙ୍କୁ ନଷ୍ଟ କରି ଦେଇଛି, (୨) ଚତୁର୍ବର୍ଣ୍ଣ ବ୍ୟବସ୍ଥାର ଆଧାର ଉପରେ ହିନ୍ଦୁ ସମାଜର ପୁନର୍ଗଠନ କରିବା ଅସମ୍ଭବ ମନେହୁଏ କାରଣ ବର୍ଣ୍ଣ ବ୍ୟବସ୍ଥା ଏକ ଛିଦ୍ର ଥିବା ପାତ୍ର ବା ଏକ ଅମିତବ୍ୟୟୀ ବ୍ୟକ୍ତି

ସଦୃଶ ଅଟେ । ଏହା ନିଜସ୍ୱ ଗୁଣରେ ତିଷ୍ଠି ରହିବା ସମ୍ଭବ ନୁହେଁ ଓ ଏହା କାଳକ୍ରମେ ଭ୍ରଷ୍ଟ ଜାତି ପ୍ରଥାରେ ରୂପାନ୍ତରିତ ହେଇଯିବା ଏହାର ଅନ୍ତର୍ନିହିତ ସ୍ୱରୂପ ଅଟେ । ସୁତରାଂ ଏହାକୁ ପ୍ରତିରୋଧ କରିବା ପାଇଁ ଏକ ଦଣ୍ଡବିଧି ବ୍ୟବସ୍ଥା ଆବଶ୍ୟକ, ଯେଉଁ ନିୟମଦ୍ୱାରା ବର୍ଣ୍ଣ ବ୍ୟବସ୍ଥାର ଉଲଂଘନକୁ ଦମନ କରାଯାଇ ପାରିବ, (୩) ଚତୁର୍ବର୍ଣ୍ଣ ଦ୍ୱାରା ହିନ୍ଦୁ ସମାଜକୁ ପୁନର୍ଗଠନ କରିବା କ୍ଷତିକାରକ ଅଟେ । କାରଣ ବର୍ଣ୍ଣ ବ୍ୟବସ୍ଥାର ପରିଣାମ ଦ୍ୱାରା ଜନସମୂହର ଅଧୋପତନ ହୋଇଥାଏ । ଏଥିରେ ସେମାନଙ୍କୁ ଜ୍ଞାନଲାଭରୁ ବଞ୍ଚିତ କରାଯାଏ ଓ ଅସ୍ତ୍ର ଧାରଣରୁ ବଞ୍ଚିତ କରାଯାଇ ସେମାନଙ୍କୁ ପୁରୁଷତ୍ୱହୀନ କରି ରଖାଯାଏ; (୪) ହିନ୍ଦୁ ସମାଜକୁ ଏପରି ଧାର୍ମିକ ବ୍ୟବସ୍ଥା ଦ୍ୱାରା ପୁନର୍ଗଠନ କରାଯିବା ଦରକାର ଯାହା ସମାନତା,ସ୍ୱତନ୍ତତା ଓ ଭ୍ରାତୃତ୍ୱର ସିଦ୍ଧାନ୍ତକୁ ସ୍ୱୀକାର କରୁଥିବ; (୫) ଏହି ଲକ୍ଷ୍ୟ ହାସଲ ପାଇଁ ଜାତି ଓ ବର୍ଣ୍ଣ ପଶ୍ଚାତରେ ରହିଥିବା ଧର୍ମୀୟ ଅନୁମୋଦନଂକୁ ବି ନଷ୍ଟ କରିବାକୁ ହେଲେ ଶାସ୍ତ୍ରମାନଙ୍କର ପାରଲୌକିକ ପ୍ରଭୁତ୍ୱ ଓ ଉତ୍ସକୁ ପ୍ରତ୍ୟାଖ୍ୟାନ କରିବା ଆବଶ୍ୟକ । ସୁତରାଂଏହା ଲକ୍ଷ୍ୟ କରିବାର କଥା ଯେ ମହାତ୍ମା ମୋର ମୁଖ୍ୟ ପ୍ରଶ୍ନଗୁଡ଼ିକ ଉପରେ ଆଦୌ ଧ୍ୟାନ ନଦେଇ ଏହାର ବହିର୍ଭୁତ ପ୍ରସଙ୍ଗ କେବଳ ଉଠାଇଛନ୍ତି ।

## (୩)

ମହାତ୍ମାଜୀ ତାଙ୍କ ଆଲୋଚନାରେ ଯେଉଁସବୁ ପ୍ରସଙ୍ଗ ଉଠାଇଛନ୍ତି, ତାହାର ସମୀକ୍ଷା କରାଯାଉ । ତାଙ୍କର ପ୍ରଥମ ପ୍ରସଙ୍ଗଟି ହେଉଛି ମୁଁ ଶାସ୍ତ୍ରରୁ ଯେଉଁସବୁ ଉଦ୍ଧୃତି ଦେଇଛି ସେଗୁଡ଼ିକ ପ୍ରାମାଣିକ ନୁହେଁ । ମୁଁ ଏ କଥା ସ୍ୱୀକାର କରୁଛି ଯେ ଏ କ୍ଷେତ୍ରରେ ମୁଁ ଅଧିକାରୀ ନୁହେଁ । ମୁଁ ଏକଥା ଉଲ୍ଲେଖ କରିବାକୁ ଚାହୁଁଛି ଯେ ମୁଁ ଯେଉଁ ସବୁ ଉଦ୍ଧୃତି ଦେଇଛି ସେସବୁକୁ ବାଳ ଗଙ୍ଗାଧର ତିଳକଙ୍କର ଲେଖାରୁ ନେଇଛି, ଯେ କି ସଂସ୍କୃତ ଭାଷା ଓ ହିନ୍ଦୁଶାସ୍ତ୍ର ଉପରେ ଜଣେ ସର୍ବମାନ୍ୟ ଅଧିକାରୀ ଅଟନ୍ତି । ମହାତ୍ମାଙ୍କର ଦ୍ୱିତୀୟ ପ୍ରଶ୍ନଟି ହେଲା – ଶାସ୍ତ୍ରର ବ୍ୟାଖ୍ୟା ବିଦ୍ୱାନମାନଙ୍କ ଦ୍ୱାରା ହେବା ପରିବର୍ତ୍ତେ ସନ୍ଥମାନଙ୍କ ଦ୍ୱାରା ହେବା ଆବଶ୍ୟକ । ତାଙ୍କ ମତରେ ସନ୍ଥମାନେ ଶାସ୍ତ୍ରକୁ ଯେପରି ବୁଝିଛନ୍ତି ସେଥିରେ ଜାତି ଓ ଅସ୍ପୃଶ୍ୟତାର ସମର୍ଥନ ନାହିଁ । ପ୍ରଥମ ପ୍ରଶ୍ନଟି ଉପରେ ମୁଁ ମହାତ୍ମାଙ୍କୁ ଏହା ପଚାରିବାକୁ ଚାହୁଁଛି ଯେ ଶାସ୍ତ୍ରରେ ଯଦି ଅନେକ ପ୍ରକ୍ଷେପ ଥାଏ ଓ

ସେଗୁଡ଼ିକୁ ସନ୍ଥମାନେ ଭିନ୍ନ ଭିନ୍ନ ଭାବରେ ବ୍ୟାଖ୍ୟା କରନ୍ତି ତାହାଦ୍ୱାରା ସମସ୍ୟାର ସମାଧାନ ହେବ କି ? ସାଧାରଣ ଲୋକମାନେ ଧର୍ମଶାସ୍ତ୍ରରେ କେଉଁ ଅଂଶ ଯଥାର୍ଥ ଓ କେଉଁ ଅଂଶ ପ୍ରକ୍ଷିପ୍ତ ସେ ଭିତରେ କୌଣସି ପାର୍ଥକ୍ୟ ଆଣିପାରନ୍ତି ନାହିଁ, ସେମାନେ ଶାସ୍ତ୍ର ବିଷୟରେ ବିଶେଷ ଜାଣନ୍ତି ନାହିଁ । ସେମାନେ ନିରକ୍ଷର ଥିବାରୁ ଶାସ୍ତ୍ରର ବିଷୟବସ୍ତୁ ନେଇ ଅଜ୍ଞ । ସେମାନଙ୍କୁ ଯାହା କୁହାଯାଇଛି ତାହା ସେମାନେ ବିଶ୍ୱାସ କରିଛନ୍ତି । ସେମାନଙ୍କୁ କୁହାଯାଇଛି ଜାତି ଓ ଅସ୍ପୃଶ୍ୟତା ଶାସ୍ତ୍ର ସମ୍ମତ ଓ ସେ ସବୁକୁ ମାନିବା ଧାର୍ମିକ କର୍ତ୍ତବ୍ୟ ।

ସନ୍ଥମାନଙ୍କ ବିଷୟରେ ଏହା କୁହାଯାଇ ପାରିବ ଯେ ସେମାନଙ୍କର ଉପଦେଶ ବିଦ୍ୱାନ ଲୋକମାନଙ୍କର ବ୍ୟାଖ୍ୟାଠାରୁ ପୃଥକ ଓ ଉନ୍ନତ ହେଲେ ବି ସନ୍ଥମାନଙ୍କ ଉପଦେଶର ସମାଜ ଉପରେ କୌଣସି ପ୍ରଭାବ ନାହିଁ । ସନ୍ଥମାନଙ୍କର ଉପଦେଶର ପ୍ରଭାବ ନରହିବା ପଶ୍ଚାତରେ ଦୁଇଟି କାରଣ ରହିପାରେ । ପ୍ରଥମରେ କୌଣସି ସନ୍ଥ ଜାତି ପ୍ରଥାକୁ ବିରୋଧ କରିନାହାନ୍ତି । ଅପର ପକ୍ଷରେ ସେମାନେ ଜାତି ବ୍ୟବସ୍ଥାର ସମର୍ଥକ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ସେମାନେ ଯେଉଁ ଜାତିରେ ଜନ୍ମ ହୋଇଛନ୍ତି ସେହି ଭିତରେ କାର୍ଯ୍ୟ କରିଛନ୍ତି ଓ ଶେଷରେ ଦିବଂଗତ ହୋଇଛନ୍ତି । ଜ୍ଞାନଦେବ ବ୍ରାହ୍ମଣ ଜାତିର ସାମାଜିକ ସ୍ତର ସହ ଏପରି ପ୍ରଭାବିତ ଥିଲେ ଯେ ଯେତେବେଳେ ପୈଥାନର ବ୍ରାହ୍ମଣମାନେ ତାଙ୍କୁ ସେମାନଙ୍କ ଜାତିରେ ସାମିଲ କରିବାକୁ ଅସ୍ୱୀକାର କଲେ ସେତେବେଳେ ସେ ବ୍ରାହ୍ମଣ ସମ୍ପ୍ରଦାୟଙ୍କଠାରୁ ବ୍ରାହ୍ମଣର ସ୍ୱୀକୃତି ପାଇବା ପାଇଁ ଆକାଶ ପାତାଳ ଏକ କରିଦେଇଥିଲେ । ସନ୍ଥ ଏକନାଥ (ଯାହାଙ୍କୁ ନାୟକ ଭାବରେ ନେଇ ସଂପ୍ରତି 'ଧର୍ମାତ୍ମା' ଚଳଚ୍ଚିତ୍ର ହୋଇଛି) ଅସ୍ପୃଶ୍ୟ ଲୋକମାନଙ୍କୁ ଛୁଇଁବା ଓ ସେମାନଙ୍କ ସହିତ ଏକତ୍ର ଭୋଜନ କରିବା କ୍ଷେତ୍ରରେ ସାହସିକତା ଦେଖାଇଛନ୍ତି । କିନ୍ତୁ ଜାତି ଓ ଅସ୍ପୃଶ୍ୟତାକୁ ସେ ବିରୋଧ କରୁଥିବାରୁ ଯେ ଏପରି କରିଛନ୍ତି ତାହା ନୁହେଁ, ବରଂ ସେ ଏହା ବିଶ୍ୱାସ କରିଛନ୍ତି ଯେ ଏପରି କରିବା ଦ୍ୱାରା ତାଙ୍କର ଯେଉଁ ପାପ ହୋଇଛି ତାହା ପବିତ୍ର ଗଙ୍ଗା ଜଳରେ ସ୍ନାନ କରିବା ଦ୍ୱାରା ନଷ୍ଟ ହୋଇଯିବ ଓ ସେ ପୁନଶ୍ଚ ପବିତ୍ର ହୋଇପାରିବେ ।* ମୋର ଅଧ୍ୟୟନରୁ ମୁଁ ଯେତିକି ଜାଣିଛି ଜାତି ଓ ଅସ୍ପୃଶ୍ୟତା ବିରୁଦ୍ଧରେ ସନ୍ଥମାନେ କେବେହେଲେ ସ୍ୱର ଉତ୍ତୋଳନ

କରିନାହାନ୍ତି । ସେମାନେ ମଣିଷ ମଣିଷ ଭିତରେ ଏହାକୁନେଇ ସଂଘର୍ଷ ସୃଷ୍ଟି କରିବାକୁ ଚାହିଁ ନାହାନ୍ତି । ମଣିଷ ଓ ଈଶ୍ୱରଙ୍କ ଭିତରେ ସମ୍ପର୍କ ନେଇ ସେମାନେ ଚନ୍ତିତ ହୋଇଛନ୍ତି । ସବୁମଣିଷ ସମାନ ସେମାନେ ଏକଥା ପ୍ରଚାର କରି ନାହାନ୍ତି । ସେମାନେ କେବଳ ଏକଥା କହିଛନ୍ତି ଯେ ଈଶ୍ୱରଙ୍କ ଦୃଷ୍ଟିରେ ସବୁମଣିଷ ସମାନ । ଶେଷୋକ୍ତ କଥାଟି ଏପରି ଏକ ବିଶ୍ୱାସ ଯାହାଗ୍ରହଣ କରିବା ବା ପ୍ରଚାର କରିବା କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ନାହିଁ । ଦ୍ୱିତୀୟତଃ ଯେଉଁଥିପାଇଁ ସନ୍ଥମାନଙ୍କ ଉପଦେଶର କୌଣସି ପ୍ରଭାବ ହେଲାନାହିଁ ତାହାର କାରଣ ହେଲା, ଲୋକମାନେ ବିଶ୍ୱାସ କରନ୍ତି ଯେ ଜଣେ ସନ୍ଥ ଜାତି ପ୍ରଥାକୁ ଉଲ୍ଲଂଘନ କରି ପାରନ୍ତି କାରଣ ସେ ଭକ୍ତ ଅଟନ୍ତି, କିନ୍ତୁ ଜଣେ ସାଧାରଣ ମଣିଷ ଏହା କରିବା ଉଚିତ ନୁହେଁ । ଏଣୁ ସନ୍ଥମାନେ ସେପରି କୌଣସି କ୍ରାନ୍ତିକାରୀ କାର୍ଯ୍ୟ ପାଇଁ ଆଦର୍ଶ ହୋଇନାହାନ୍ତି ଯାହାଙ୍କୁ କି ଅନ୍ୟମାନେ ଅନୁକରଣ କରିବେ । ଜଣେ ସନ୍ଥଙ୍କୁ ସର୍ବଦା ଜଣେ ଧାର୍ମିକ ବ୍ୟକ୍ତି ହିସାବରେ ସମ୍ମାନ ଓ ପୂଜା କରାଯାଇଛି । ସାଧାରଣ ଲୋକମାନେ ଜାତି ଓ ଅସ୍ପୃଶ୍ୟତାରେ ଗଭୀର ଭାବରେ ବିଶ୍ୱାସ କରି ଆସିଥିବାରୁ ସନ୍ଥମାନଙ୍କର ପବିତ୍ର ଜୀବନ ଓ ମହାନ ଉପଦେଶ ଏବଂ ବିଶେଷ କରି ଶାସ୍ତ୍ର ବିରୁଦ୍ଧମତର କୌଣସି ପ୍ରଭାବ ସାଧାରଣ ଲୋକଙ୍କ ଉପରେ ପଡ଼ିନାହିଁ । ତେଣୁ ଏଥିରେ କୌଣସି ସାନ୍ତ୍ୱନା ପାଇବା ଠିକ୍ ନୁହେଁ ଯେ ହିନ୍ଦୁ ଧର୍ମରେ ଅନେକ ସନ୍ଥ ରହିଛନ୍ତି କିମ୍ବା ଶାସ୍ତ୍ରକୁ ବହୁ ସାଧାରଣ ମଣିଷ ଓ ମୁଷ୍ଟିମେୟ ବିଜ୍ଞଲୋକ ଯେପରି ବୁଝିଛନ୍ତି ମହାତ୍ମା ତା'ଠାରୁ ଭିନ୍ନ ଭାବରେ ଅବଧାରଣା କରିଛନ୍ତି । ସାଧାରଣ ଲୋକମାନେ ଶାସ୍ତ୍ରକୁ ଯେପରି ବୁଝିଛନ୍ତି ତାହାକୁ ବିଚାରକୁ ନେବାକୁ ହେବ ।

ସାଧାରଣ ଲୋକମାନଙ୍କର ବ୍ୟବହାର ଓ ଚରିତ୍ରକୁ ଶାସ୍ତ୍ର ଯେପରି ପ୍ରଭାବିତ କରି ଆସିଛି ସେ କ୍ଷେତ୍ରରେ ଶାସ୍ତ୍ରର ଅଧିକାରକୁ ଅବଜ୍ଞା ନକରି ଏହାର ପ୍ରଭାବକୁ କିପରି ପ୍ରତିହତ କରିହେବ ସେ ପ୍ରଶ୍ନ ଉପରେ ମହାତ୍ମା କୌଣସି ମତ ଦେଇନାହାନ୍ତି । ଶାସ୍ତ୍ରର କୁପ୍ରଭାବରୁ ସାଧାରଣ ଜନଗଣଙ୍କୁ ମୁକ୍ତ କରିବା ନେଇ ମହାତ୍ମା ଯେକୌଣସି ପନ୍ଥା ଦେଖାନ୍ତୁ ନା କାହିଁକି ତାଙ୍କୁ ଏହା ସ୍ୱୀକାର କରିବାକୁ ପଡ଼ିବ ଯେ ସନ୍ଥମାନଙ୍କର ମହାନ ଓ ପବିତ୍ର ଜୀବନ ସେମାନଙ୍କୁ ଉଚ୍ଚତର ସ୍ଥିତିକୁ ଉନ୍ନତି କରିପାରେ, କିନ୍ତୁ

ଭାରତବର୍ଷରେ ସେମାନଙ୍କର କୌଣସି ପ୍ରଭାବ ସମସ୍ୟାର ସମାଧାନ ପାଇଁ ସାଧାରଣ ଲୋକଙ୍କ ଉପରେ ପଡ଼େନାହିଁ । କାରଣ ଭାରତରେ ସାଧାରଣ ଲୋକମାନେ ସନ୍ଥ ଓ ମହାତ୍ମାମାନଙ୍କୁ ସମ୍ମାନିତ କରିଛନ୍ତି କିନ୍ତୁ ସେମାନଙ୍କୁ ଅନୁସରଣ କରି ନାହାନ୍ତି ।

(୪)

ମହାତ୍ମାଙ୍କର ତୃତୀୟ ପ୍ରଶ୍ନଟି ହେଉଛି ଚୈତନ୍ୟ, ଜ୍ଞାନଦେବ, ତୁକାରାମ, ତିରୁବଲ୍ଲୁବର, ରାମକୃଷ୍ଣ ପରମହଂସଙ୍କ ପରି ମହାନ ସନ୍ଥମାନେ ଯେଉଁ ଧର୍ମକୁ ମାନିଛନ୍ତି ତାହାର କ'ଣ କୌଣସି ମୂଲ୍ୟନାହିଁ ? ଏହା ସହିତ କୌଣସି ଧର୍ମର ମୂଲ୍ୟାୟନ କରିବାବେଳେ ମନ୍ଦ ଲୋକଙ୍କର ଚରିତ୍ରର ଆଧାର ଉପରେ ଏହା କରା ନଯାଇ ଧର୍ମର ମହାନ ବ୍ୟକ୍ତିଙ୍କର ଚରିତ୍ରର ଆଧାର ଉପରେ ହେବା ବାଞ୍ଛନୀୟ ବୋଲି ସେ ମତ ଦେଇଛନ୍ତି । ମହାତ୍ମାଙ୍କର ଏହି ମନ୍ତବ୍ୟକୁ ମୁଁ ସମ୍ପୂର୍ଣ୍ଣ ରୂପରେ ଗ୍ରହଣ କରୁଛି । କିନ୍ତୁ ଏହାଦ୍ୱାରା ମହାତ୍ମା କ'ଣ ପ୍ରମାଣ କରିବାକୁ ଚାହୁଁଛନ୍ତି ମୁଁ ବୁଝିପାରୁ ନାହିଁ । କୌଣସି ଧର୍ମର ମୂଲ୍ୟାୟନ ଉତ୍ତମ ଲୋକମାନଙ୍କର ମାନଦଣ୍ଡରେ ହେବା ଆବଶ୍ୟକ, ଖରାପ ଲୋକଙ୍କର ମାନଦଣ୍ଡରେ ନୁହେଁ । କିନ୍ତୁ ଏହାଦ୍ୱାରା ସମସ୍ୟାଟିର ସମାଧାନ ହୋଇପାରୁଛି କି ? ମୋ ମତରେ ନୁହେଁ । ପ୍ରଶ୍ନ ହେଉଛି ମନ୍ଦ ଲୋକଙ୍କର ସଂଖ୍ୟା ଏତେ ଅଧିକ ଅଥଚ ଉତ୍ତମ ଚରିତ୍ରର ଲୋକଙ୍କ ସଂଖ୍ୟା ଏପରି କମ୍ କାହିଁକି ? ମୋ ବିଚାରରେ ଏହି ପ୍ରଶ୍ନର ଦୁଇଟି ସମ୍ଭାବ୍ୟ ଉତ୍ତର ରହିଛି:(୧) ମନ୍ଦ ଲୋକମାନେ ନିଜର ସହଜାତ କୁଟିଳ ସ୍ୱଭାବ ଯୋଗୁଁ ନୈତିକତା ଶିକ୍ଷା କରିପାରନ୍ତି ନାହିଁ, ଫଳରେ ଧର୍ମୀୟ ଆଦର୍ଶର ସାମାନ୍ୟତମ ଅନୁଭବ ସେମାନଙ୍କର ନଥାଏ; କିମ୍ବା (୨) ଧର୍ମୀୟ ଆଦର୍ଶ ସମ୍ପୂର୍ଣ୍ଣ ଭାବରେ ତ୍ରୁଟିପୂର୍ଣ୍ଣ ହୋଇଥିବାରୁ ଏହା ଅଧିକାଂଶ ଲୋକଙ୍କର ଜୀବନକୁ ଭ୍ରମାତ୍ମକ ଚାରିତ୍ରିକ ଆଦର୍ଶ ଦିଗରେ ପ୍ରଭାବିତ କରିଥାଏ । ଏହି ମନ୍ଦ ଆଦର୍ଶ ସତ୍ତ୍ୱେ ଯେଉଁମାନେ ଉତ୍ତମ ହୋଇଛନ୍ତି ସେମାନେ ମନ୍ଦ ଆଦର୍ଶକୁ ଭଲ ଦିଗରେ ମୋଡ଼ ଦେବାକୁ ପ୍ରୟାସ କରିଥାନ୍ତି ମାତ୍ର । ଏ ଦୁଇଟି ଉତ୍ତର ମଧ୍ୟରୁ ମୁଁ ପ୍ରଥମଟିକୁ ଗ୍ରହଣ କରିପାରୁ ନାହିଁ ଓ ମୋର ବିଶ୍ୱାସ ମହାତ୍ମା ମଧ୍ୟ ଏହାକୁ ଗ୍ରହଣ କରିବା କ୍ଷେତ୍ରରେ ଗୁରୁତ୍ୱ ଦେବେନାହିଁ । ମୋ

ବିଚାରରେ ଦ୍ୱିତୀୟ କାରଣଟି ଯୁକ୍ତିଯୁକ୍ତ ଓ ଉଚିତ ମନେହୁଏ । ମନ୍ଦ ଲୋକଙ୍କର ସଂଖ୍ୟା ଏତେ ଅଧିକ ଓ ଉତ୍ତମ ଲୋକଙ୍କର ସଂଖ୍ୟା ଆଶାତୀତ ଭାବରେ କମ୍ କାହିଁକି ? ଏହି ପ୍ରଶ୍ନକୁ ବୁଝାଇବାକୁ ଯଦି ମହାତ୍ମାଙ୍କ ପାଖରେ ଏକ ତୃତୀୟ କାରଣ ନାହିଁ ତେବେ ଦ୍ୱିତୀୟ କାରଣଟି ହିଁ ଗ୍ରହଣ ଯୋଗ୍ୟ । ଦ୍ୱିତୀୟ କାରଣଟିକୁ ନେବାଦ୍ୱାରା ମହାତ୍ମାଙ୍କର ଯୁକ୍ତି 'କୌଣସି ଧର୍ମର ମୂଲ୍ୟାୟନ ଉତ୍ତମ ଲୋକଙ୍କର ଚାରିତ୍ରିକ ମାନଦଣ୍ଡରେ ହେବା ଉଚିତ' କୌଣସି ସୁଫଳ ପ୍ରଦାନ କରିପାରୁ ନାହିଁ । ଭ୍ରମାତ୍ମକ ଆଦର୍ଶକୁ ଅନୁକରଣ କରି ଅନେକ ଲୋକ ଯେ ମନ୍ଦ ହୋଇଛନ୍ତି ସେମାନଙ୍କ ପ୍ରତି ଚିନ୍ତା ପ୍ରକଟ କରିବା ଛଡ଼ା ମହାତ୍ମାଙ୍କ ମନ୍ତବ୍ୟର ଅନ୍ୟ କୌଣସି ମହତ୍ୱ ନାହିଁ ।

(୫)

ମହାତ୍ମାଙ୍କର ଯୁକ୍ତି ହେଉଛି ଯଦି ଅଧିକାଂଶ ଲୋକ ସନ୍ଥମାନଙ୍କର ଉଦାହରଣକୁ ଅନୁକରଣ କରିବେ, ତେବେ ହିନ୍ଦୁଧର୍ମ ସହନୀୟ ହୋଇପାରିବ । କିନ୍ତୁ ଏହି ଯୁକ୍ତି ଅନ୍ୟ ଏକ କାରଣ ପାଇଁ ତ୍ରୁଟିପୂର୍ଣ୍ଣ ଅଟେ । ମୋ ମତରେ ଚୈତନ୍ୟ ମହାପ୍ରଭୁଙ୍କ ପରି ମହାନ ବ୍ୟକ୍ତିଙ୍କର ଉଦାହରଣ ଦେଇ ମହାତ୍ମା ଅତି ସରଳ ଓ ବ୍ୟାପକତର ଅର୍ଥରେ କହିବାକୁ ଚାହାନ୍ତି ଯେ ଯଦି ନୀଚ ଜାତିର ହିନ୍ଦୁମାନଙ୍କ ସହିତ ବ୍ୟବହାର କ୍ଷେତ୍ରରେ ଉଚ୍ଚ ନୈତିକ ଆଦର୍ଶର ଅନୁକରଣ କରିବା ପାଇଁ ଉଚ୍ଚ ଜାତିର ହିନ୍ଦୁମାନଙ୍କୁ ପ୍ରରୋଚିତ କରାଯାଇ ପାରିବ ତେବେ ହିନ୍ଦୁ ସମାଜରେ କୌଣସି ମୌଳିକ ପରିବର୍ତ୍ତନ ସଂଘଟିତ ନକରି ମଧ୍ୟ ହିନ୍ଦୁ ସମାଜକୁ ସହନଶୀଳ ଓ ଖୁସି କରାଯାଇ ପାରିବ । ଏହି ପ୍ରକାର ଆଦର୍ଶକୁ ମୁଁ ପୂର୍ଣ୍ଣତଃ ବିରୋଧ କରୁଛି । ସାଧାରଣ ଜୀବନ ଧାରାରେ ଯେଉଁ ସବର୍ଣ୍ଣ ଜାତିର ହିନ୍ଦୁମାନେ ଉଚ୍ଚ ସାମାଜିକ ଆଦର୍ଶ ପ୍ରତିଫଳିତ କରିବାକୁ ପ୍ରୟାସ କରନ୍ତି ମୁଁ ସେମାନଙ୍କୁ ସମ୍ମାନ କରେ । ଏହି ଲୋକମାନଙ୍କ ବ୍ୟତୀତ ବର୍ତ୍ତମାନର ସ୍ଥିତିଠାରୁ ଭାରତ ଏକ ଅପ୍ରୀତିକର ଓ ଅସୁଖକର ରାଷ୍ଟ୍ର ହୋଇଥାନ୍ତା । କିନ୍ତୁ ଏହା ସହିତ ସବର୍ଣ୍ଣ ହିନ୍ଦୁମାନଙ୍କର ବ୍ୟକ୍ତିଗତ ଚରିତ୍ରକୁ କେବଳ ଉନ୍ନତ କରାଇ ସେମାନଙ୍କୁ ଉତ୍ତମ ସ୍ୱଭାବ ବିଶିଷ୍ଟ ବ୍ୟକ୍ତିରେ ପରିଣତ କରାଇବାକୁ ଉଦ୍ୟମ କରିବା ଦ୍ୱାରା ମୋ ମତରେ ଶକ୍ତିର ଅପଚୟ ସହିତ ଏକ ବିଡ଼ମ୍ବନା ହେବ । ବ୍ୟକ୍ତିଗତ ଚରିତ୍ର କୌଣସି ଅସ୍ତ୍ର ନିର୍ମାଣକାରୀ

ବ୍ୟକ୍ତିକୁ ଉତ୍ତମ ବ୍ୟକ୍ତିରେ ପରିଣତ କରିବ କି ଯଦ୍ୱାରା ସେ ପ୍ରସ୍ତୁତ କରିଥିବା ବୋମା ଫୁଟିବ ନାହିଁ ବା ବିଷାକ୍ତ ବାଷ୍ପ କ୍ଷତି କରିବ ନାହିଁ ? ଯଦି ଏହା ସମ୍ଭବ ନୁହେଁ ତେବେ ଜାତିଆଣ ମନୋଭାବରେ ଆକ୍ରାନ୍ତ କୌଣସି ବ୍ୟକ୍ତିର ବ୍ୟକ୍ତିଗତ ଚରିତ୍ରକୁ କିପରି ଭଲ କରାଯାଇ ପାରିବ ଯଦ୍ୱାରା ସେ ସମାଜର ଅନ୍ୟାନ୍ୟ ସମସ୍ତ ବ୍ୟକ୍ତିଙ୍କୁ ନିଜର ବନ୍ଧୁ ବା ନିଜ ସହିତ ମାନ ବୋଲି ଭାବିବ ? ବରଂ ସତ କହିବାକୁ ଗଲେ ଜାତିଆଣ ମନୋଭାବ ଯୋଗୁଁ ସେ ସମାଜରେ ନିଜ ଜାତିର ଲୋକଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତଙ୍କୁ ଉଚ୍ଚ ନୀଚ ଭାବରେ ବିଚାର କରିଥାଏ । ସେ ସବୁ ଲୋକଙ୍କୁ ନିଜର ଆତ୍ମୀୟ ବା ନିଜ ସହିତ ସମାନ ବୋଲି ବିଚାର କରିବା ଆଶା କରାଯାଇ ପାରିବ ନାହିଁ । ବାସ୍ତବରେ ଜଣେ ହିନ୍ଦୁ ଅନ୍ୟ ଜାତିର ବ୍ୟକ୍ତିଙ୍କ ସହିତ ଏପରି ବ୍ୟବହାର କରିଥାଏ ସତେ ଯେପରି ସେମାନେ ବିଦେଶୀ । ଅନ୍ୟମାନଙ୍କ ଭିତରେ ବିଭେଦ କରିବା, ସେମାନଙ୍କୁ ପୀଡ଼ା ଦେବା ଓ ଠକିବା ପରି କାର୍ଯ୍ୟକୁ ବିନା ସଂକୋଚରେ ସେ କରିଥାଏ । ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ ତୁଳନାତ୍ମକ ଅର୍ଥରେ ଜଣେ ହିନ୍ଦୁ ଭଲ ବା ଖରାପ ହିନ୍ଦୁ ହୋଇପାରିବ, କିନ୍ତୁ ଏକ ଉତ୍ତମ ହିନ୍ଦୁ କେହି ହୋଇପାରିବ ନାହିଁ । ଏହାର ଅର୍ଥ ନୁହେଁ ଯେ ଲୋକଟିର ବ୍ୟକ୍ତିଗତ ଚରିତ୍ରରେ କିଛି ତ୍ରୁଟି ରହିଛି । ବାସ୍ତବରେ ଅନ୍ୟ ସହିତ ତା'ର ସମ୍ବନ୍ଧ ତ୍ରୁଟିପୂର୍ଣ୍ଣ ଭିତ୍ତି ଉପରେ ପର୍ଯ୍ୟବସିତ ହୋଇଛି । ଜଣେ ଭୃତ୍ୟ ପାଇଁ ତା'ର ପ୍ରଭୁ ଭଲ ବା ଖରାପ ହୋଇପାରେ, କିନ୍ତୁ ଜଣେ ଉତ୍ତମ ପ୍ରଭୁ ରହିବା ସମ୍ଭବ ନୁହେଁ । ଜଣେ ଉତ୍ତମ ମଣିଷ କେବେହେଲେ ପ୍ରଭୁ ହୋଇପାରିବ ନାହିଁ କିମ୍ବା ଜଣେ ପ୍ରଭୁ ଉତ୍ତମ ମଣିଷ ହୋଇପାରିବ ନାହିଁ । ଏହା ଉଚ୍ଚ ଜାତିର ହିନ୍ଦୁ ଓ ନୀଚ ଜାତିର ହିନ୍ଦୁମାନଙ୍କ ସମ୍ପର୍କ ପରିପ୍ରେକ୍ଷୀରେ କୁହାଯାଇ ପାରିବ । ନୀଚ ଜାତିର ଜଣେ ଲୋକ ପାଇଁ ଉଚ୍ଚ ଜାତିର କୌଣସି ବ୍ୟକ୍ତି ଅନ୍ୟ ଏକ ଉଚ୍ଚ ଜାତିର ବ୍ୟକ୍ତି ତୁଳନାରେ ଭଲ ବା ମନ୍ଦ ହୋଇପାରେ । କିନ୍ତୁ ଯେତେବେଳ ପର୍ଯ୍ୟନ୍ତ ଜଣେ ଲୋକ ନିଜକୁ ଅନ୍ୟ ଜାତିର ଲୋକମାନଙ୍କ ତୁଳନାରେ ଉଚ୍ଚ ବୋଲି ଭାବୁଥିବ ଓ ନିଜକୁ ଅନ୍ୟଠାରୁ ପୃଥକ୍ ମନେକରୁଥିବ ସେ ଉତ୍ତମ ବ୍ୟକ୍ତି ହୋଇପାରିବ ନାହିଁ । ସେହିପରି ଜଣେ ବ୍ୟକ୍ତି ଅନ୍ୟମାନଙ୍କୁ ତା'ଠାରୁ ଉଚ୍ଚ ବୋଲି ବିବେଚନା କରିବାର ଭାବନା ମଧ୍ୟ ଠିକ୍ ନୁହେଁ । ବର୍ଣ୍ଣ ବା ଜାତି ଉପରେ ଆଧାରିତ ସମାଜ ଏକ ତ୍ରୁଟିପୂର୍ଣ୍ଣ ସାମାଜିକ ସମ୍ବନ୍ଧ ଉପରେ

ପର୍ଯ୍ୟବସିତ ବୋଲି ମୁଁ ମୋର ଭାଷଣରେ ଯୁକ୍ତିଦ୍ୱାରା ଦର୍ଶାଇଛି । ମହାତ୍ମା ମୋର ଏହି ଯୁକ୍ତିକୁ ଖଣ୍ଡନ କରିବା ଆବଶ୍ୟକ । ଏହା କରିବା ପରିବର୍ତ୍ତେ ସେ କେବଳ ଚତୁର୍ବର୍ଣ୍ଣ ବ୍ୟବସ୍ଥା ଉପରେ ନିଜର ବିଶ୍ୱାସ ପ୍ରକଟ କରିଛନ୍ତି ଅଥଚ ଏହି ବିଶ୍ୱାସର ଆଧାର କ'ଣ ତାହା ଦର୍ଶାଇ ନାହାନ୍ତି ।

(୬)

ମହାତ୍ମା ବର୍ଣ୍ଣ ସମ୍ପର୍କରେ ଯାହା କହିଛନ୍ତି ତାହା ବ୍ୟବହାରରେ ପ୍ରଦର୍ଶନ କରିଛନ୍ତି କି ? କୌଣସି ଯୁକ୍ତିର ପ୍ରୟୋଗ ସାଧାରଣ ଭାବରେ ସତ୍ୟ ହେଲେ ସେ କ୍ଷେତ୍ରରେ କୌଣସି ବ୍ୟକ୍ତିଗତ ପ୍ରଶ୍ନ ଉଠାଇବା ଯଥାର୍ଥ ନୁହେଁ । କିନ୍ତୁ ଯେତେବେଳେ କୌଣସି ବ୍ୟକ୍ତି ଏକ ସିଦ୍ଧାନ୍ତର ଉପଦେଶ ଦେବା ସହିତ ତାହାକୁ ଏକ ଧାର୍ମିକ ବିଶ୍ୱାସ ଭାବରେ ଗ୍ରହଣ କରନ୍ତି ସେତେବେଳେ ଏପରି କୌତୂହଳ ହେବା ସ୍ୱାଭାବିକ ଯେ ସେ ସିଦ୍ଧାନ୍ତ ଭାବରେ ଯାହା ପ୍ରଚାର କରୁଛନ୍ତି ତାହା ଅନୁଯାୟୀ କେତେଦୂର ଅନୁରୂପ ବ୍ୟବହାର ପ୍ରଦର୍ଶନ କରୁଛନ୍ତି । ସେ ଏହା ବ୍ୟବହାରରେ ପ୍ରୟୋଗ କରି ନ ପାରିବା କ୍ଷେତ୍ରରେ ଦୁଇଟି ସମ୍ଭାବନା ରହିପାରେ । ହୁଏତ ସେହି ଆଦର୍ଶଟି ଏପରି ଉଚ୍ଚସ୍ତରର ଯେ ବାସ୍ତବରେ ତାହାର ପ୍ରୟୋଗ ଅତି କଠିନ ଅଟେ କିମ୍ବା ଏପରି ମଧ ହୋଇପାରେ ଜଣେ ସ୍ୱଭାବରେ ପ୍ରତାରକ ହୋଇଥିବାରୁ ତାହା ପ୍ରୟୋଗ କରନ୍ତି ନାହିଁ । ଏ ପ୍ରତ୍ୟେକ କ୍ଷେତ୍ରରେ କଥା ଓ କାର୍ଯ୍ୟରେ ଅସଙ୍ଗତି ଯୋଗୁଁ ଜଣଙ୍କର ଆଚରଣକୁ ମୂଲ୍ୟାୟନ କରିବାରେ ପ୍ରଶ୍ନ ଉଠିଥାଏ । ସୁତରାଂ ମହାତ୍ମା ବର୍ଣ୍ଣ ବ୍ୟବସ୍ଥାକୁ ସମର୍ଥନ କରୁଥିବାରୁ ସେହି ଆଦର୍ଶକୁ ନିଜ ଜୀବନ କ୍ଷେତ୍ରରେ କେତେଦୂର ପ୍ରୟୋଗ କରିଛନ୍ତି ତାହା ମୁଁ ଆଲୋଚନା କରୁଥିବାରୁ ମୋତେ ଦୋଷ ଦିଆଯିବା ଠିକ୍ ନୁହେଁ । ମହାତ୍ମା ଏକ ବଣିଆ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କର ପୂର୍ବ ପୁରୁଷ ନିଜ ଜାତିର ବ୍ୟବସାୟକୁ ଛାଡ଼ି ମନ୍ତ୍ରୀପଦ ଗ୍ରହଣ କରିଥିଲେ ଯାହା ବ୍ରାହ୍ମଣମାନଙ୍କର ବୃତ୍ତିଥିଲା । ମହାତ୍ମା ନିଜ ଜୀବନରେ ମହାତ୍ମା ଭାବରେ ପରିଚିତ ହେବା ପୂର୍ବରୁ ଯେତେବେଳେ କର୍ମ ସଂସ୍ଥାନ ନେଇ ସ୍ଥିର କଲେ ସେତେବେଳେ ସେ ଆଇନଜୀବୀ ହେବାକୁ ନିଷ୍ପତ୍ତି କଲେ । ପରେ ଆଇନ ବ୍ୟବସାୟ ପରିହାର କରି ସେ ଅଧା ସନ୍ଥ ହେଲେ ଓ ଅଧା ରାଜନୀତିଜ୍ଞ

ହେଲେ । ତାଙ୍କ ପୂର୍ବ ପୁରୁଷଙ୍କର ବୃତ୍ତିଗତ ବ୍ୟବସାୟକୁ ସେ କେବେ ସ୍ପର୍ଶ କରି ନାହାନ୍ତି । ତାଙ୍କର ସାନ ପୁଅ ଯେକି ତାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ, ଏକ ବୈଶ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ ସୁଦ୍ଧା ଜଣେ ବ୍ରାହ୍ମଣଙ୍କର ଝିଅକୁ ବିବାହ କଲେ ଓ ଗୋଟିଏ ସମ୍ବାଦପତ୍ରରେ ବଡ଼ ପଦବୀରେ ରହି କାର୍ଯ୍ୟ କରିବାକୁ ନିଷ୍ପତ୍ତି ନେଇଥିଲେ । ସେ ପୂର୍ବପୁରୁଷଙ୍କର ବୃତ୍ତି ପାଳନ କରି ନଥିବା ଯୋଗୁଁ ମହାତ୍ମା କେବେ ବି ତାଙ୍କ ପୁଅକୁ ନିନ୍ଦା କରିବା ଜଣାନାହିଁ । କୌଣସି ଆଦର୍ଶର ପ୍ରୟୋଗ କ୍ଷେତ୍ରରେ ମନ୍ଦ ବ୍ୟକ୍ତିଙ୍କର ଦୃଷ୍ଟାନ୍ତକୁ ଏଡ଼ାଇ ଦେଇ ହେବନାହିଁ । ସେ ଯଦି ଏହି ସିଦ୍ଧାନ୍ତକୁ ବାସ୍ତବରେ ନିଜ ଜୀବନରେ ପ୍ରୟୋଗ କରିବା କ୍ଷେତ୍ରରେ ଅସଫଳ ହୋଇଛନ୍ତି ତେବେ ଏଥିରୁ ଏହା ବୁଝାଯିବ ଯେ ଏହି ଆଦର୍ଶ ଅବାସ୍ତବ ଓ ମଣିଷର ସ୍ୱାଭାବିକ ପ୍ରବୃତ୍ତିର ପରିପନ୍ଥୀ । ଅଧ୍ୟାପକ କାର୍ଲାଇଲଙ୍କର ଛାତ୍ରମାନେ ଜାଣନ୍ତି ଯେ କାର୍ଲାଇଲ କୌଣସି ବିଷୟରେ ଚିନ୍ତା କରିବା ପୂର୍ବରୁ ସେ ସମ୍ପର୍କରେ ନାନା କଥା କହିଥାନ୍ତି । ଜାତି ସମ୍ପର୍କରେ ମହାତ୍ମାଙ୍କର ବକ୍ତବ୍ୟ କାର୍ଲାଇଲଙ୍କ ସଦୃଶ ହେବା ମୋତେ ଆଶ୍ଚର୍ଯ୍ୟଜନକ ମନେହୁଏ । ସେପରି ହୋଇ ନଥିଲେ ଏ ସମ୍ପର୍କରେ ଯେଉଁ ପ୍ରଶ୍ନଗୁଡ଼ିକ ମୋର ମନକୁ ଆସୁଛି ତାହା ତାଙ୍କ ଦୃଷ୍ଟିରୁ ବାଦ ପଡ଼ି ନଥାନ୍ତା । ଗୋଟିଏ ବୃତ୍ତିକୁ ଏକ ବଂଶାନୁଗତ ପେଶା ଭାବରେ କେତେବେଳେ ନିଆଯାଏ ଏବଂ ତାହାକୁ ସେହି ବଂଶର ପ୍ରତ୍ୟେକ ବ୍ୟକ୍ତି ଗ୍ରହଣ କରିବାକୁ ବାଧ୍ୟ କି ? ନିଜର ପୂର୍ବପୁରୁଷଙ୍କ ବୃତ୍ତିକୁ ଜଣେ ଅନୈତିକ ବୋଲି ଚିନ୍ତାକଲା ପରେ ସେହି ବୃତ୍ତିକୁ ନେଇ ଜୀବନ ଧାରଣ କରିବା ଉଚିତ କି ? ଯଦି ପ୍ରତ୍ୟେକ ବ୍ୟକ୍ତି ନିଜ ପୂର୍ବପୁରୁଷଙ୍କର ବୃତ୍ତିକୁ ଗ୍ରହଣ କରିବାକୁ ବାଧ୍ୟ ତେବେ ଜଣଙ୍କର ଜେଜେ ବାପା ଦଲାଲ ଥିଲେ ବୋଲି ସେ ମଧ୍ୟ ଦଲାଲ ରହିବା ଉଚିତ ଓ ଜଣଙ୍କର ଜେଜେ ମା' ଗଣିକା ଥିଲେ ବୋଲି ଜଣେ ଭଦ୍ର ମହିଳା ଗଣିକା ହେବା ଦରକାର । ନିଜ ସିଦ୍ଧାନ୍ତର ଏହି ତାର୍କିକ ପରିଣାମକୁ ମହାତ୍ମା ଗ୍ରହଣ କରିବାକୁ ପ୍ରସ୍ତୁତ କି ? 'ପ୍ରତ୍ୟେକ ବ୍ୟକ୍ତି ନିଜର ପୂର୍ବପୁରୁଷଙ୍କର ବୃତ୍ତିକୁ ଗ୍ରହଣ କରିବା ଉଚିତ' ତାଙ୍କର ଏହି ସିଦ୍ଧାନ୍ତଟି ମୋ ମତରେ ଅସମ୍ଭବ, ଅବାସ୍ତବ ଏବଂ ନୈତିକ ଦୃଷ୍ଟିକୋଣରୁ ସମର୍ଥନ ଯୋଗ୍ୟ ନୁହେଁ ।

---

(୭)

ଜଣେ ବ୍ରାହ୍ମଣ ଜୀବନସାରା ଜଣେ ବ୍ରାହ୍ମଣ ହୋଇ ରହିବାକୁ ମହାତ୍ମା ବହୁ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ବିଚାରକୁ ଛାଡ଼ିଦେଲେ ଅନେକ ବ୍ରାହ୍ମଣ ଅଛନ୍ତି ଯେଉଁମାନେ ତାଙ୍କର ସାରା ଜୀବନ ବ୍ରାହ୍ମଣ ହୋଇ ରହିବାକୁ ଚାହାନ୍ତି ନାହିଁ । ଯେଉଁ ବ୍ରାହ୍ମଣମାନେ ସେମାନଙ୍କର ପୂର୍ବପୁରୁଷଙ୍କର ବୃତ୍ତି ପୁରୋହିତ କାର୍ଯ୍ୟକୁ ଗ୍ରହଣ କରିଛନ୍ତି ସେମାନଙ୍କ ସମ୍ପର୍କରେ ଆମେ କ'ଣ କହିପାରିବା ? ବଂଶାନୁଗତ ପେଶା ଗ୍ରହଣ କରିବା କ୍ଷେତ୍ରରେ ସେମାନେ ଏହି ବୃତ୍ତିକୁ ମହନୀୟ ବୋଲି ଗ୍ରହଣ କରନ୍ତି କିମ୍ବା ଅର୍ଥ ଲାଭର ଉଦ୍ଦେଶ୍ୟ ରଖି ଏହାକୁ ଗ୍ରହଣ କରିଥାନ୍ତି ? ଏହି ପ୍ରଶ୍ନର ଅନୁସନ୍ଧାନ ପାଇଁ ମହାତ୍ମା ପ୍ରୟାସକରି ନାହାନ୍ତି । ସେ କେବଳ ଏତିକିରେ ସନ୍ତୁଷ୍ଟ ହୋଇଛନ୍ତି ଯେ "ଏପରି ଅନେକ ବାହ୍ମଣ ଅଛନ୍ତି ଯେଉଁମାନେ ଅନ୍ୟଠାରୁ ଦାନ ନେଇ ବଞ୍ଚନ୍ତି ଅଥଚ ନିଜର ଆଧ୍ୟାତ୍ମିକ ଜ୍ଞାନକୁ ଅନ୍ୟମାନଙ୍କୁ ମୁକ୍ତ ଭାବରେ ପ୍ରଦାନ କରନ୍ତି ।" ବଂଶାନୁକ୍ରମେ ବ୍ରାହ୍ମଣ ପୁରୋହିତମାନେ ଆଧ୍ୟାତ୍ମିକ ଜ୍ଞାନର ଅଧିକାରୀ ବୋଲି ମହାତ୍ମା ଧରି ନେଇଛନ୍ତି । କିନ୍ତୁ ବଂଶାନୁକ୍ରମିକ ବ୍ରାହ୍ମଣଙ୍କ ବୃତ୍ତି ସଂମ୍ପର୍କରେ ଏକ ଭିନ୍ନ ଚିତ୍ର ବି ମିଳିପାରିବ । ଜଣେ ବ୍ରାହ୍ମଣ ପ୍ରେମର ପ୍ରତୀକ ଈଶ୍ୱର ବିଷ୍ଣୁଙ୍କର ପୂଜକ ହୋଇପାରେ । ସେ ସଂହାରର ପ୍ରତୀକ ଈଶ୍ୱର ଶଙ୍କରଙ୍କର ପୂଜା କରିପାରେ । ସେ ବୁଦ୍ଧଗୟାରେ ରହି ମଣିଷ ଜାତିକୁ ପ୍ରେମର ବାର୍ତ୍ତା ଶୁଣାଇଥିବା ଓ ମଣିଷ ଜାତିର ଜଣେ ମହାନ ମାର୍ଗଦର୍ଶକ ହୋଇଥିବା ବୁଦ୍ଧଙ୍କର ବି ପୂଜା କରିପାରେ । ସେହିପରି ସେ ପ୍ରତ୍ୟହ ପଶୁବଳି ଖାଇ ରକ୍ତ ପିପାସା ମେଣ୍ଟାଉଥିବା କାଳୀଙ୍କର ପୂଜକ ମଧ୍ୟ ହୋଇପାରେ । କ୍ଷତ୍ରିୟ ଦେବତା( !) ରାମଙ୍କ ମନ୍ଦିରରେ ସେ ବି ପୂଜକ ହୋଇପାରେ । ଯେଉଁ ପର୍ଶୁରାମ କ୍ଷତ୍ରିୟମାନଙ୍କୁ ସଂହାର କରିବାକୁ ଅବତାର ନେଇଥିଲେ ତାଙ୍କ ମନ୍ଦିରରେ ସେ ପୂଜା କରିପାରେ । ସେ ସୃଷ୍ଟିର ସ୍ରଷ୍ଟା ବ୍ରହ୍ମାଙ୍କର ପୂଜକ ହୋଇପାରେ । ଈଶ୍ୱରଙ୍କୁ ଆଲ୍ଲା ନାମରେ ଡାକୁଥିବା ଓ ସୃଷ୍ଟିର କର୍ତ୍ତା ବ୍ରହ୍ମା ( !) ବୋଲି ସ୍ୱୀକାର କରୁ ନଥିବା ପୀରଙ୍କର ମଧ୍ୟ ସେ ପୂଜକ ହେଇପାରେ । ଏହି ଚିତ୍ର ଯେ ସତ୍ୟ ନୁହଁ ଏହା କେହି କହିବେ ନାହିଁ । ଯଦି ଏହା ବାସ୍ତବ ଚିତ୍ର ହୁଏ, ତେବେ ପୂଜକଙ୍କର ଭକ୍ତି ବିଷୟରେ କ'ଣ କୁହାଯିବ ? ବିଭିନ୍ନ ଦେବଦେବୀ ଯେଉଁମାନଙ୍କର ସ୍ୱରୂପ ଭିନ୍ନ ଓ ଏପରିକି ପରସ୍ପର ବିରୋଧୀ ସେ ସମସ୍ତଙ୍କ ପ୍ରତି କେହି ଆସ୍ଥାବାନ

ହୋଇ ସମସ୍ତଙ୍କର ଆରାଧନା କରିବା କିପରି ଯୁକ୍ତି ସଙ୍ଗତ ତାହା ବୁଝିହୁଏ ନାହିଁ । କୌଣସି ସତ୍ୟନିଷ୍ଠ ବ୍ୟକ୍ତି ସମସ୍ତ ଦେବତାଙ୍କ ପ୍ରତି ସମାନ ଭକ୍ତି ରଖିପାରିବ ନାହିଁ । ହିନ୍ଦୁମାନେ ସେମାନଙ୍କର ଏହି ଅଦ୍‌ଭୁତ ବ୍ୟବହାରକୁ ନିଜ ଧର୍ମର ଉଦାରତା ବୋଲି କହିଥାନ୍ତି ଓ ଏହା ତାଙ୍କ ଧର୍ମର ମହନୀୟତା ବୋଲି ବିଶ୍ୱାସ କରିଥାନ୍ତି । ଏହି ସରଳ ମତ ବିରୁଦ୍ଧରେ ଏହା କୁହାଯାଇପାରିବ ଯେ ଯାହାକୁ ସହନଶୀଳତା ଓ ଉଦାରତା କୁହାଯାଉଛି ତାହା ପ୍ରକୃତରେ ଉଦାସୀନତା ଓ ସିଦ୍ଧାନ୍ତ ନିରପେକ୍ଷତା ଅଟେ । ଏହି ଦୁଇଟି ଦୃଷ୍ଟିଭଙ୍ଗୀ ମଧ୍ୟରେ ବାହ୍ୟସ୍ତରରେ ପାର୍ଥକ୍ୟ ଆଣିବା ହୁଏତ କଷ୍ଟକର ହୋଇପାରେ । କିନ୍ତୁ ପ୍ରକୃତ କ୍ଷେତ୍ରରେ ଏହି ଦୃଷ୍ଟିଭଙ୍ଗୀ ପରସ୍ପରଠାରୁ ପୃଥକ୍ । ଜଣେ ସତର୍କତାର ସହ ଉଭୟକୁ ପର୍ଯ୍ୟାଲୋଚନା କଲେ ପାର୍ଥକ୍ୟ ଜାଣିପାରିବ । ଜଣେ ବ୍ୟକ୍ତି ବହୁ ଦେବଦେବୀଙ୍କୁ ନିଜର ସମ୍ମାନ ପ୍ରଦର୍ଶନ କରିବା ତାଙ୍କର ସହନଶୀଳତାର ଦୃଷ୍ଟାନ୍ତ ଭାବରେ ନିଆଯାଇପାରେ । କିନ୍ତୁ ଏହାକୁ ଏହି ଅବସରରେ କପଟତାର ଦୃଷ୍ଟାନ୍ତ ଭାବରେ ନିଆଯିବ ନାହିଁକି ? ମୋ ମତରେ ଏହି ସହନଶୀଳତା ହେଉଛି କେବଳ କପଟତା । ଏହି ମତକୁ ପ୍ରତିଷ୍ଠା କରାଗଲେ ଜଣେ ଏହି ପ୍ରଶ୍ନର ଅବତାରଣା କରିବ ଯେ ନିଜର ସ୍ୱାର୍ଥ ସାଧନ ପାଇଁ ଯେ କୌଣସି ଦେବଦେବୀଙ୍କୁ ପୂଜା କରିବାକୁ ପ୍ରସ୍ତୁତ ହୁଏ ଓ ପୂଜା କରେ । ସେହି ବ୍ୟକ୍ତିଙ୍କ ପାଖରେ କ'ଣ ଆଧ୍ୟାତ୍ମିକ ସାମଥ୍ୟ ରହିଛି ? ଏହି ପ୍ରକାର ବ୍ୟକ୍ତି ଯେ ଆଧ୍ୟାତ୍ମିକ ସାମର୍ଥ୍ୟହୀନ ତା ନୁହେଁ, ଗୋଟିଏ ଉଚ୍ଚସ୍ତରର ବୃତ୍ତି ପୂଜାରାଧନାକୁ ସ୍ୱାର୍ଥ ପାଇଁ ଗ୍ରହଣ କରିବା ଏକ ବେଶ୍ୟାବୃତ୍ତି ସହ ସମାନ ଅଟେ । ନିଜର ସ୍ପଷ୍ଟ ବିଶ୍ୱାସ ଓ ଆତ୍ମପ୍ରତ୍ୟୟ ନ ଥାଇ ବଂଶାନୁକ୍ରମିକ ଭାବରେ ଏକ ବୃତ୍ତିକୁ ଯାନ୍ତ୍ରିକ ଭାବରେ ଗ୍ରହଣ କରିବା ଦ୍ୱାରା ଜଣେ ବ୍ୟକ୍ତି ଯୋଗ୍ୟତା ପରିବର୍ତ୍ତେ କେବଳ ପରମ୍ପରା କ୍ରମେ ଉତ୍ତରାଧିକାରୀ ହୋଇଥାନ୍ତି । ତଦ୍ୱାରା କୌଣସି ମହନୀୟ ଗୁଣର ରକ୍ଷା ହୁଏନାହିଁ ବରଂଏହା ଏକ ବ୍ୟଭିଚାରରେ ପରିଣତ ହୁଏ ।

(୮)

ପ୍ରତ୍ୟେକ ବ୍ୟକ୍ତି ନିଜର ବଂଶାନୁଗତ ବୃତ୍ତି ଗ୍ରହଣ କରିବା ଦରକାର – ଏହି ସିଦ୍ଧାନ୍ତ ପ୍ରତି ମହାତ୍ମା କାହିଁକି ଏପରି ଗୁରୁତ୍ୱ ଦେଉଛନ୍ତି ? ସେ କୌଣସି ଜାଗାରେ ଏହାର କାରଣ ଉଲ୍ଲେଖ କରିନାହାନ୍ତି । ଯଦିବା ଏହାର କାରଣକୁ ସେ ବ୍ୟାଖ୍ୟା କରିବା

ପାଇଁ ଚେଷ୍ଟା କରି ନାହାନ୍ତି ତଥାପି ଏହାର କାରଣ ନିଶ୍ଚୟ ରହିଛି । କିଛିବର୍ଷ ତଳେ "ୟଙ୍ଗ ଇଣ୍ଡିଆ"ରେ 'ଜାତି ବନାମ ଶ୍ରେଣୀ' ଶିରୋନାମାରେ ଏକ ପ୍ରବନ୍ଧ ଲେଖି ସେ ଯୁକ୍ତି କରିଥିଲେ ଯେ ଶ୍ରେଣୀ ବ୍ୟବସ୍ଥା ଅପେକ୍ଷା' ଜାତି ବ୍ୟବସ୍ଥା ଉନ୍ନତ ଅଟେ । କାରଣ ସାମାଜିକ ସ୍ଥିରତା କ୍ଷେତ୍ରରେ ଜାତିପ୍ରଥା ସମ୍ଭାବ୍ୟ ସମନ୍ୱୟ ଆଣିଥାଏ । ଯଦି ଜଣେ ନିଜର ବଂଶାନୁକ୍ରମିକ ବୃତ୍ତିକୁ ଗ୍ରହଣ କରିବା ଉଚିତ ବୋଲି ମହାତ୍ମାଙ୍କ ସିଦ୍ଧାନ୍ତ ପଶ୍ଚାତରେ ଏହାହିଁ କାରଣ ହୁଏ, ତେବେ ସାମାଜିକ ଜୀବନ ସମ୍ବନ୍ଧରେ ସେ ଏକ ଭ୍ରମାତ୍ମକ ବିଚାର ଦେଇଛନ୍ତି ବୋଲି କହିବାକୁ ହେବ । ପ୍ରତ୍ୟେକ ବ୍ୟକ୍ତି ସାମାଜିକ ସ୍ଥିରତା ଚାହେଁ । ଫଳରେ ବ୍ୟକ୍ତି ଓ ଶ୍ରେଣୀ ଭିତରେ ସମ୍ପର୍କ କ୍ଷେତ୍ରରେ କେତେକ ବ୍ୟବସ୍ଥାପନ ଆବଶ୍ୟକ ଯଦ୍ୱାରା କି ସମାଜରେ ସ୍ଥିରତା ରହିପାରିବ । କିନ୍ତୁ ମୋ ବିଚାରରେ ଏ କ୍ଷେତ୍ରରେ କୌଣସି ବ୍ୟକ୍ତି ଦୁଇଟି କଥା ଚାହିଁବେ ନାହିଁ । ପ୍ରଥମତଃ ସାମାଜିକ ସମ୍ପର୍କ କ୍ଷେତ୍ରରେ ଏକ ଅପରିବର୍ତ୍ତନୀୟ, ପରିବର୍ତ୍ତନ ବିରୋଧୀ ଓ ସବୁଦିନ ପାଇଁ ନିର୍ଦ୍ଦିଷ୍ଟ ସମ୍ପର୍କକୁ କେହି ଗ୍ରହଣ କରିବେ ନାହିଁ । ସ୍ଥିରତା ଦରକାର, କିନ୍ତୁ ପରିବର୍ତ୍ତନ ଯେତେବେଳେ ଅବଶ୍ୟମ୍ଭାବୀ ସେ ସ୍ଥାନରେ ସ୍ଥିରତା ବାଞ୍ଛନୀୟ ନୁହେଁ । ଦ୍ୱିତୀୟରେ ସାମାଜିକ ନ୍ୟାୟକୁ ବଳିଦେଇ କେବଳ ସମନ୍ୱୟ କେହି ଚାହିଁବ ନାହିଁ । ଅର୍ଥାତ୍ ସାମାଜିକ ନ୍ୟାୟ ପ୍ରତିବଦଳରେ ସ୍ଥିରତା ସ୍ଥାପିତ ହେବା ଠିକ୍ ନୁହେଁ । ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ଜାତିଭିତ୍ତିକ ସମନ୍ୱୟ - ଯେଉଁଥିରେ ପ୍ରତ୍ୟେକ ବ୍ୟକ୍ତି ନିଜର ବଂଶାନୁକ୍ରମିକ ବୃତ୍ତି ନେବାକୁ ବାଧ୍ୟ ହୁଏ – ଏହି ଦୁଇଟି ମନ୍ଦ ପରିଣାମକୁ ପରିହାର କରିବାକୁ ସମର୍ଥ କି ? ମୁଁ ସ୍ଥିର ନିଶ୍ଚିତ ଯେ ଏହା ଏହି କୁପରିଣାମକୁ ପ୍ରତିହତ କରିପାରେ ନାହିଁ । ସୁତରାଂ ଏହି ବ୍ୟବସ୍ଥା ସାମାଜିକ ସମନ୍ୱୟ କ୍ଷେତ୍ରରେ ଏକ ଉତ୍ତମ ବ୍ୟବସ୍ଥା ହେବା ପରିବର୍ତ୍ତେ ଏହା ଯେ ସବୁଠାରୁ ଏକ ମନ୍ଦ ବ୍ୟବସ୍ଥା ଏଥିରେ ମୋର ସନ୍ଦେହ ନାହିଁ । ବିଶେଷତଃ ସାମାଜିକ ସମନ୍ୱୟ କ୍ଷେତ୍ରରେ ପରିବର୍ତ୍ତନଶୀଳତା ଓ ସାମାଜିକ ନ୍ୟାୟକୁ ବିରୋଧ କରୁଥିବାରୁ ଏହି ବ୍ୟବସ୍ଥା ହାନିକର ଅଟେ ।

(୯)

କେତେକ ଭାବିପାରନ୍ତି ଯେ ମହାତ୍ମା ଜାତି ପରିବର୍ତ୍ତେ ଏବେ ବର୍ଣ୍ଣ ବ୍ୟବସ୍ଥାରେ ବିଶ୍ୱାସ କରୁଥିବାରୁ ତାଙ୍କ ବିଚାର ସ୍ତରରେ ଅନେକ ପରିବର୍ତ୍ତନ ହୋଇଛି । ଏକଥା ସତ୍ୟ ଯେ ଏକଦା ମହାତ୍ମା ଏକ ମୌଳବାଦୀ ସନାତନୀ ହିନ୍ଦୁ ଥିଲେ । ସେ ବେଦ,

ଉପନିଷଦ, ପୁରାଣ, ସମସ୍ତ ଧର୍ମଗ୍ରନ୍ଥ, ଯାହା ହିନ୍ଦୁଧର୍ମର ଅନ୍ତର୍ଗତ ସେ ସବୁକୁ ବିଶ୍ୱାସ କରିବା ସହ ଅବତାରବାଦ ଓ ପୁନର୍ଜନ୍ମରେ ମଧ୍ୟ ବିଶ୍ୱାସ କରୁଥିଲେ । ସେ ଜାତି ପ୍ରଥାରେ ବିଶ୍ୱାସ କରୁଥିଲେ ଏବଂ ଏହାକୁ ଜଣେ ରକ୍ଷଣଶୀଳ ବ୍ୟକ୍ତି ଭାବରେ ଯୁକ୍ତି ଦେଇ ସମର୍ଥନ କରୁଥିଲେ । ଜାତି ଜାତି ଭିତରେ ଏକତ୍ର ଖିଆପିଆ, ଆନ୍ତର୍ଜାତି ବିବାହକୁ ସେ ପ୍ରତ୍ୟାଖ୍ୟାନ କରିବା ସହ ଯୁକ୍ତି କରୁଥିଲେ ଯେ ଏକତ୍ର ଭୋଜନରୁ ନିବୃତ୍ତ ରହିବା ଦ୍ୱାରା ଆତ୍ମଶକ୍ତି ଜାଗ୍ରତ ହୋଇଥାଏ ଏବଂ ସାମାଜିକ ମୂଲ୍ୟଚୟ ସ୍ଥିର ରହିଥାଏ । ସୁଖର କଥା ସେ ତାଙ୍କର ଏହି ଧାର୍ମିକ ଅର୍ଥଶୂନ୍ୟ ଭାବନାକୁ ପରିହାର କରିଛନ୍ତି ଓ ଏପରିକି ଆଧ୍ୟାତ୍ମିକ ଓ ରାଷ୍ଟ୍ରୀୟ ପ୍ରଗତି କ୍ଷେତ୍ରରେ ଜାତିପ୍ରଥା ପ୍ରତିବନ୍ଧକ ବୋଲି ମତପୋଷଣ କରିଛନ୍ତି । ହୁଏତ ତାଙ୍କ ପୁଅର ତାଙ୍କ ଜାତି ବାହାରେ ବିବାହ ଘଟଣା ତାଙ୍କର ଦୃଷ୍ଟିଭଙ୍ଗୀକୁ ପରିବର୍ତ୍ତନ କରିବାରେ ସହାୟକ ହୋଇଛି । କିନ୍ତୁ ବାସ୍ତବପକ୍ଷେ ମହାତ୍ମାଙ୍କର ଦୃଷ୍ଟିରେ କିଛି ପରିବର୍ତ୍ତନ ହୋଇଛି କି ? ମହାତ୍ମା ଯେଉଁ ବର୍ଣ୍ଣ ବ୍ୟବସ୍ଥାକୁ ସମର୍ଥନ କରୁଛନ୍ତି ତା'ର ପ୍ରକୃତ ସ୍ୱରୂପ କ'ଣ ? ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଓ ତାଙ୍କର ଆର୍ଯ୍ୟ ସମାଜୀ ଶିଷ୍ୟଗଣ ଯେଉଁ ବୈଦିକ ବର୍ଣ୍ଣ ବ୍ୟବସ୍ଥାର ପ୍ରଚାର କରୁଛନ୍ତି ତାହା ସହିତ ସମାନ କି ? ବୈଦିକ ବର୍ଣ୍ଣ ବ୍ୟବସ୍ଥାର ମୌଳିକ ତାତ୍ପର୍ଯ୍ୟ ହେଉଛି ପ୍ରତ୍ୟେକ ବ୍ୟକ୍ତି ତା'ର ସ୍ୱଭାବ ଓ ଅଭିରୁଚି ଅନୁଯାୟୀ ଏକ ବୃତ୍ତି ଗ୍ରହଣ କରିବା ଆବଶ୍ୟକ । କିନ୍ତୁ ମହାତ୍ମଙ୍କର ବର୍ଣ୍ଣ ବ୍ୟବସ୍ଥାର ଧାରଣା ହେଉଛି ବ୍ୟକ୍ତିର ପ୍ରାକୃତିକ ଅଭିରୁଚି ପରିବର୍ତ୍ତେ ସେ ତା'ର ବଂଶାନୁଗତ ବୃତ୍ତି ଗ୍ରହଣ କରିବା ଦରକାର । ମହାତ୍ମା ଜାତି ଓ ବର୍ଣ୍ଣ ମଧ୍ୟରେ କ'ଣ ପାର୍ଥକ୍ୟ ଆଣୁଛନ୍ତି ? ମୋ ବିଚାରରେ କୌଣସି ପାର୍ଥକ୍ୟ ସେ ଆଣୁ ନାହାନ୍ତି । ତାଙ୍କର ବ୍ୟାଖ୍ୟାରୁ ବର୍ଣ୍ଣ ହେଉଛି ଜାତିର ଅନ୍ୟ ଏକ ନାମ, କାରଣ ମୂଳତଃ ଉଭୟ ସମାନ । ଉଭୟ ବଂଶାନୁଗତବୃତ୍ତି ଗ୍ରହଣ କରିବା ପାଇଁ ଉଦ୍ଦିଷ୍ଟ । ସୁତରାଂ ମହାତ୍ମାଙ୍କର ବିଚାରରେ ପରିବର୍ତ୍ତନ ପରିବର୍ତ୍ତେ ପଶ୍ଚାତଗତି ହୋଇଛି । ବୈଦିକ ବର୍ଣ୍ଣ ବ୍ୟବସ୍ଥାକୁ ସେ ଯେପରି ବ୍ୟାଖ୍ୟା କରିଛନ୍ତି ତାହା ଏହି ଆଦର୍ଶକୁ କେବଳ ହାସ୍ୟାସ୍ପଦ କରିଛି । ଯଦିବି ମୁଁ ବୈଦିକ ବର୍ଣ୍ଣ ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରେ ଓ ଏ ସଂକ୍ରାନ୍ତରେ ମୋର ଭାଷଣରେ ମୁଁ ଆଲୋଚନା କରିଛି ତଥାପି ମୁଁ ଏହା ସ୍ୱୀକାର କରୁଛି ଯେ ସ୍ୱାମୀ ଦୟାନନ୍ଦ ଓ ତାଙ୍କର ଶିଷ୍ୟମାନେ ବୈଦିକ ସିଦ୍ଧାନ୍ତ ବର୍ଣ୍ଣ ବ୍ୟବସ୍ଥାର ଯେଉଁ ବ୍ୟାଖ୍ୟା ଦେଇଛନ୍ତି ତାହା ଯୁକ୍ତିସଙ୍ଗତ ଓ କ୍ଷତିକାରକ ନୁହେଁ । ଅନ୍ତତଃ ଜନ୍ମକୁ ଆଧାର ଭାବରେ

ନେଇ ଏହା ବ୍ୟକ୍ତିର ସାମାଜିକ ସ୍ଥିତିକୁ ସ୍ୱୀକାର କରେ ନାହିଁ । ବରଂ ଗୁଣ ବା ସାମର୍ଥ୍ୟ ମାନଦଣ୍ଡରେ ଏହା ବ୍ୟକ୍ତିର ସାମାଜିକ ଭୂମିକାକୁ ଗୁରୁତ୍ୱ ଦେଇଥାଏ । ମହାତ୍ମାଙ୍କର ବର୍ଣ୍ଣ ସଂକ୍ରାନ୍ତୀୟ ବ୍ୟାଖ୍ୟା ବୈଦିକ ବର୍ଣ୍ଣ ବ୍ୟବସ୍ଥାକୁ ଅର୍ଥଶୂନ୍ୟ ଓ ଏପରିକି ଘୃଣିତ କରିଛି । ବର୍ଣ୍ଣ ଏବଂ ଜାତି ଦୁଇଟି ପୃଥକ୍ ପ୍ରତ୍ୟୟ ଅଟେ । ପ୍ରତ୍ୟେକ ବ୍ୟକ୍ତିର ଗୁଣ ଓ ସାମର୍ଥ୍ୟ ଅନୁଯାୟୀ ତାର ବର୍ଣ୍ଣ ନିର୍ଣ୍ଣିତ ହେଉଥିବା ବେଳେ ଜନ୍ମଗତ ଭିତ୍ତି ଅନୁଯାୟୀ ଜଣଙ୍କର ଜାତି ନିରୂପିତ ହୋଇଥାଏ । ମୋଟ ଉପରେ କହିଲେ ବର୍ଣ୍ଣ ଗୁଣ ଆଧାରିତ ହୋଇଥିବା ବେଳେ ଜାତି ଜନ୍ମ ଆଧାରିତ ସିଦ୍ଧାନ୍ତ ଉପରେ ପର୍ଯ୍ୟବସିତ । ଚକ୍ ଯେପରି ଛେନା ଠାରୁ ପୃଥକ୍ ଜାତି ଓ ବର୍ଣ୍ଣ ଠିକ୍ ସେହିପରି ପରସ୍ପରଠାରୁ ଅଲଗା । ବାସ୍ତବରେ ଏ ଉଭୟ ସିଦ୍ଧାନ୍ତ ଭିତରେ ବିରୋଧ ରହିଛି । ପ୍ରତ୍ୟେକ ବ୍ୟକ୍ତି ଯେହେତୁ ନିଜର ବଂଶାନୁଗତ ବୃତ୍ତିକୁ ଗ୍ରହଣ କରିବା ଉଚିତ ବୋଲି ମହାତ୍ମା ବିଶ୍ୱାସ କରନ୍ତି ତେଣୁ ସେ ପ୍ରକୃତରେ ଜାତି ବ୍ୟବସ୍ଥାକୁ ଗ୍ରହଣ କରୁଛନ୍ତି । ଏହାକୁ ବର୍ଣ୍ଣ ବ୍ୟବସ୍ଥା କହିବା ଦ୍ୱାରା ସେ ଯେ କେବଳ ଶବ୍ଦ ବ୍ୟବହାରରେ ତ୍ରୁଟି କରୁଛନ୍ତି ତା ନୁହଁ ବରଂ ବିଷୟଟିକୁ ଜଟିଳ କରି ବିଭ୍ରାନ୍ତ କରୁଛନ୍ତି । ବର୍ଣ୍ଣ କ'ଣ, ଜାତି କ'ଣ ଏବଂ ହିନ୍ଦୁଧର୍ମର ସଂରକ୍ଷଣ କ୍ଷେତ୍ରରେ କାହାର ଆବଶ୍ୟକତା ରହିଛି ସେ ସମ୍ବନ୍ଧରେ ମହାତ୍ମାଙ୍କର ସ୍ପଷ୍ଟ ଧାରଣା ନ ଥିବାରୁ ସେ ଏପରି ବିଭ୍ରାନ୍ତି ସୃଷ୍ଟି କରୁଛନ୍ତି । ଜାତି ବ୍ୟବସ୍ଥା ହିନ୍ଦୁ ଧର୍ମର ସାରତତ୍ତ୍ୱ ନୁହଁ ବୋଲି ସେ କହିଛନ୍ତି ଓ ମୋର ବିଶ୍ୱାସ ସେ ତାଙ୍କର ଏହି ମତକୁ ପରିବର୍ତ୍ତନ କରିବା ପାଇଁ ସେପରି କୌଣସି ଅଲୌକିକ କାରଣ ଦର୍ଶାଇବେ ନାହିଁ । ଏଠାରେ ଏହି ପ୍ରଶ୍ନଟି ଉଠୁଛି – ସେ ତେବେ ବର୍ଣ୍ଣ ବ୍ୟବସ୍ଥାକୁ ହିନ୍ଦୁଧର୍ମର ସାରତତ୍ତ୍ୱ ଭାବରେ ନେବେ କି ? ଏ କ୍ଷେତ୍ରରେ ଜଣେ ସ୍ପଷ୍ଟ ଉତ୍ତର ଦେଇପାରିବ ନାହିଁ । "ଡ. ଆମ୍ବେଦକରଙ୍କର ଅଭିଯୋଗ" ଶୀର୍ଷକ ତାଙ୍କର ଲେଖାକୁ ପଢ଼ିଥିବା ପାଠକମାନେ ଏ କ୍ଷେତ୍ରରେ ଏକ ନାସ୍ତିସୂଚକ ଉତ୍ତର ଦେବେ । ସେହି ପ୍ରବନ୍ଧରେ ବର୍ଣ୍ଣ ବ୍ୟବସ୍ଥା ହିନ୍ଦୁ ସଂପ୍ରଦାୟର ଯେ ସାରତତ୍ତ୍ୱ ଏହା ମହାତ୍ମା ଦର୍ଶାଇ ନାହାନ୍ତି । ବରଂ ବର୍ଣ୍ଣ ବ୍ୟବସ୍ଥାକୁ ହିନ୍ଦୁଧର୍ମର ସାରତତ୍ତ୍ୱ ଭାବେ ନେବା ପରିବର୍ତ୍ତେ ସେ ହିନ୍ଦୁଧର୍ମର ସାରତତ୍ତ୍ୱ ନିର୍ଣ୍ଣୟ କରିବାକୁ ଯାଇ ଏହା ଘୋଷଣା କରିଛନ୍ତି ଯେ "ଈଶ୍ୱର ଏକ ଓ ସତ୍ୟ ତଥା ନିର୍ଭିକତା ରୂପରେ ଅହିଂସା ମାନବ ପରିବାରର ମୌଳିକ ନିୟମ ।" କିନ୍ତୁ ଶ୍ରୀ ସନ୍ତରାମଙ୍କର ଉତ୍ତରରେ ମହାତ୍ମା ଯେଉଁ ମତ ବ୍ୟକ୍ତ କରିଛନ୍ତି ସେଥିରୁ ବର୍ଣ୍ଣ ବ୍ୟବସ୍ଥା ଯେ ହିନ୍ଦୁ ଧର୍ମର ସାରତତ୍ତ୍ୱ ଏହି

ଧାରଣା ପାଠକମାନେ ଲାଭ କରିବେ । ସେହି ଲେଖାରେ ସେ କହିଛନ୍ତି "ଜଣେ ମୁସଲମାନ ଯଦି କୋରାନକୁ ପ୍ରତ୍ୟାଖ୍ୟାନ କରେ କିମ୍ବା ଜଣେ ଖ୍ରୀଷ୍ଟିୟାନ ବାଇବେଲକୁ ଅସ୍ୱୀକାର କରେ ତେବେ ସେ ଯଥାକ୍ରମେ ମୁସଲମାନ ଓ ଖ୍ରୀଷ୍ଟିୟାନ ହୋଇ ରହିପାରିବେ କି ? ଯଦି 'ଜାତି' ଓ 'ବର୍ଣ୍ଣ' ପରସ୍ପର ପାଇଁ ବ୍ୟବହୃତ ହୁଏ ଏବଂ ଯଦି ବର୍ଣ୍ଣ ବ୍ୟବସ୍ଥା ଶାସ୍ତ୍ରର ଅବିଚ୍ଛେଦ୍ୟ ଅଙ୍ଗ ଅଟେ ଯାହା ହିନ୍ଦୁଧର୍ମର ସଂଜ୍ଞା ନିରୂପଣ କରେ, ତେବେ ମୁଁ ବୁଝିପାରୁନାହିଁ ଜଣେ ବ୍ୟକ୍ତି ଜାତି ଅର୍ଥାତ୍ ବର୍ଣ୍ଣକୁ ପ୍ରତ୍ୟାଖ୍ୟାନ କରି ନିଜକୁ କିପରି ହିନ୍ଦୁ କହିପାରିବେ ? ମହାତ୍ମାଙ୍କର ବକ୍ତବ୍ୟ ଏପରି ଗୋଳମାଳିଆ କାହିଁକି ? ସେ କାହାକୁ ସନ୍ତୁଷ୍ଟ କରିବା ପାଇଁ ଚାହାନ୍ତି ? ସତ୍ୟକୁ ଜାଣିବା କ୍ଷେତ୍ରରେ ସନ୍ଥ ଅସଫଳ ହୋଇଛନ୍ତି କି ? କିମ୍ବା ରାଜନୈତିକ ଜୀବନ ସନ୍ଥ ଜୀବନର ପଥ ରୁଦ୍ଧ କରୁଛି କି ? ମହାତ୍ମା ଯେଉଁଥିପାଇଁ ଏପରି ବିଭ୍ରାନ୍ତିକର ସ୍ଥିତିକୁ ଆସୁଛନ୍ତି ତାହାର ଦୁଇଟି ସମ୍ଭାବ୍ୟ କାରଣ ମୁଁ ଦେଖୁଛି । ପ୍ରଥମଟି ମହାତ୍ମାଙ୍କର ସ୍ୱଭାବରେ ନିହିତ । ସେ ଅଧିକାଂଶ କଥାକୁ ଶିଶୁର ସରଳତା ନେଇ ବୁଝିବାକୁ ଚେଷ୍ଟା କରିବା ଭିତରେ ଶିଶୁଟି ଅକ୍ଳେଶରେ ଭୁଲିଗଲା ପରି ମହାତ୍ମା ଆତ୍ମଭ୍ରାନ୍ତି ଭିତରେ ପଡୁଛନ୍ତି । ଗୋଟିଏ ଶିଶୁ ଯେପରି ଯେ କୌଣସି କଥାକୁ ସରଳ ଭାବରେ ବିଶ୍ୱାସ କରିଯାଏ ମହାତ୍ମା ସେହିଭଳି ଯାହା ବିଶ୍ୱାସ କରିବାକୁ ଚାହୁଁଛନ୍ତି ସେଥିରେ ବିଶ୍ୱାସ କରୁଛନ୍ତି । ଅତୀତରେ ମହାତ୍ମା ଜାତିପ୍ରଥାରେ ବିଶ୍ୱାସ କରୁଥିଲେ ମଧ ପରେ ଯେପରି ଏହି ବିଶ୍ୱାସକୁ ପରିହାର କଲେ ସେହିପରି ଭବିଷ୍ୟତରେ ସେ ଯେ ବର୍ଣ୍ଣ ବ୍ୟବସ୍ଥାକୁ ପରିହାର କରିବେ ଏଥିପାଇଁ ଆମକୁ ଅପେକ୍ଷା କରିବାକୁ ହେବ । ତାଙ୍କ ବିଭ୍ରାନ୍ତିର ଦ୍ୱିତୀୟ କାରଣଟି ମହାତ୍ମାଙ୍କର ଦୁଇଟି ଭୂମିକାରେ ଅଭିନୟ ଭିତରେ ନିହିତ । ସେ ମହାତ୍ମାର ଭୂମିକାରେ ଓ ରାଜନୀତିଜ୍ଞ ଭୂମିକାରେ ଅବତୀର୍ଣ୍ଣ ହେଉଛନ୍ତି । ମହାତ୍ମା ଭାବରେ ରାଜନୀତିକୁ ଆଧ୍ୟାତ୍ମିକ ରୂପ ଦେବାକୁ ସେ ହୁଏତ ପ୍ରୟାସ କରୁଛନ୍ତି । ସେ ଏଥିରେ ସଫଳ ହୁଅନ୍ତୁ ବା ନ ହୁଅନ୍ତୁ ରାଜନୀତି ତାଙ୍କ ବିଚାରକୁ ବାଣିଜ୍ୟିକ ବସ୍ତୁରେ ପରିଣତ କରିଦେଇଛି । ଜଣେ ରାଜନୀତିଜ୍ଞ ଏହା ଜାଣିବା ଆବଶ୍ୟକ ଯେ ସମାଜପୂର୍ଣ୍ଣ ସତ୍ୟକୁ ସହ୍ୟ କରେ ନାହିଁ, ରାଜନୀତି କ୍ଷେତ୍ରରେ ଜଣେ ପୂର୍ଣ୍ଣ ସତ୍ୟକୁ ପ୍ରକାଶ କରେନାହିଁ ଓ ଜଣେ ଯଦି ଏହା କରେ ତେବେ ଏହା ତାଙ୍କର ରାଜନୀତି ପାଇଁ କ୍ଷତିକାରକ ହୁଏ । ମହାତ୍ମା ସର୍ବଦା ଜାତି ଓ ବର୍ଣ୍ଣକୁ ସମର୍ଥନ କରୁଥିବାରୁ ସମ୍ଭବତଃ ଏହା କୁହାଯିବ ଯେ ସେ ଏହାକୁ ବିରୋଧ କରିବା କ୍ଷେତ୍ରରେ

ରାଜନୀତିରେ ନିଜର କ୍ଷତି ହେବାର ଆଶଙ୍କା କରୁଛନ୍ତି । ତାଙ୍କ ବିଭ୍ରାନ୍ତିର କାରଣ ଯାହା ହେଉନା କାହିଁକି ଏହା ତାଙ୍କୁ କହିବା ଠିକ୍ ହେବ ଯେ ସେ ନିଜକୁ ଠକିବା ସହିତ ବର୍ଣ୍ଣ ନାମରେ ଜାତିର ପ୍ରସାର କରିବା ଦ୍ୱାରା ଜନଗଣଙ୍କୁ ମଧ୍ୟ ପ୍ରତାରଣା କରୁଛନ୍ତି ।

(୧୦)

ମହାତ୍ମାଙ୍କ ମତରେ ହିନ୍ଦୁମାନଙ୍କର ଓ ହିନ୍ଦୁଧର୍ମର ମୂଲ୍ୟାୟନ କ୍ଷେତ୍ରରେ ମୁଁ ଯେଉଁ ମାନଦଣ୍ଡ ଦେଇଛି ତାହା ଏପରି କଠିନ ଯେ ସେହି ମାନଦଣ୍ଡରେ ଯେକୌଣସି ଧର୍ମକୁ ମୂଲ୍ୟାୟନ କଲେ ତାହା ମଧ୍ୟ ତ୍ରୁଟିପୂର୍ଣ୍ଣ ହେବା ସହ ଅସଫଳ ହେବ । ମୋର ମାନଦଣ୍ଡ କଠିନ ବୋଲି ତାଙ୍କର ଅଭିଯୋଗ ହୁଏତ ସତ୍ୟ ହୋଇପାରେ । କୌଣସି ମାନଦଣ୍ଡ କଠିନ କି ସରଳ ତାହା ପ୍ରଶ୍ନ ନୁହଁ, କିନ୍ତୁ ପ୍ରଶ୍ନ ହେଉଛି ସେହି ମାନଦଣ୍ଡ କେତେଦୂର ଯଥାର୍ଥ । କୌଣସି ଜନଗଣ ଏବଂ ସେମାନଙ୍କର ଧର୍ମକୁ ସେମାନଙ୍କର ସାମାଜିକ ଜୀବନ ଓ ନୈତିକ ବିଚାରବୋଧ ମାନଦଣ୍ଡରେ ବିଚାର କରାଯିବା ଆବଶ୍ୟକ । ଯଦି ସାମାଜିକ ବିକାଶ ଧାରାରେ ଧର୍ମର କିଛି ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିବ ତେବେ ଅନ୍ୟ କୌଣସି ମାନଦଣ୍ଡରେ ତା'ର ମୂଲ୍ୟାୟନ ନିରର୍ଥକ ହେବ । ମୋ ମତରେ ହିନ୍ଦୁମାନଙ୍କୁ ଏବଂ ହିନ୍ଦୁ ଧର୍ମକୁ ମୂଲ୍ୟାୟନ କ୍ଷେତ୍ରରେ ମୁଁ ଯେଉଁ ମାନଦଣ୍ଡର କଷଟି ଦେଇଛି ତାହା ଯଥାର୍ଥ ଏବଂ ତାହାଛଡ଼ା ଅନ୍ୟ କୌଣସି ଉନ୍ନତ ମାନଦଣ୍ଡ ଥିବା ମୁଁ ଅନୁଭବ କରୁନାହିଁ । ଏହି ମାନଦଣ୍ଡରେ ଯେକୌଣସି ଧର୍ମ ବିଫଳ ହେବ ବୋଲି ଯେଉଁ ସିଦ୍ଧାନ୍ତ ଆସୁଛି ତାହା ହୁଏତ କେତେକାଂଶରେ ସତ୍ୟ ହୋଇପାରେ । କିନ୍ତୁ ଏଥିରୁ ହିନ୍ଦୁଧର୍ମ ଓ ହିନ୍ଦୁମାନଙ୍କର ସାମାଜିକ ସ୍ଥିତି ନେଇ ମହାତ୍ମା ଆତ୍ମସନ୍ତୋଷ ଲାଭ କରିବା ଉଚିତ ନୁହେଁ । ଆଉ ମଧ୍ୟ ପାଗଳ ବ୍ୟକ୍ତି ଅଛନ୍ତି ବୋଲି ଯେପରି ଜଣେ ପାଗଳ ଆତ୍ମସନ୍ତୋଷ ଲାଭ କରେ କିମ୍ବା ବନ୍ଧୁ ଅପରାଧୀ ଅଛନ୍ତି ବୋଲି ଜଣେ ଅପରାଧୀ ସାନ୍ତ୍ୱନା ଲାଭ କରେ, ମହାତ୍ମାଙ୍କର ଉକ୍ତି ଠିକ୍ ସେହିପରି ବୋଧହୁଏ । ମୁଁ ମହାତ୍ମାଙ୍କୁ ପ୍ରତିଶ୍ରୁତି ଦେବାକୁ ଚାହେଁ ଯେ ହିନ୍ଦୁ ସମାଜ ଓ ହିନ୍ଦୁଧର୍ମର ବିଫଳତା ମୋ ଭିତରେ ଅସନ୍ତୋଷ ଓ ଘୃଣାଭାବ ସୃଷ୍ଟି କରିନାହିଁ, ଯାହାକି ମୋ ପ୍ରତି ଅଭିଯୋଗ କରାଯାଏ । ମୁଁ ଅନୁଭବ କରୁଛି ଯେ ସଂସାର ଅପୂର୍ଣ୍ଣ ଏବଂ ଜଣେ ସଂସାରରେ ବଞ୍ଚିବାକୁ ହେଲେ

ଏହି ଅପୂର୍ଣ୍ଣତା ଭିତରେ ବଞ୍ଚିବାକୁ ହେବ । ସମାଜର ଅପୂର୍ଣ୍ଣତା ଓ ବିଫଳତା ମଧ୍ୟରେ ଜଣକୁ ରହିବାକୁ ପଡ଼ିବ । ବିଶେଷକରି ନିଜ ସମାଜର ଅପୂର୍ଣ୍ଣତା ଓ ଦୁର୍ବଳତା ଭିତରେ ଭାଗୀ ହୋଇ ତଥା ସଂଗ୍ରାମ କରି ସାମାଜିକ ବ୍ୟବସ୍ଥାରେ ମୋତେ ରହିବାକୁ ହେବ । କିନ୍ତୁ ଯେଉଁ ସମାଜରେ ମନ୍ଦ ଆଦର୍ଶକୁ ଅନୁସରଣ କରାଯାଏ କିମ୍ବା ଉଚ୍ଚ ଆଦର୍ଶ ଥାଇ ବି ସେହି ଆଦର୍ଶରେ ସାମାଜିକ ଜୀବନକୁ ପରିଚାଳିତ କରିବା ପାଇଁ ସହମତି ନଥାଏ, ଅଧିକନ୍ତୁ ବିରୋଧ ଥାଏ ସେପରି କ୍ଷେତ୍ରରେ ମୁଁ ସେଥିରେ ନିଜକୁ ଅଂଶୀଦାର କରିପାରିବି ନାହିଁ । ମୁଁ ଯଦି ହିନ୍ଦୁ ସମାଜ ଓ ହିନ୍ଦୁଧର୍ମ ପ୍ରତି ବୀତସ୍ପୃହ ହୋଇଥାଏ ତେବେ ମୋର ପୂର୍ଣ୍ଣ ଆତ୍ମବିଶ୍ୱାସ ଯେ ସେମାନେ ଏକ ତ୍ରୁଟିପୂର୍ଣ୍ଣ ଆଦର୍ଶକୁ ଶ୍ରେୟ ଭାବରେ ଗ୍ରହଣ କରୁଛନ୍ତି ଓ ଏକ ଅନୈତିକ ସାମାଜିକ ଜୀବନକୁ ପ୍ରଶ୍ରୟ ଦେଉଛନ୍ତି । ସାମାଜିକ ଆଚରଣ କ୍ଷେତ୍ରରେ ଅପୂର୍ଣ୍ଣତା ନେଇ ମୁଁ ହିନ୍ଦୁ ସମାଜ ବା ହିନ୍ଦୁଧର୍ମ ସହିତ ବିବାଦ କରୁନାହିଁ ବରଂ କେତେକ ମୌଳିକ ପ୍ରଶ୍ନକୁ ନେଇ ଏହା କରୁଛି । ଏହାର ମନ୍ଦ ଆଦର୍ଶ ଯୋଗୁଁ ମୁଁ ଏହାକୁ ବିରୋଧ କରୁଛି ।

(୧୧)

ମୋ ବିଚାରରେ ହିନ୍ଦୁ ସମାଜର ନୈତିକ ପୁନରୁଦ୍ଧାର ଆବଶ୍ୟକ, ଏହାକୁ ବିଳମ୍ବିତ କରିବା ବିପଦପୂର୍ଣ୍ଣ ଅଟେ । ପ୍ରଶ୍ନ ହେଉଛି ଏହି ନୈତିକ ପୁନର୍ଜୀବନ କାର୍ଯ୍ୟକୁ କିଏ ସ୍ଥିର କରିବେ ଓ ନିୟନ୍ତ୍ରଣ କରିବେ ? ବାସ୍ତବରେ ଯେଉଁମାନଙ୍କର ବୌଦ୍ଧିକ ପୁନର୍ଜନ୍ମ ହୋଇଥିବ ଓ ଯେଉଁମାନେ ବୌଦ୍ଧିକ ସ୍ତରରେ ସ୍ୱାଧୀନ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବେ ଏବଂ ନିଜର ବିଚାରକୁ ଜନଗଣଙ୍କ ସମ୍ମୁଖରେ ରଖିବାକୁ ଆତ୍ମବିଶ୍ୱାସ ଓ ସାଧୁତା ରଖିଥିବେ ସେହିମାନେ ହିଁ ଏହି କାର୍ଯ୍ୟ କରିପାରିବେ । ଏହି ମାନଦଣ୍ଡରେ ମୂଲ୍ୟାୟନ କଲେ ସଂପ୍ରତି ଯେଉଁ ହିନ୍ଦୁ ନେତାଗଣ ଅଛନ୍ତି ଏହି ଦୁଃରୁହ କାର୍ଯ୍ୟ କରିବାକୁ ସେମାନେ ଉପଯୁକ୍ତ ବୋଲି ମୁଁ ମନେ କରୁନାହିଁ । ସେମାନଙ୍କର ଯେ ପ୍ରାଥମିକ ବୌଦ୍ଧିକ ପୁନର୍ଜୀବନ ହୋଇଛି ଏହା କହିବା ଯଥାର୍ଥ ମନେହୁଏ ନାହିଁ । ଯଦି ସେମାନଙ୍କର ବୌଦ୍ଧିକ ପୁନର୍ଜୀବନ ହୋଇଥାନ୍ତା ତେବେ ସେମାନେ ଅଗଣିତ ଅଶିକ୍ଷିତ ବ୍ୟକ୍ତିମାନଙ୍କୁ ପ୍ରତାରିତ କରିବା କିମ୍ବା ଆଦିମ ଜନଜାତି ଲୋକଙ୍କ ଅଜ୍ଞତାର ସୁଯୋଗ ନେବା ପରି କାର୍ଯ୍ୟରେ ଅନ୍ତତଃ ନିଜକୁ ସଂଶ୍ଳିଷ୍ଟ କରୁ ନଥାନ୍ତେ । ଯଦିବି ହିନ୍ଦୁ ସମାଜ ବିଭିନ୍ନ

ଭାଗରେ ବିଭକ୍ତ ହୋଇ ରହିଛି ତଥାପି ଏହି ନେତାଗଣ ନିର୍ଲ୍ଲଜ୍ଜତା ପୂର୍ବକ ସେମାନଙ୍କର ଅତୀତ ଆଦର୍ଶର କଥା କହି ସନ୍ତୁଷ୍ଟ ରହୁ ନଥାନ୍ତେ, କାରଣ ସେହିସବୁ ଆଦର୍ଶର ବର୍ତ୍ତମାନ ସହିତ କୌଣସି ସମ୍ବନ୍ଧ ହଁ ନାହିଁ । ଅତୀତରେ ଯେତେବେଳେ ସେହିସବୁ ଆଦର୍ଶ ଉତ୍ପନ୍ନ ହୋଇଥିଲା ସେତେବେଳର ସମାଜରେ ହୁଏତ ତାହା ଆବଶ୍ୟକ ହୋଇଥାଇପାରେ, କିନ୍ତୁ ସାଂପ୍ରତିକ ସମୟରେ ତାହା କୌଣସି ପଥ ପ୍ରଦର୍ଶକ ହେବା ପରିବର୍ତ୍ତେ ବିପଦର ଘଣ୍ଟି ବଜାଉଛି । କିନ୍ତୁ ଧାର୍ମିକ ନେତାଗଣଙ୍କର ସେହିସବୁ ପୁରାତନ ଆଦର୍ଶ ପ୍ରତି ସମ୍ମାନବୋଧ ରହିଆସିଛି, ଯଦ୍ୱାରା ସେମାନଙ୍କର ସମାଜର ମୂଳ ନୀତିଗୁଡ଼ିକ ପର୍ଯ୍ୟାଲୋଚନା କରିବା କ୍ଷେତ୍ରରେ ସେମାନେ କୌଣସି ଆଗ୍ରହ ଦେଖାଇ ନଥାନ୍ତି ଓ ଏପରିକି ଉଦ୍ଧାର ସଂସ୍କାରକୁ ବିରୋଧ ମଧ୍ୟ କରିଥାନ୍ତି । ହିନ୍ଦୁ ଧର୍ମର ସାଧାରଣ ଜନଗଣ ସେମାନଙ୍କର ବିଶ୍ୱାସର ଭିତ୍ତି ପ୍ରତି କୌଣସି ଅଶ୍ରଦ୍ଧା ବା ଅବିଶ୍ୱାସ ପୋଷଣ କରନ୍ତି ନାହିଁ । ସେମାନଙ୍କର ନେତାମାନେ ମଧ୍ୟ ଏହିପରି କରିଥାନ୍ତି । ବରଂ ଯଦି କେହି ସେହି ବିଶ୍ୱାସ ଆଧାରକୁ ପ୍ରଶ୍ନ କରନ୍ତି ବା ସମାଜରୁ ଦୂର କରିବାକୁ ପ୍ରୟାସ କରନ୍ତି ତେବେ ସେପରି କ୍ଷେତ୍ରରେ ଏହି ନେତାଗଣ ନିଜର ବିଶ୍ୱାସ ପ୍ରତି ଅଧିକ ପ୍ରତିବଦ୍ଧ ରହି ଏହାକୁ ଅଧିକ ଜାବୁଡ଼ି ଧରିବାକୁ ପ୍ରୟାସ କରନ୍ତି । ଏହାହିଁ ସବୁଠାରୁ ଭୟଙ୍କର ମନେହୁଏ । ମହାତ୍ମା ବି ଏହି ନେତାଙ୍କଠାରୁ ଭିନ୍ନ ନୁହନ୍ତି । ମନେହୁଏ ମହାତ୍ମା ବିଚାରଶୀଳତାରେ ବିଶ୍ୱାସ କରନ୍ତି ନାହିଁ । ସେ ସନ୍ଥମାନଙ୍କର ଅନୁକରଣ କରିବାକୁ ଚାହାନ୍ତି । ଜଣେ ରକ୍ଷଣଶୀଳ ବ୍ୟକ୍ତି ଯେପରି ନିଜର ଧାର୍ମିକ ମତ ପ୍ରତି ଉତ୍ସର୍ଗୀକୃତ ଭାବରେ ସମ୍ମାନ ରଖନ୍ତି ସେହିପରି ମହାତ୍ମା ମଧ୍ୟ କରୁଛନ୍ତି । କାରଣ ସେ ଆଶଙ୍କା କରନ୍ତି କି ଯଦି ସେ ମୁକ୍ତ ଭାବରେ ଚିନ୍ତା କରିବେ ତେବେ ଜାବୁଡ଼ି ଧରିଥିବା ବହୁ ବିଶ୍ୱାସ ଓ ପରମ୍ପରା ଭୁଷୁଡ଼ି ପଡ଼ିବ । ଏ କ୍ଷେତ୍ରରେ ତାଙ୍କ ପ୍ରତି ସହାନୁଭୂତି ଆସିଥାଏ । ସ୍ୱାଧୀନ ଚିନ୍ତା ଦ୍ୱାରା କେତେକ ପରମ୍ପରାଗତ ସ୍ଥିରତା ପ୍ରତି ବିପଦ ଦେଖା ଦେଇଥାଏ । କିନ୍ତୁ ଏହା ମଧ୍ୟ ସତ୍ୟ ଯେ ସନ୍ଥମାନଙ୍କ ଉପରେ ନିର୍ଭରଶୀଳତା ଦ୍ୱାରା ସତ୍ୟ ଜାଣିହୁଏ ନାହିଁ । ସନ୍ଥମାନେ ମଣିଷ ଓ ସେମାନେ ସର୍ବଜ୍ଞ ନୁହନ୍ତି । ଲର୍ଡ ବାଲଫୋର ଏ ସମ୍ବନ୍ଧରେ କହନ୍ତି, "ମନୁଷ୍ୟର ମସ୍ତିଷ୍କ ଘୁଷୁରିର ମୁଖଠାରୁ ଏପରି ଅଧିକ କୌଶଳପୂର୍ଣ୍ଣ ଯନ୍ତ୍ର ନୁହେଁ ଯାହା ସତ୍ୟକୁ ସମ୍ପୂର୍ଣ୍ଣ ଭାବରେ ଜାଣିପାରିବ" । ମୋ ମତରେ ମହାତ୍ମା

ହିନ୍ଦୁମାନଙ୍କର ପ୍ରାଚୀନ ସାମାଜିକ ଢାଞ୍ଚାକୁ ସମର୍ଥନ କରିବା ପାଇଁ ଯେପରି ଯୁକ୍ତିର ଆଶ୍ରୟ ନେଉଛନ୍ତି ତାହାଦ୍ୱାରା ମନେହୁଏ କି ସେ ନିଜ ବିଚାର ବୁଦ୍ଧିର ଅପପ୍ରୟୋଗ କରୁଛନ୍ତି । ସେ ନିଜ ପରମ୍ପରାର ସବୁଠାରୁ ପ୍ରଭାବଶାଳୀ ସମର୍ଥକ ହେବାଦ୍ୱାରା ହିନ୍ଦୁ ସମାଜର ସଂସ୍କାର କ୍ଷେତ୍ରରେ ଭୟଙ୍କର ବିରୋଧୀ ଯେ ହେଉଛନ୍ତି ଏହା କୁହାଯାଇପାରେ ।

ମହାତ୍ମାଙ୍କ ସହ ତୁଳନା ପରିପ୍ରେକ୍ଷୀରେ ଏପରି କେତେକ ହିନ୍ଦୁ ନେତା ଅଛନ୍ତି ଯେଉଁମାନେ କେବଳ ବିଶ୍ୱାସ କରିବା ବା ଅନୁକରଣ କରିବାରେ ସନ୍ତୁଷ୍ଟ ନୁହନ୍ତି । ସେମାନେ ମୁକ୍ତ ଭାବରେ ଚିନ୍ତା କରନ୍ତି ଓ ନିଜ ବିଚାର ବୁଦ୍ଧି ଅନୁଯାୟୀ କାର୍ଯ୍ୟ କରିଥାନ୍ତି । କିନ୍ତୁ ସାଧାରଣ ଜନଗଣଙ୍କୁ ଯଥାର୍ଥ ପଥ ପ୍ରଦର୍ଶନ କରିବାର ପ୍ରଶ୍ନ ଯେତେବେଳେ ଆସେ ସେମାନେ ସେତେବେଳେ ବୀତସ୍ପୃହ ରହିଥାନ୍ତି ବା ନିଜ ଉପରକୁ କିଛି ଦାୟିତ୍ୱ ନେବାକୁ ଚାହିଁ ନଥାନ୍ତି । ପ୍ରାୟ ପ୍ରତ୍ୟେକ ବ୍ରାହ୍ମଣ ଜାତିର ନିୟମକୁ ଉଲ୍ଲଂଘନ କରିଥାଏ । ପୁରୋହିତ ହୋଇଥିବା ବ୍ରାହ୍ମଣମାନଙ୍କ ସଂଖ୍ୟାଠାରୁ ଜୋତା ବିକ୍ରୀ କରୁଥିବା ବ୍ରାହ୍ମଣମାନଙ୍କର ସଂଖ୍ୟା ଅଧିକ ହେବ । ବ୍ୟବସାୟ କରିବାକୁ ଯାଇ ବ୍ରାହ୍ମଣମାନେ ଯେ କେବଳ ନିଜର ବଂଶାନୁଗତ ବୃତ୍ତିକୁ ପରିହାର କରିଛନ୍ତି ତା ନୁହେଁ କିନ୍ତୁ ସେମାନେ ଏପରି ବୃତ୍ତି ଗ୍ରହଣ କରିଛନ୍ତି ଯାହାକୁ ଶାସ୍ତ୍ରରେ ବାରଣ କରାଯାଇଛି । କିନ୍ତୁ ପ୍ରତିଦିନ ଜାତିର ବିଧାନକୁ ଉଲ୍ଲଂଘନ କରୁଥିବା କେତେଜଣ ବ୍ରାହ୍ମଣ ଜାତିପ୍ରଥା ଓ ଶାସ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେ ? ନିଜର ଆନ୍ତରିକ ବିଶ୍ୱାସ ଓ ବିବେକ ଦ୍ୱାରା ଅନୁପ୍ରାଣିତ ହୋଇ ଯଦି ଜଣେ ବ୍ରାହ୍ମଣ ଜାତି ଓ ଶାସ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରେ, ତାହା ସେପରି ପ୍ରଭାବ ପକାଏ ନାହିଁ କାରଣ ସହସ୍ରାଧିକ ବ୍ରାହ୍ମଣ ଜାତିକୁ ଉଲ୍ଲଂଘନ କରିବା ସହିତ ଶାସ୍ତ୍ରର ନିର୍ଦ୍ଦେଶକୁ ଅବମାନନା କରିଥାନ୍ତି, ଅଥଚ ସେମାନେ ଜାତି ବ୍ୟବସ୍ଥା ଓ ଶାସ୍ତ୍ରର ପବିତ୍ରତା ନେଇ ଉଦଣ୍ଡ ସମର୍ଥକ ପାଲଟିଥାନ୍ତି । ଏହି ପ୍ରକାରର ଶଠତା କାହିଁକି ? କାରଣ ସେମାନେ ଏହା ଅନୁଭବ କରନ୍ତି କି ଯଦି ସାଧାରଣ ଜନତା ଜାତିର ଶୃଙ୍ଖଳାରୁ ମୁକ୍ତ ହେବେ, ତେବେ ବ୍ରାହ୍ମଣ ଶ୍ରେଣୀର ସୁବିଧା ଓ ପ୍ରତିଷ୍ଠା ପ୍ରତି ବଡ଼ ବିପଦ ଦେଖାଯିବ । ବୁଦ୍ଧିଜୀବୀ ଶ୍ରେଣୀର ଏହି ପ୍ରକାରର କପଟତା ଏକ ଅତ୍ୟନ୍ତ

ଲଜ୍ଜାଜନକ ଘଟଣା ଅଟେ କାରଣ ସେମାନେ ସେମାନଙ୍କର ବିଚାରର ସୁଫଳ ସାଧାରଣ ଜନତାଙ୍କୁ ଦେବାକୁ ପ୍ରସ୍ତୁତ ନୁହନ୍ତି ।

ହିନ୍ଦୁମାନେ ମାଥ୍ୟୁ ଆର୍ନୋଲଡ଼ଙ୍କ ମତାନୁସାରେ "ଦୁଇଟି ପୃଥକ୍ ଜଗତ ଯେଉଁଥିରୁ ଗୋଟିଏ ମୃତ ଓ ଅନ୍ୟଟି ଶକ୍ତିହୀନ ଓ ଅଜନ୍ମିତ ତାହା ମଧ୍ୟରେ ବିଚରଣ କରୁଛନ୍ତି । ସେମାନେ କ'ଣ କରିବେ ? ଯେଉଁ ମହାତ୍ମାଙ୍କୁ ଦିଗଦର୍ଶନ ଦେବାପାଇଁ ସେମାନେ ଚାହିଁଛନ୍ତି ସେ ସ୍ୱାଧୀନ ଚିନ୍ତାରେ ବିଶ୍ୱାସ କରନ୍ତି ନାହିଁ ସୁତରାଂ ଅନୁଭୂତିର କଷଟିରେ ସତ୍ୟ ହେଉଥିବା ପଥକୁ ସେ ଦେଖାଇ ପାରିବେ ନାହିଁ । ସମାଜର ବୁଦ୍ଧିଜୀବୀ ଶ୍ରେଣୀ ଯେ କି ସାଧାରଣ ଜନଗଣଙ୍କୁ ମାର୍ଗ ଦେଖାଇ ପାରନ୍ତା ସେହି ଶ୍ରେଣୀ ହୁଏତ ଅସାଧୁ କିମ୍ବା ସାଧାରଣ ମଣିଷଙ୍କୁ ଶିକ୍ଷାଦେଇ ଉଚିତ ମାର୍ଗରେ ନେବା କ୍ଷେତ୍ରରେ ନିଷ୍ଠାହୀନ ବା ଉଦାସୀନ । ଏହି ପରିସ୍ଥିତିରେ ଆମେ ଏକ ବିପଦପୂର୍ଣ୍ଣ ସ୍ଥିତିକୁ ହିଁ ଦେଖୁଛେ । ଏହିପରି ଏକ ଭୟଙ୍କର ସ୍ଥିତି ଭିତରେ ରହି ଜଣେ କେବଳ ଦୁଃଖରେ କହିବ, "ହିନ୍ଦୁ ଭାଇ, ଧନ୍ୟ ତମର ନେତାଗଣ !"

## ଜାତି ଓ ଧର୍ମ ପରିବର୍ତ୍ତନ

ନିଜର ସୁରକ୍ଷା ଜନିତ ଆଶଙ୍କାରୁ ସଂପ୍ରତି ହିନ୍ଦୁମାନଙ୍କ ମଧ୍ୟରେ ଜାଗରଣ ଦେଖାଦେଇଛି । ଏକ ସମୟରେ ନିଜର ସୁରକ୍ଷା ନେଇ ସମାଜର ସଚେତନ ଗୋଷ୍ଠୀଟିର ଆଶଙ୍କା ନଥିଲା । ସେମାନଙ୍କର ଯୁକ୍ତି ଥିଲା ଯେ ହିନ୍ଦୁମାନେ ପୃଥିବୀର ଏକ ପ୍ରାଚୀନତମ ଗୋଷ୍ଠୀ ଓ ଅତୀତରେ ସେମାନେ ନାନା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ତିଷ୍ଠି ରହିଛନ୍ତି । ସେମାନଙ୍କର ସଭ୍ୟତା ଓ ସଂସ୍କୃତି ଭିତରେ ଏପରି ଶକ୍ତି ଓ ସାମର୍ଥ୍ୟ ରହିଛି ଯାହା ଯେକୌଣସି ପ୍ରତିବନ୍ଧକ ମୁକାବିଲା କରି ନିଜର ସୁରକ୍ଷା କରିପାରିବ । ସେମାନଙ୍କର ଭବିଷ୍ୟତ ସୁରକ୍ଷା ନେଇ ସେମାନଙ୍କ ମଧ୍ୟରେ ଏହିପରି ଏକ ଦୃଢ଼ ବିଶ୍ୱାସ ରହିଆସିଛି । କିନ୍ତୁ ସାଂପ୍ରତିକ ଘଟଣା ପ୍ରବାହ ସେମାନଙ୍କର ଏହି ବିଶ୍ୱାସକୁ ଦୋହଲାଇ ଦେଇଛି । ସାରା ଭାରତରେ ହିନ୍ଦୁ ମୁସଲମାନ ମାନଙ୍କ ମଧ୍ୟରେ ସୃଷ୍ଟି ହେଉଥିବା ସାମ୍ପ୍ରଦାୟିକ ଦଙ୍ଗା ସମୟରେ ଏହା ଦେଖାଯାଇଛି ଯେ ମୁସଲମାନଙ୍କର ଏକ କ୍ଷୁଦ୍ର ଗୋଷ୍ଠୀ ହିନ୍ଦୁମାନଙ୍କ ଉପରେ ଆକ୍ରମଣ କରିବାକୁ ସମର୍ଥ । ସୁତରାଂ ଏହିପରି

ଆକ୍ରମଣ ହେଲେ ହିନ୍ଦୁମାନେ କିପରି ମୁକାବିଲା କରିବେ ଓ ଅର୍ଥପୂର୍ଣ୍ଣ ଭାବରେ ତିଷ୍ଠି ରହିବେ ହିନ୍ଦୁମାନଙ୍କର ସଚେତନ ଗୋଷ୍ଠୀଟି ସେନେଇ ଗମ୍ଭୀର ଚିନ୍ତା ପ୍ରକଟ କରୁଛନ୍ତି । ଯେଉଁ ହିନ୍ଦୁମାନେ ସେମାନଙ୍କର ପ୍ରାଚୀନତା ନେଇ ଗର୍ବ କରି ଆସୁଥିଲେ ଓ ସେମାନଙ୍କର ପ୍ରାଚୀନତା ହିଁ ସେମାନଙ୍କର ଅର୍ଥପୂର୍ଣ୍ଣ ସ୍ଥିତି ପାଇଁ ପ୍ରେରଣାଦାୟକ ହେବ ବୋଲି ଆସ୍ଫାଳନ କରୁଥିଲେ, ସେମାନେ ଜୀବନ ସଂଗ୍ରାମ ଭିତରେ ନିଜର ସୁରକ୍ଷା ନେଇ ଏବେ ଚିନ୍ତାରେ ପଡିଛନ୍ତି । ଏବେ ସେମାନେ ଅସ୍ତିତ୍ୱର ବା ସୁରକ୍ଷାର ବହୁବିଧ ସ୍ତର ସଂପର୍କରେ ଚିନ୍ତା ବ୍ୟକ୍ତ କରୁଛନ୍ତି ଓ ସମସ୍ତ ପ୍ରକାର ସ୍ଥିତି ଯେ ଏକାପ୍ରକାର ମର୍ଯ୍ୟାଦାଜନକ ନୁହେଁ ତାହା ଚିନ୍ତା କରୁଛନ୍ତି । କୌଣସି ସଂଗ୍ରାମରେ ଜଣେ ନିଜର ଶତ୍ରୁଙ୍କୁ ପରାଜିତ କରି ଗୌରବର ସହ ବଞ୍ଚିବା ଯେଉଁ ସ୍ତରର ଆତ୍ମ ସ୍ଥିତିର ପରିଚୟ ଦେଇଥାଏ, ସଂଗ୍ରାମରେ ପଛଘୁଞ୍ଚା ଦେଇ ନିରାପଦ ମଣୁଥିବା ଏକ ସ୍ଥାନରେ ଆତ୍ମଗୋପନ କରି ବଞ୍ଚିବା ସେହି ସ୍ତରର ସ୍ଥିତି ନୁହେଁ । ଉଭୟ ସ୍ତରରେ ବଞ୍ଚିବା ସମ୍ଭବ ହେଲେ ବି ଏହି ଦୁଇ ବଞ୍ଚିବାର ମୂଲ୍ୟ ଭିତରେ ଯଥେଷ୍ଟ ପାର୍ଥକ୍ୟ ରହିଛି । କେବଳ ତିଷ୍ଠି ରହିବା ବା ବଞ୍ଚିରହିବା ବଡ଼ ପ୍ରଶ୍ନ ନୁହେଁ, ବରଂ ବଞ୍ଚିରହିବାର ମାନ ଉପରେ ନିଜର ଗୌରବ ନିର୍ଭର କରିଥାଏ ।

ସୁତରାଂ ହିନ୍ଦୁମାନଙ୍କ ମଧ୍ୟରେ ଥିବା ସଚେତନ ଗୋଷ୍ଠୀଟି ଭିତରେ ଏବେ ଭାବନା ଉଦ୍ରେକ ହୋଇଛି । ନିଜର ସଂଖ୍ୟାଗରିଷ୍ଠତା ଥାଇ ମଧ ଯଦି ହିନ୍ଦୁମାନେ ମୁସଲମାନ ମାନଙ୍କର ସମ୍ମୁଖୀନ ହେବା ସମ୍ଭବ ହେଉନାହିଁ, ପୁନଶ୍ଚ ଯଦି ଆହୁରି ଅଧିକା ବ୍ୟକ୍ତି ମୁସଲମାନ ଧର୍ମରେ ଦୀକ୍ଷିତ ହେବେ ତେବେ ହିନ୍ଦୁମାନଙ୍କର ଭାଗ୍ୟ କ'ଣ ହେବ ଏହି ଭାବନା ସେମାନଙ୍କୁ ଚିନ୍ତାରେ ପକାଉଛି । ଏଣୁ ଅଧିକ ଲୋକ ଅନ୍ୟ ଧର୍ମ ବା ସଂସ୍କୃତି ପ୍ରତି ଆକୃଷ୍ଟ ନ ହୁଅନ୍ତୁ ଓ ହିନ୍ଦୁଧର୍ମରୁ ନିଜର ସମ୍ପର୍କ ଛିନ୍ନ ନ କରନ୍ତୁ ସେପାଇଁ ସେମାନେ ଉଦ୍ୟମ କରିବା ଆରମ୍ଭ କରିଛନ୍ତି । ଏହି ଭାବନାରୁ ସେମାନେ ଅନ୍ୟମାନଙ୍କୁ ହିନ୍ଦୁଧର୍ମକୁ ଫେରାଇ ଆଣିବାକୁ ଶୁଦ୍ଧି ଆନ୍ଦୋଳନର ମଧ୍ୟ ସୂତ୍ରପାତ କରିଛନ୍ତି ।

କିନ୍ତୁ ରକ୍ଷଣଶୀଳ ହିନ୍ଦୁମାନେ ଏହି ଶୁଦ୍ଧି ଆନ୍ଦୋଳନକୁ ବିରୋଧ କରୁଛନ୍ତି । ସେମାନଙ୍କର ଯୁକ୍ତି ହେଉଛି ଯେ ହିନ୍ଦୁଧର୍ମରେ ଧର୍ମ ପରିବର୍ତ୍ତନର ଭାବନା ନାହିଁ ।

ପ୍ରତ୍ୟେକ ବ୍ୟକ୍ତିର ଧର୍ମ ଜନ୍ମରୁ ସ୍ଥିରୀକୃତ ଓ କୌଣସି ବ୍ୟକ୍ତି ଧର୍ମ ପରିବର୍ତ୍ତନ କରି ହିନ୍ଦୁଧର୍ମକୁ ଆସିବା ଯଥାର୍ଥ ନୁହେଁ । ଏହି ମତ ସପକ୍ଷରେ ମଧ୍ୟ ଯୁକ୍ତି ରହିଛି । ଯେଉଁ ଅତୀତ ପର୍ଯ୍ୟନ୍ତ ଆମ ସ୍ମୃତି ଯାଇପାରୁଛି ବା ଆମର ପରମ୍ପରା ଯେଉଁ ସମୟରୁ ଚାଲିଆସିଛି ସେଥିରେ ହିନ୍ଦୁ ବିଶ୍ୱାସ ଭିତରେ କୌଣସି ଧର୍ମ ପରିବର୍ତ୍ତନକୁ ସ୍ଥାନ ଦିଆଯାଇନାହିଁ । ଜର୍ମାନର ମହାନ୍ ପଣ୍ଡିତ ଓ ପ୍ରାଚ୍ୟ ବିଶାରଦ ମାକ୍ସମୁଲ୍ଲର ୧୮୭୩ ମସିହା ଡିସେମ୍ବର ୩ ତାରିଖ ଦିନ ୱେଷ୍ଟ ମିନିଷ୍ଟର ଆବେଠାରେ "ଇଣ୍ଟରସେସନ ଫର ମିସନ" ଦିବସରେ ଗୁରୁତ୍ୱ ଦେଇ କହିଥିଲେ ଯେ ହିନ୍ଦୁଧର୍ମ ଏକ ମିସନାରୀ ବା ପ୍ରଚାରଧର୍ମୀ ଧର୍ମ ନୁହେଁ । ସମୟୋଚିତ ଲକ୍ଷ୍ୟ ସାଧନ ପାଇଁ ଶୁଦ୍ଧି ଆନ୍ଦୋଳନ ଭାବନା ବିରୁଦ୍ଧରେ ରକ୍ଷଣଶୀଳ ହିନ୍ଦୁମାନେ କରୁଥିବା ପ୍ରତିବାଦକୁ ସେମାନେ ଯଥାର୍ଥ ମନେକରୁଛନ୍ତି । କାରଣ ହିନ୍ଦୁ ବିଶ୍ୱାସ କ୍ଷେତ୍ରରେ ଯେଉଁ ମୌଳିକ ଭାବନା ରହିଛି ଶୁଦ୍ଧି ଆନ୍ଦୋଳନ ଯେ ତା'ର ବିରୁଦ୍ଧାଚରଣ କରୁଛି ଏହା ରକ୍ଷଣଶୀଳ ମାନେ ଭାବୁଛନ୍ତି । ଅପରପକ୍ଷରେ କେତେକ ସୁନାମଧନ୍ୟ ଓ ପ୍ରବୀଣ ହିନ୍ଦୁ ଶୁଦ୍ଧି ଆନ୍ଦୋଳନକୁ ସମର୍ଥନ କରୁଛନ୍ତି । ସେମାନଙ୍କ ମତରେ ହିନ୍ଦୁଧର୍ମକୁ ଏକ ପ୍ରଚାରଧର୍ମୀ ଧର୍ମରେ ପରିଣତ କରାଯାଇ ପାରିବ ଓ ଅତୀତରେ ଏହା ମଧ୍ୟ କରାଯାଇଛି । ପ୍ରଫେସର ଜଲ୍ଲି ଜର୍ମାନୀରେ ଲେଖିଥିବା ଏକ ନିବନ୍ଧରେ ଆଦିବାସୀମାନଙ୍କ ମଧ୍ୟରେ ହିନ୍ଦୁଧର୍ମର ପ୍ରସାର ପାଇଁ କରାଯାଇଥିବା ପ୍ରୟାସ ଓ ପ୍ରଣାଳୀ ସମ୍ପର୍କରେ ଏକ ବିସ୍ତୃତ ବିବରଣୀ ଦେଇଛନ୍ତି । ପ୍ରାଚୀନ କାଳରେ ହିନ୍ଦୁ ଶାସକ ଓ ପୂଜକଗଣ ଏ କ୍ଷେତ୍ରରେ ଉଦ୍ୟମ କରିଛନ୍ତି ବୋଲି ସେ ଦର୍ଶାଇଛନ୍ତି । ମାକ୍ସ ମୁଲ୍ଲରଙ୍କ ମତକୁ ବିରୋଧ କରି ସାର ଆଲଫ୍ରେଡ୍ ଲ୍ୟାଲ୍ ହିନ୍ଦୁଧର୍ମ ଯେ ଏକ ପ୍ରଚାରଧର୍ମୀ ଧର୍ମ ଏହା ମଧ୍ୟ ସୂଚାଇଛନ୍ତି । ଏହିସବୁ ମତର ମୂଲ୍ୟାୟନରୁ ଜଲ୍ଲି ବା ଲାଲଙ୍କ ମତ ଅଧିକ ଗ୍ରହଣଯୋଗ୍ୟ ବୋଲି ମନେହୁଏ । ହିନ୍ଦୁଧର୍ମ ଅତୀତରେ ନିଶ୍ଚୟ କେତେକାଂଶରେ ଏକ ପ୍ରଚାରଧର୍ମୀ ଧର୍ମ ହୋଇଥିବ, ନହେଲେ ଏତେ ବଡ଼ ଭୌଗୋଳିକ ଭୂଖଣ୍ଡରେ ଓ ବହୁ ସାଂସ୍କୃତିକ ଭିନ୍ନତା ଥିବା ବଭିନ୍ନ ଜନଗୋଷ୍ଠୀ ଭିତରେ ପ୍ରସାର ହୋଇ ନଥାନ୍ତା । ଏତଦ୍‌ବ୍ୟତୀତ କେତେକ ନିର୍ଦ୍ଦିଷ୍ଟ ଧର୍ମୀୟ କାର୍ଯ୍ୟ ଯଜ୍ଞ, ହୋମ ଇତ୍ୟାଦି ଘଟଣାକୁ ଶୁଦ୍ଧି ବା ବ୍ରତ ଇତ୍ୟାଦି ଘଟଣା ବିନା ବ୍ୟାଖ୍ୟା କରିବା ଯଥାର୍ଥ ମନେହୁଏ ନାହିଁ । ବରଂ ଏହି ସବୁକୁ ଗ୍ରହଣ କରିବାର ପ୍ରକଳ୍ପ ମାଧ୍ୟମରେ ସେସବୁ ବୁଝାଇବା ସହଜ ମନେହୁଏ । ଏଣୁ ନିଃସନ୍ଦେହରେ କୁହାଯାଇପାରେ ଯେ ପ୍ରାଚୀନ କାଳରେ ହିନ୍ଦୁଧର୍ମ ଏକ ପ୍ରଚାରଧର୍ମୀ ଧର୍ମ

ଥିଲା । କିନ୍ତୁ କେତେକ କାରଣ ଯୋଗୁଁ ଐତିହାସିକ ବିକାଶ ଧାରାରେ ଏହା ଆଉ ପ୍ରଚାରଧର୍ମୀ ହୋଇ ରହିଲା ନାହିଁ ।

ତେବେ କେଉଁ କାରଣ ଯୋଗୁଁ ହିନ୍ଦୁଧର୍ମ ପ୍ରଚାରଧର୍ମୀ ସ୍ୱରୂପ ହରାଇଲା ତାହା ଏଠାରେ ବ୍ୟାଖ୍ୟା କରିବା ମୋର ଉଦ୍ଦେଶ୍ୟ । ଏ କ୍ଷେତ୍ରରେ ନାନା ବ୍ୟାଖ୍ୟା ଦିଆଯାଇପାରେ । ତେବେ ମୋର ନିଜସ୍ୱ କିଛି ସୁଚିନ୍ତିତ ମତ ମଧ୍ୟ ରହିଛି । 'ମଣିଷ ଯେ ଏକ ସାମାଜିକ ପ୍ରାଣୀ' ଏହା ଆରିଷ୍ଟଟଲ କହିଥିଲେ । ଆରିଷ୍ଟଟଲଙ୍କ ମତ ପାଶ୍ଚାତରେ ଯେଉଁ ସବୁ ଯୁକ୍ତି ଥାଉନା କାହିଁକି ଏହା ସତ୍ୟ ଯେ କୌଣସି ବ୍ୟକ୍ତି ନିଜର ସମସ୍ତ ସାମାଜିକ ସମ୍ପର୍କ ଛିନ୍ନ କରି ଏକ ବ୍ୟକ୍ତି ଭାବରେ ଜୀବନ ଆରମ୍ଭ କରିପାରିବ ନାହିଁ । ସାମାଜିକ ବନ୍ଧନ ଓ ସମ୍ବନ୍ଧ ବ୍ୟତୀତ ବ୍ୟକ୍ତିର ଅଭିବୃଦ୍ଧି ବା ଆତ୍ମଚେତନାର ବିକାଶ ସମ୍ଭବ ନୁହେଁ । ନିଜ ବ୍ୟକ୍ତିତ୍ୱ ଓ ଉଦ୍ଦେଶ୍ୟକୁ ଅବବୋଧ କରିବାକୁ ହେଲେ ନିଜ ସାମାଜିକ ଗୋଷ୍ଠୀ ଓ ତା'ର ଉଦ୍ଦେଶ୍ୟକୁ ସ୍ୱୀକାର କରିବା ଆବଶ୍ୟକ । ଜଣଙ୍କର ଲକ୍ଷ୍ୟ, ତାହା ପରୋପକାର ଦିଗରେ ହେଉ ବା ସ୍ୱାର୍ଥସାଧନ କ୍ଷେତ୍ରରେ ହେଉ, ଅନ୍ୟ ସହିତ ମଧ୍ୟ ସଂଶ୍ଳିଷ୍ଟ । ବ୍ୟକ୍ତିର ଜୀବନ, ଉଦ୍ଦେଶ୍ୟ, ଲକ୍ଷ୍ୟ ଇତ୍ୟାଦି ସହ ସାମାଜିକ ସମ୍ବନ୍ଧ ଅନ୍ତର୍ନିହିତ ଭାବେ ସଂଶ୍ଳିଷ୍ଟ । ଜୀବନର ପ୍ରତ୍ୟେକ ବ୍ୟାପାରରେ ସାମାଜିକ ସମ୍ପର୍କ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ସାମାଜିକ ସମ୍ବନ୍ଧ ବ୍ୟତୀତ ବ୍ୟକ୍ତିର ଅସ୍ତିତ୍ୱ ସମ୍ଭବପର ନୁହେଁ । ଜଳ ବ୍ୟତୀତ ମତ୍ସ୍ୟର ସ୍ଥିତି ଯାହା, ସାମାଜିକ ସମ୍ପର୍କ ବ୍ୟତୀତ ବ୍ୟକ୍ତିର ଜୀବନ ଠିକ୍ ସେହିପରି ମନେହୁଏ ।

ଏହି ପୃଷ୍ଠଭୂମିରେ କୌଣସି ବାହାରର ବ୍ୟକ୍ତିଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବା ପରିପ୍ରେକ୍ଷୀରେ ଏକ ସାମାଜିକ ଧର୍ମୀୟ ଗୋଷ୍ଠୀ କେତେଦୂର ସେହି ବ୍ୟକ୍ତି ବିଶେଷଙ୍କୁ ନିଜ ଭିତରେ ସାମିଲ କରିପାରିବ ତାହା ଦେଖିଥାଏ । ଅର୍ଥାତ ଧର୍ମ ବାହାରର ଯେଉଁ ବ୍ୟକ୍ତିଙ୍କୁ ଧର୍ମରେ ଦୀକ୍ଷିତ କରାଯିବ ସେ କେତେଦୂର ଧର୍ମଗୋଷ୍ଠୀର ସାମାଜିକ ଜୀବନଧାରାରେ ଗ୍ରହଣ ଯୋଗ୍ୟ ହେବେ ତାହା ଦେଖିବା ସ୍ୱାଭାବିକ ମନେହୁଏ । ନିଜ ଗୋଷ୍ଠୀରେ ଜନ୍ମ ହୋଇଥିବା ଓ ବାହାରୁ ଆସି ଗୋଷ୍ଠୀରେ ଦୀକ୍ଷିତ ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ପାର୍ଥକ୍ୟ ଆଣିବା ଠିକ୍ ନୁହେଁ । ଧର୍ମଗୋଷ୍ଠୀ ଦୀକ୍ଷିତ ହୋଇଥିବା ବ୍ୟକ୍ତିଙ୍କୁ ଗ୍ରହଣ କରିବା ସହ ଏହାର ସାମାଜିକ ଜୀବନଧାରାରେ ଅଂଶଗ୍ରହଣ କରିବାର ପରିବେଶ

ଦେଉଥିବା ଆବଶ୍ୟକ, ଯଦ୍ୱାରା ସେହି ବ୍ୟକ୍ତି ସାମାଜିକ ଗୋଷ୍ଠୀ ଭିତରେ ବଞ୍ଚିବା ଓ ସୁସ୍ଥ ଭାବରେ ବିକାଶ କରିବାର ଅବକାଶ ପାଇବ । ଯଦି ଧର୍ମ ପରିବର୍ତ୍ତନକାରୀ ପାଇଁ ଏହି ଅବକାଶ ନଥିବ ତେବେ ଧର୍ମ ପରିବର୍ତ୍ତନ କରିବା ପାଇଁ କୌଣସି ଉଦ୍ୟମ ହେବନାହିଁ କିମ୍ବା ଧର୍ମ ପରିବର୍ତ୍ତନ କରିଥିବା କୌଣସି ବ୍ୟକ୍ତି ମଧ୍ୟ ଧର୍ମଗୋଷ୍ଠୀରେ ଗ୍ରହଣଯୋଗ୍ୟ ହୋଇପାରିବ ନାହିଁ ।

ଅନ୍ୟ ଧର୍ମରୁ ହିନ୍ଦୁଧର୍ମରେ ଦୀକ୍ଷିତ ହୋଇଥିବା କୌଣସି ବ୍ୟକ୍ତିର ସ୍ଥାନ ହିନ୍ଦୁ ସମାଜରେ ରହିଛି କି ? ହିନ୍ଦୁ ସାମାଜିକ ବ୍ୟବସ୍ଥାରେ ଜାତିପ୍ରଥା ଏକ ଅବିଚ୍ଛେଦ୍ୟ ଅଙ୍ଗ । ହିନ୍ଦୁ ସମାଜରେ ବିବାହ ସ୍ୱଜାତିଭିତ୍ତିକ ଓ ଜାତି ଏକ ରୁଦ୍ଧ ଗୋଷ୍ଠୀ । ଅର୍ଥାତ୍ ଏକ ଜାତିରେ ଜନ୍ମ ହୋଇଥିବା ବ୍ୟକ୍ତି ହିଁ ସେହି ଜାତିରେ ସଂପୃକ୍ତ ଓ ଜାତି ବାହାରର କୌଣସି ବ୍ୟକ୍ତି ଜାତି ଗୋଷ୍ଠୀଭିତରେ ସଂପୃକ୍ତ ହେବା ଅସମ୍ଭବ । ପ୍ରତ୍ୟେକ ଜାତି ଏକ ରୁଦ୍ଧ ଗୋଷ୍ଠୀ ଓ ହିନ୍ଦୁ ସମାଜ ଏହି ରୁଦ୍ଧ ଗୋଷ୍ଠୀମାନଙ୍କର ଏକ ସଂଘ । ସୁତରାଂ କୌଣସି ଧର୍ମ ପରିବର୍ତ୍ତନକାରୀଙ୍କ ପାଇଁ ଏଠାରେ ସ୍ଥାନ ନାହିଁ, କାରଣ ଜାତି ବାହାରର କୌଣସି ବ୍ୟକ୍ତିଙ୍କୁ ଏକ ଜାତିରେ ସାମିଲ କରିବାର ସମ୍ଭାବନା ନାହିଁ । ହିନ୍ଦୁଧର୍ମରେ ପ୍ରସାର ହୋଇଥିବା ଜାତିପ୍ରଥା ଯୋଗୁଁ ଏହି ଧର୍ମକୁ ଧର୍ମପରିବର୍ତ୍ତନ କରିବା ସମ୍ଭବ ନୁହେଁ । ଜାତିପ୍ରଥା ଓ ଧର୍ମପରିବର୍ତ୍ତନ ପରସ୍ପର ଅସଙ୍ଗତ କାରଣ ଏମାନେ ଅସଂଯୋଜ୍ୟ । ଯେତେବେଳ ପର୍ଯ୍ୟନ୍ତ କୌଣସି ଏକ ଗଣ ବା ସମୂହ ଧର୍ମପରିବର୍ତ୍ତନ କରୁଥିଲେ ତାହା ସମ୍ଭବ ଥିଲା । ହିନ୍ଦୁଧର୍ମରେ ଏହି ପରିବର୍ତ୍ତନ ଗୃହୀତ ହେଉଥିଲା କାରଣ ପରିବର୍ତ୍ତନ କରୁଥିବା ଗୋଷ୍ଠୀଟି ଏକ ନୂତନ ଜାତି ଗଠନ କରୁଥିଲେ ଓ ନିଜ ଜାତି ଗୋଷ୍ଠୀ ଭିତରେ ସାମାଜିକ ସମ୍ବନ୍ଧ ରଖୁଥିଲେ । କିନ୍ତୁ ଯେତେବେଳେ କୌଣସି ସମୂହ ଧର୍ମପରିବର୍ତ୍ତନ ନକରି କେବଳ ବ୍ୟକ୍ତିବିଶେଷଙ୍କର ଧର୍ମ ପରିବର୍ତ୍ତନର ପ୍ରଶ୍ନ ଉଠିଲା, ସେତେବେଳେ ଏହା ହିନ୍ଦୁଧର୍ମ ଭିତରେ ଗ୍ରହଣଯୋଗ୍ୟ ହେଲାନାହିଁ । ବ୍ୟକ୍ତିବିଶେଷଙ୍କର ଜାତିରେ ସଂପୃକ୍ତ ହେବାର ସମ୍ଭାବନା ନଥିବା ହେତୁ ହିନ୍ଦୁଧର୍ମ ଏକ ପ୍ରଚାରଧର୍ମୀ ଧର୍ମ ହୋଇ ରହିପାରିଲା ନାହିଁ ।

ହିନ୍ଦୁଧର୍ମ କାହିଁକି ଏକ ପ୍ରଚାରଧର୍ମୀ ଧର୍ମ ଭାବେ ପ୍ରସାର କଲା ନାହିଁ ମୁଁ ତାହା ବ୍ୟାଖ୍ୟା କଲାବେଳେ ଏ କ୍ଷେତ୍ରରେ ଏକ ନୂତନ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରିବାକୁ ଚାହୁଁଛି । ଏହି ପ୍ରଶ୍ନଟି ଉତ୍‌ଥାପନ କରି ତାହାର ସମାଧାନ ବିଷୟରେ ଆଲୋଚନା

କଲାବେଳେ ଏହାର ଶୁଦ୍ଧି ଆନ୍ଦୋଳନ ସହ ଯେ ଏକ ଗଭୀର ସମ୍ବନ୍ଧ ରହିଛି ତାହା ମୁଁ ଅନୁଭବ କରୁଛି । ଶୁଦ୍ଧି ଆନ୍ଦୋଳନ ପ୍ରସାର କରୁଥିବା ବ୍ୟକ୍ତିମାନଙ୍କ ପାଇଁ ମୋର ସମ୍‌ବେଦନା ତ ରହିଛି, ହେଲେ ଏ କ୍ଷେତ୍ରରେ ରହିଥିବା ପ୍ରତିବନ୍ଧକ ବିଷୟରେ ସେମାନେ ଗୁରୁତ୍ୱର ସହ ବିଚାର କରୁନାହାନ୍ତି । ଅବଶ୍ୟ ହିନ୍ଦୁମାନଙ୍କର ସଂଖ୍ୟା ବୃଦ୍ଧି କରି ହିନ୍ଦୁ ସମାଜକୁ ସୁଦୃଢ଼ କରିବା ହେଉଛି ଶୁଦ୍ଧି ଆନ୍ଦୋଳନର ଉଦ୍ଦେଶ୍ୟ । ତେବେ ସଂଖ୍ୟାଗରିଷ୍ଠତା ଏକ ସଂହତିପୂର୍ଣ୍ଣ ସ୍ଥିତିର ସ୍ୱାକ୍ଷର ବହନ କରେନାହିଁ । ଏକ ସୁସଂଗଠିତ ଧର୍ମାନ୍ଧଗୋଷ୍ଠୀ ଏକ ଅସଂଗଠିତ ବୃହତ୍ ଓ ଦୁଃସାହସିକ ଗୋଷ୍ଠୀକୁ ଧ୍ୱଂସ କରିଦେବାର ଦୃଷ୍ଟାନ୍ତ ବିରଳ ନୁହେଁ । ହିନ୍ଦୁ-ମୁସଲମାନ ସାଂପ୍ରଦାୟିକ ଦଙ୍ଗା ସମୟରେ ଯେଉଁଠି ହିନ୍ଦୁମାନେ ସଂଖ୍ୟାଲଘୁ ଭାବେ ରହିଛନ୍ତି ସେଠାରେ ଯେ ସେମାନେ ଆହତ ହୋଇଚନ୍ତି ତାହା ନୁହେଁ । ଏପରିକି ସଂଖ୍ୟାଗରିଷ୍ଠ ସ୍ଥାନମାନଙ୍କରେ ମଧ୍ୟ ସେମାନେ ଆହତ ହୋଇଛନ୍ତି । ମୋପ୍ଲାହାର ଘଟଣା ସମସ୍ତେ ଜାଣନ୍ତି । ହିନ୍ଦୁମାନେ ସଂଖ୍ୟା ଦୃଷ୍ଟିରୁ ନୁହେଁ, ବରଂ ସଂହତିର ଅଭାବରୁ ପ୍ରତିବନ୍ଧକର ସମ୍ମୁଖୀନ ହେଉଛନ୍ତି । ତେବେ ହିନ୍ଦୁମାନଙ୍କ ମଧ୍ୟରେ ସଂହତି ସ୍ଥାପନ କରିବାକୁ ହେଲେ ସେମାନଙ୍କ ମଧ୍ୟରେ ଯେଉଁ ସବୁ ଶକ୍ତି ବା ବ୍ୟବସ୍ଥା ଅସଂହତି ଆଣୁଛି ତାହାକୁ ଜାଣିବା ଆବଶ୍ୟକ । ତେବେ ମୋ ମତରେ ହିନ୍ଦୁମାନଙ୍କ ମଧ୍ୟରେ ସାମାଜିକ ସଂହତି ସୃଷ୍ଟି ନକରି କେବଳ ସେମାନଙ୍କର ସଂଖ୍ୟା ବୃଦ୍ଧି କରିବାକୁ ପ୍ରୟାସ କଲେ ଏହା ସେମାନଙ୍କ ମଧ୍ୟରେ ଅଧିକ ଅସଂହତି ସୃଷ୍ଟି କରିବ । ମୋର ଆଶଙ୍କା କେବଳ ସଂଖ୍ୟା ବୃଦ୍ଧି ପାଇଁ ପ୍ରୟାସ ହିନ୍ଦୁ ମାନଙ୍କର କୌଣସି ଉପକାର ସାଧନ କରିବ ନାହିଁ ବରଂ ମୁସଲମାନ ମାନଙ୍କ ଭିତରେ ବିରକ୍ତି ସୃଷ୍ଟି କରାଇବ । ଜାତିମାନଙ୍କୁ ନେଇ ସୃଷ୍ଟି ହୋଇଥିବା ସଙ୍ଗୋଷ୍ଠୀ ଭିତରେ ଶୁଦ୍ଧି ଆନ୍ଦୋଳନ ସେପରି କିଛି ଉଲ୍ଲେଖନୀୟ ପରିବର୍ତ୍ତନ ଆଣିପାରିବ ନାହିଁ । ବରଂ ଧର୍ମ ପରିବର୍ତ୍ତନ କରି ହିନ୍ଦୁ ହୋଇଥିବା ବ୍ୟକ୍ତି ଆଶ୍ରୟଶୂନ୍ୟ ହେବ ଓ ସେ କାହା ସହିତ ଗଭୀର ଆତ୍ମୀୟତା ଆଣିପାରିବ ନାହିଁ ବା କୌଣସି ବ୍ୟକ୍ତି ପ୍ରତି ଉତ୍ତରଦାୟୀ ହୋଇପାରିବ ନାହିଁ । ତେବେ ମାଲକାନା ଗୋଷ୍ଠୀ ପରି ଗୋଟିଏ ସମୂହ ହିନ୍ଦୁଧର୍ମରେ ଶ୍ରଦ୍ଧାନନ୍ଦଙ୍କ ଦ୍ୱାରା ହୁଏତ ଶୁଦ୍ଧି ଆନ୍ଦୋଳନ ଜରିଆରେ ସାମିଲ ହୋଇପାରନ୍ତି; ତେବେ ତାହାଦ୍ୱାରା ରହିଥିବା ଅସଂଖ୍ୟ ଜାତି ଭଳି କେବଳ ଆଉ ଗୋଟିଏ ଜାତି ସୃଷ୍ଟି କରିବା ହିଁ ସାର ହେବ । ଜାତିର ସଂଖ୍ୟା ଯେତେ ଅଧିକ ହେବ, ପୃଥକତ୍ୱ ଜନିତ ବିଚ୍ଛିନ୍ନତା ସେତେ ଅଧିକ ହେବ ଓ ପରିଣାମତଃ ହିନ୍ଦୁ ସମାଜ ସେତିକି ଅଧିକ ଦୁର୍ବଳ ହେବ । ଯଦି ହିନ୍ଦୁ

ସମାଜ ନିଜର ଅସ୍ତିତ୍ୱ ବା ସୁରକ୍ଷା ପାଇଁ ଆଗ୍ରହୀ ତେବେ ଏହା ଜାତିର ସଂଖ୍ୟା ବୃଦ୍ଧି ନକରି ବରଂ ଏହାର ସଂହତି ବୃଦ୍ଧି ପାଇଁ ଧ୍ୟାନ ଦେବା ଆବଶ୍ୟକ । ହିନ୍ଦୁ ସମାଜରେ ସଂହତି ବୃଦ୍ଧି କରିବାର ଅର୍ଥ ହେଉଛି ହିନ୍ଦୁଧର୍ମରୁ ଜାତିପ୍ରଥାର ବିଲୋପ ସାଧନ କରାଇବା । ଜାତିପ୍ରଥାର ବିନାଶଦ୍ୱାରା ହିନ୍ଦୁମାନଙ୍କ ମଧ୍ୟରେ ଯଥାର୍ଥ ସଂଗଠନ ଆରମ୍ଭ ହେବ । ଏହି ସଂଗଠନ ସମ୍ଭବ ହେଲେ ଶୁଦ୍ଧି ଆନ୍ଦୋଳନର ଆବଶ୍ୟକତା ରହିବ ନାହିଁ । ଅର୍ଥାତ୍ ସେ କ୍ଷେତ୍ରରେ ଶୁଦ୍ଧିଦ୍ୱାରା ହିନ୍ଦୁମାନଙ୍କ ମଧ୍ୟରେ ଯଥାର୍ଥ ଶକ୍ତି ଆସିବ । ଯେଉଁ ପର୍ଯ୍ୟନ୍ତ ଜାତି ବ୍ୟବସ୍ଥା ରହିଥିବ ହିନ୍ଦୁମାନଙ୍କ ମଧ୍ୟରେ ସଂଗଠକ ଓ ସଂହତି ଅସମ୍ଭବ ହେବ, ଯଦିବି ଶୁଦ୍ଧି ଆନ୍ଦୋଳନ କରାଯାଏ ତାହା ହିନ୍ଦୁମାନଙ୍କ ସଂଗଠନ ଓ ସଂହତି ପ୍ରତି ଅନିଷ୍ଟକର ହେବ । ତେବେ ହିନ୍ଦୁ ସମାଜର ବୈପ୍ଳବିକ ଓ ଭାବୋଦୀପ୍ତ ସଂସ୍କାରକବୃନ୍ଦ ଜାତି ବିନାଶର ପ୍ରଶ୍ନ ଉଠିବା ବେଳେ ନିରୁତ୍ସାହିତ ମନେହୁଅନ୍ତି । ମୌଳିକ ସମସ୍ୟାଟି ପ୍ରତି ଉଦାସୀନ ରହି ସେମାନେ ପୁନଃ ଧର୍ମପରିବର୍ତ୍ତନ ଦ୍ୱାରା ଅନ୍ୟ ଧର୍ମଗ୍ରହଣ କରିଥିବା ବ୍ୟକ୍ତିମାନଙ୍କୁ ହିନ୍ଦୁଧର୍ମକୁ ଆଣିବା, ଖାଦ୍ୟ ପ୍ରଣାଳୀରେ ପରିବର୍ତ୍ତନ କରିବା ବା ଅଖଣ୍ଡ ନାମ ଜପ କରିବାରେ ଗୁରୁତ୍ୱ ଦେବା ଅତି ପିଲାଳିଆ କାର୍ଯ୍ୟ ମନେହୁଏ । ଦିନେ ନା ଦିନେ ହିନ୍ଦୁମାନଙ୍କ ଭିତରେ ଏହି ଚେତନା ଆସିବ ଯେ ଜାତିପ୍ରଥାକୁ ରକ୍ଷା କଲେ ସେମାନେ ନିଜର ସମାଜକୁ ରକ୍ଷା କରିପାରିବେ ନାହିଁ । ମୋର ବିଶ୍ୱାସ ସେହି ଦିନ ଆଉ ବେଶୀ ବିଳମ୍ବ ନାହିଁ ।

## ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ

### ("ଭାଷାଭିତ୍ତିକ ରାଜ୍ୟଗଠନ" ପୁସ୍ତକର ଦଶମ ଅଧ୍ୟାୟ)

ରାଜନୀତି ଯଦି ବାସ୍ତବଧର୍ମୀ ନୁହେଁ ତେବେ ଏହାର ମୂଲ୍ୟ ନାହିଁ । ରାଜନୀତି କ୍ଷେତ୍ରରେ ବୌଦ୍ଧିକତାର ସ୍ଥାନ ଗୌଣ ମନେହୁଏ । ସୁତରାଂ ରାଜନୈତିକ ଧାରା ସମ୍ପର୍କରେ କୌଣସି ସିଦ୍ଧାନ୍ତ ବ୍ୟକ୍ତ କରିବା ପୂର୍ବରୁ ଜଣେ ଏହାର ଭିତ୍ତିଭୂମି ଉପରେ ବିଚାର କରିବା ଆବଶ୍ୟକ ।

ତେବେ ବାସ୍ତବ ଭିତ୍ତିଭୂମି କହିଲେ ମୁଁ କ'ଣ ବୁଝେ ଏହା ଜଣେ ପ୍ରଶ୍ନ କରିପାରନ୍ତି । ମୋ ମତରେ ବାସ୍ତବ ଭିତ୍ତିଭୂମି ହେଉଛି ଗୋଟିଏ ଗୋଷ୍ଠୀର ସାମାଜିକ ସ୍ଥିତି ଯାହା ପ୍ରତି ରାଜନୈତିକ କାର୍ଯ୍ୟସୂଚୀ ପ୍ରୟୋଗ ହୋଇଥାଏ ।

---

ରାଜନୈତିକ ବ୍ୟବସ୍ଥା ଯେ ସାମାଜିକ ବ୍ୟବସ୍ଥା ଉପରେ ନିର୍ଭରଶୀଳ ଏହା ସମ୍ପର୍କରେ ଯୁକ୍ତିର ଅବତାରଣା ନିଷ୍ପ୍ରୟୋଜନ ମନେହୁଏ । ରାଜନୈତିକ ବ୍ୟବସ୍ଥାକୁ ସାମାଜିକ ବ୍ୟବସ୍ଥା ଗଭୀରଭାବେ ପ୍ରଭାବିତ କରିଥାଏ । ରାଜନୈତିକ ବ୍ୟବସ୍ଥାର ରୂପାୟନ ବା ସଫଳତା କ୍ଷେତ୍ରରେ ସାମାଜିକ ବ୍ୟବସ୍ଥାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ଏପରିକି ରାଜନୈତିକ ଲକ୍ଷ୍ୟ ସାଧନକୁ ବିଫଳ କରିବାରେ ବା ଏହାକୁ ଏକ ହାସ୍ୟାସ୍ପଦ ସ୍ତରକୁ ନେବାରେ ସାମାଜିକ ବ୍ୟବସ୍ଥା ମଧ୍ୟ ନିର୍ଣ୍ଣାୟକ ହୋଇଥାଏ ।

ଭାରତୀୟ ସାମାଜିକ ବ୍ୟବସ୍ଥା ଜାତିପ୍ରଥା ଉପରେ ଆଧାରିତ । ଜାତିପ୍ରଥା ହିଁ ହିନ୍ଦୁସଭ୍ୟତା ଓ ସଂସ୍କୃତିର ଏକ ବୈଶିଷ୍ଟ୍ୟ ।

ଭାରତୀୟ ସମାଜ ପୃଷ୍ଠଭୂମିରେ ଜାତିପ୍ରଥା ଏତେ ସୁବିଦିତ ଯେ ଏହାର ବ୍ୟାଖ୍ୟାର କୌଣସି ଆବଶ୍ୟକତା ହିଁ ନାହିଁ । ତେବେ ଭାଷାଭିତ୍ତିକ ରାଜ୍ୟ ଗଠନ ଉପରେ ଏହାର କ'ଣ ସମ୍ଭାବ୍ୟ ପ୍ରଭାବ ରହିଛି ତାହା ଉପରେ କିଛି ସାଧାରଣ ମତ ଉପସ୍ଥାପନ କରାଯାଇପାରେ । ତେବେ ଜାତିପ୍ରଥାର କେତେକ ସ୍ୱକୀୟ ବୈଶିଷ୍ଟ୍ୟକୁ ମଧ୍ୟ ଉଲ୍ଲେଖ କରୁଛି ।

(୧) ଜାତିଗୁଡ଼ିକର ବିସ୍ତାର ଏପରି ଯେ କୌଣସି ଏକ ଅଞ୍ଚଳରେ କୌଣସି ଜାତି ଏକ ମୁଖ୍ୟ ଭାଗ ହୋଇଥିବା ବେଳେ ଅନ୍ୟ ଜାତିଗୁଡ଼ିକ ସଂଖ୍ୟା ନ୍ୟୂନ ହୋଇଥାନ୍ତି । ମୁଖ୍ୟଜାତି ଉପରେ ଅନ୍ୟଜାତିଗୁଡ଼ିକ ଆର୍ଥିକ ଦୃଷ୍ଟିରୁ ନିର୍ଭରଶୀଳ ଅଟନ୍ତି । ଗ୍ରାମରେ ପ୍ରଭାବଶାଳୀ ଜାତିର ଲୋକମାନେ ଜମିର ମୁଖ୍ୟ ଅଧିକାରୀ ହୋଇଥିବାରୁ ସେମାନଙ୍କ ଉପରେ ନିଜର ସଂଖ୍ୟା ଓ ଆର୍ଥିକ ସ୍ଥିତି ଦୃଷ୍ଟିରୁ ସଂଖ୍ୟା ନ୍ୟୂନ ଜାତିମାନେ ନିର୍ଭର କରିବାକୁ ବାଧ୍ୟ ହୋଇଥାନ୍ତି ।

(୨) ଜାତିପ୍ରଥା ଯେ ବୈଷମ୍ୟଭିତ୍ତିକ ଏତିକି କହିଲେ ଯଥେଷ୍ଟ ହେବନାହିଁ, ବରଂ ଏହା ବର୍ଗୀକୃତ ବୈଷମ୍ୟର ଭିତ୍ତି ଉପରେ ଆଧାରିତ । ଜାତିମାନଙ୍କ ଭିତରେ ସମତାର ପ୍ରଶ୍ନ ନଥାଏ ବରଂ ସେମାନେ ଉପର ତଳ ବୋଲି ଅବଧାରଣା କରାଯାଏ । ଜାତିମାନଙ୍କ ମଧ୍ୟରେ ଆରୋହାନୁପାତିକ ଭାବେ ଘୃଣା ଓ ଅବରୋହାନୁପାତିକ ଭାବେ ବିଦ୍ୱେଷ ରହିବା ଦେଖାଯାଏ ।

(୩) ଗୋଟିଏ ରାଷ୍ଟ୍ରର ଯେପରି ସ୍ୱାଭିମାନ ଓ ଭିନ୍ନତା ଥାଏ ପ୍ରତ୍ୟେକ ଜାତିରେ ମଧ୍ୟ ତଦ୍ରୂପ ଲକ୍ଷଣ ପରିଲକ୍ଷିତ ହୁଏ । ସୁତରାଂ ଜାତିମାନଙ୍କର ସମାହାର ବଡ଼ ବା କ୍ଷୁଦ୍ର ରାଷ୍ଟ୍ରମାନଙ୍କର ସମଷ୍ଟି ସହ ସମାନ କହିଲେ ଅସଙ୍ଗତ ହେବନାହିଁ ।

ମୁଁ ଦୁଃଖିତ ଯେ ଉପରଲିଖିତ ବିଷୟକୁ ତଥ୍ୟ ଓ ପରିସଂଖ୍ୟାନ ଭିତ୍ତିରେ ମୁଁ ବ୍ୟାଖ୍ୟା କରିପାରୁନାହିଁ । ଜନଗଣନା ଜନିତ ବିବରଣୀର ଆଧାର ଉପରେ ଏହା କରାଯାଇଥାଏ କିନ୍ତୁ ସେହି ବିବରଣୀ ମୋତେ ସାହାଯ୍ୟ କରିପାରୁ ନାହିଁ । ଜନଗଣନା ହେବା ଦିନଠାରୁ ଭାରତୀୟ ଜନଗଣନା ବିବରଣରେ ଜାତିର ପରିସଂଖ୍ୟାନ ଦିଆଯାଇ ଆସୁଥିଲେ ମଧ୍ୟ ବିଗତ ଜନଗଣନା ବିବରଣରେ ଜାତିର ସଂଖ୍ୟା ଉଲ୍ଲେଖ କରାଯାଇ ନାହିଁ । ଏହି ବିଚ୍ୟୁତି ପାଇଁ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗ ଦାୟୀ । ସ୍ୱରାଷ୍ଟ୍ର ବିଭାଗ ମତରେ ଯଦି ଭୁଲବଶତଃ ଏହା ଦିଆଯାଇ ପାରିନାହିଁ ତେବେ ଏଥିରୁ କେହି ଭାବିବା ଠିକ୍ ନୁହେଁ ଯେ ଏହା ନାହିଁ । ଗୋଟିଏ ଅଭିଧାନରେ ଗୋଟିଏ ଶବ୍ଦ ଉଲ୍ଲେଖ ନଥିଲେ ଏଥିରୁ ଭାବିବା ଠିକ୍ ନୁହେଁ ଯେ ସେହି ଶବ୍ଦଟି ଯେଉଁ ବିଷୟରେ ସୂଚନାଦିଏ ତାହାର ଅସ୍ତିତ୍ୱ ନାହିଁ । ବରଂ ଏ କ୍ଷେତ୍ରରେ ଅଭିଧାନ ସଂକଳକଙ୍କର ତ୍ରୁଟିକୁ ହିଁ ସ୍ୱୀକାର କରବାକୁ ହୋଇଥାଏ ।

ରାଜନୀତି ଉପରେ ଜାତିପ୍ରଥାର ପ୍ରଭାବ ଅତ୍ୟନ୍ତ୍ ସୁବିଦିତ । ତେବେ ନିର୍ବାଚନ ବ୍ୟବସ୍ଥାରେ ଜାତିପ୍ରଥାର ପଭାବ ଏକ କୌତୂହଳପ୍ରଦ ଘଟଣା ଅଟେ । ନିର୍ବାଚନ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥାର ଭିତ୍ତି । ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରୁ ଜଣେ ବ୍ୟକ୍ତି ନିର୍ବାଚନ ଜରିଆରେ ପ୍ରତିନିଧିତ୍ୱ କରିଥାନ୍ତି । ଜାତିପ୍ରଥାର ଏ କ୍ଷେତ୍ରରେ କିପରି ନିର୍ଣ୍ଣାୟକ ଭୂମିକା ରହିଛି ତାହା ନିମ୍ନରେ ସୂଚିତ କରୁଛି ।

( ୧ ) ଭୋଟ ସର୍ବଦା ସାଂପ୍ରଦାୟିକତା ଆଧାରରେ ହୋଇଆସିଛି । ଭୋଟଦାତା ଉପଯୁକ୍ତ ପ୍ରାର୍ଥୀକୁ ବାଛିବା ପରିବର୍ତ୍ତେ ତା'ଜାତି ଗୋଷ୍ଠୀର ପ୍ରାର୍ଥୀକୁ ଭୋଟ ଦେଇଥାଏ ।

( ୨ ) ସଂଖ୍ୟା ଗରିଷ୍ଠତା ମାନଦଣ୍ଡରେ ସଂଖ୍ୟାଗରିଷ୍ଠ ଗୋଷ୍ଠୀର ବ୍ୟକ୍ତି ଏକ ନିର୍ବାଚନମଣ୍ଡଳୀର ଆସନ ଲାଭ କରିଥାଏ ।

(୩) ସଂଖ୍ୟାନ୍ୟୂନ ଗୋଷ୍ଠୀକୁ ସଂଖ୍ୟାଗରିଷ୍ଠ ଗୋଷ୍ଠୀର ପ୍ରାର୍ଥୀଙ୍କୁ ଭୋଟ ଦେବାକୁ ବାଧ୍ୟ କରାଯାଇଥାଏ ।

(୪) ସଂଖ୍ୟାଲଘୁ ଶ୍ରେଣୀର ପ୍ରାର୍ଥୀ ସଂଖ୍ୟାଗରିଷ୍ଠ ଶ୍ରେଣୀର ପ୍ରାର୍ଥୀ ସହ ପ୍ରତିଦ୍ୱନ୍ଦିତା କରି ନିର୍ବାଚିତ ହେବା ସମ୍ଭବ ନୁହେଁ, କାରଣ ସଂଖ୍ୟାଲଘୁ ଶ୍ରେଣୀର ଭୋଟ ଜଣେ ପ୍ରତିନିଧିଙ୍କୁ ନିର୍ବାଚିତ କରିବା ପାଇଁ ଯଥେଷ୍ଟ ନୁହେଁ ।

(୫) ସାମାଜିକ ବ୍ୟବସ୍ଥାରେ ଯେଉଁ ବର୍ଗୀକୃତ ବୈଷମ୍ୟ ରହିଛି ସେ କ୍ଷେତ୍ରରେ ଉଚ୍ଚ ଶ୍ରେଣୀର ଭୋଟରମାନେ ଏକ ସଂଖ୍ୟାଲଘୁ ଶ୍ରେଣୀର ପ୍ରାର୍ଥୀଙ୍କୁ ଭୋଟ ଦେବାରେ ପ୍ରସନ୍ନ ଅନୁଭବ କରନ୍ତି ନାହିଁ । ଅପର ପକ୍ଷରେ ସାମାଜିକ ବ୍ୟବସ୍ଥାରେ ନିମ୍ନ ସ୍ତରରେ ଥିବା ଜଣେ ମତଦାତା ଉଚ୍ଚ ବର୍ଗର ପ୍ରାର୍ଥୀଙ୍କୁ ଭୋଟ ଦେଇଥିବାରୁ ନିଜକୁ ଗୌରବାନ୍ୱିତ ମନେକରେ । ଏହି କାରଣରୁ ମଧ୍ୟ ଜଣେ ସଂଖ୍ୟାଲଘୁ ଶ୍ରେଣୀର ପ୍ରାର୍ଥୀ ନିର୍ବାଚନରେ ପରାଜୟ ସ୍ୱୀକାର କରିଥାଏ ।

କଂଗ୍ରେସ ସର୍ବଦା ନିର୍ବାଚିତ ହେଉଥିବା ଦେଖାଯାଏ । ତେବେ ପ୍ରଶ୍ନ ହେଉଛି କଂଗ୍ରେସ କାହିଁକି ନିର୍ବାଚିତ ହେଉଛି ? ହୁଏତ କୁହାଯିବ ଯେ କଂଗ୍ରେସ ଜନଗଣଙ୍କ ମଧ୍ୟରେ ଜନପ୍ରିୟ । ତେବେ କଂଗ୍ରେସ କାହିଁକି ଜନପ୍ରିୟ ? ଏହାର ଯଥାର୍ଥ ଉତ୍ତର ହେଉଛି ଯେ କଂଗ୍ରେସ ଏକ ନିର୍ବାଚନ ମଣ୍ଡଳୀରେ ସଂଖ୍ୟାଗରିଷ୍ଠ ଜାତିର ଜଣେ ବ୍ୟକ୍ତିଙ୍କୁ ପ୍ରାର୍ଥୀ କରିଥାଏ । ଜାତି ଓ କଂଗ୍ରେସ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ରହିଛି । ଜାତିଗତ ମାନସିକତାର ସୁଯୋଗ ନେଇ କଂଗ୍ରେସ ନିର୍ବାଚନରେ ଜିତିଥାଏ ।

ଭାଷାଗତ ରାଜ୍ୟଗଠନଦ୍ୱାରା ଜାତିପ୍ରଥାର ମନ୍ଦ ବ୍ୟବସ୍ଥା ବା ପରିଣାମ ମଜଭୁତ ହେବ । ସଂଖ୍ୟାଲଘୁ ଗୋଷ୍ଠୀମାନେ ପ୍ରାୟ ପେଷି ହୋଇ ରହିବେ । ଯଦି ବି ସେମାନେ ଚାପି ହୋଇରହିବେ ନାହିଁ ତେବେ ସେମାନେ ଉତ୍ପୀଡ଼ିତ ଓ ଅତ୍ୟାଚାରିତ ହେବେ । ସେମାନେ ଏପରିକି ପକ୍ଷପାତିତାର ଶିକାର ହେବେ । ସାଧାରଣ ଜୀବନଧାରାରେ ଓ ଆଇନ ଦୃଷ୍ଟିରେ ବି ସେମାନେ ବାଛବିଚାରର ସମ୍ମୁଖୀନ ହେବେ ।

ଲର୍ଡ ଆକ୍‌ସନ ରାଷ୍ଟ୍ରମାନଙ୍କର ଇତିହାସ ଓ ସେମାନଙ୍କର ଆଦର୍ଶଗତ ପରିବର୍ତ୍ତନକୁ ଏହିପରି ଦର୍ଶାଇଛନ୍ତି–

ପ୍ରାଚୀନ ୟୁରୋପୀୟ ବ୍ୟବସ୍ଥାରେ ସରକାରମାନେ ଜାତୀୟତାର ଅଧିକାର ଗୁଡ଼ିକୁ ସ୍ୱୀକୃତି ଦେଉ ନଥିଲେ ଓ ଜନଗଣ ମଧ୍ୟ ତାହାକୁ ସ୍ୱୀକାର କରୁ ନଥିଲେ । ରାଷ୍ଟ୍ର ପରିବର୍ତ୍ତେ ଶାସନ କରୁଥିବା ପରିବାରମାନେ ସୀମାକୁ ନିୟନ୍ତ୍ରଣ କରୁଥିଲେ । ଲୋକମାନଙ୍କର ମତାମତକୁ ଗୁରୁତ୍ୱ ନଦେଇ ସେମାନେ ହିଁ ଶାସନ କାର୍ଯ୍ୟକୁ ପରିଚାଳିତ କରୁଥିଲେ । ଯେଉଁ କ୍ଷେତ୍ରରେ ସମସ୍ତ ଅଧିକାରକୁ ଦମନ କରାଯାଉଥିଲା, ସେ କ୍ଷେତ୍ରରେ ରାଷ୍ଟ୍ରର ସ୍ୱାଧୀନତାକୁ ମଧ୍ୟ ଏଡ଼ାଇ ଦିଆଯାଉଥିଲା । ଫେନଲନ୍‌ଙ୍କ ମତରେ ସାମ୍ରାଜ୍ଞୀ ସତେ ଯେପରି ତାଙ୍କର ବିବାହ ସହିତ ରାଜତନ୍ତ୍ରରେ ଅଭିଷିକ୍ତ ହେଉଥିଲେ ।

ଜାତୀୟତା ସକଳ ପ୍ରାରମ୍ଭରେ ନିରର୍ଥକ ଥିଲା । ସେମାନେ ଯେତେବେଳେ ସଚେତନ ହେଲେ-

"ସେମାନେ ପ୍ରଥମେ ବିଧିସମତ ଶାସକମାନଙ୍କୁ ସମର୍ଥନ କରି ସେମାନଙ୍କ ବିଜେତାମାନଙ୍କର ବିରୁଦ୍ଧାଚରଣ କଲେ । ବଳପୂର୍ବକ ଅଧିକାର କରିଥିବା ଶାସକମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେବାକୁ ସେମାନେ ଅସ୍ୱୀକାର କଲେ । ଏହାପରେ ଏପରି ଏକ ସମୟ ଆସିଲା ଯେତେବେଳେ କି ସେମାନଙ୍କ ଉପରେ ହୋଇଥିବା ଅନ୍ୟାୟ ବିରୁଦ୍ଧରେ ସେମାନେ ବିଦ୍ରୋହ ଆରମ୍ଭ କଲେ । ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନରୁ ଏକ ଉତ୍ତେଜନାମୂଳକ ସ୍ଥିତିର ଉଦ୍ଭବ ହେଉଥିଲା । ଏହାପରେ ଫ୍ରାନ୍ସରେ ବିପ୍ଲବ ହେଲା । ଏହା ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ଜନଗଣଙ୍କର ଇଚ୍ଛା ଓ ଅଧିକାରକୁ ଏକ ସାର୍ବଭୌମ ମାନଦଣ୍ଡ ଭାବେ ଗ୍ରହଣ କରାଯିବାର ପରିବେଶ ସୃଷ୍ଟି ହେଲା । ଅତୀତର ବ୍ୟବସ୍ଥା ବା ରାଜ୍ୟର ନିୟନ୍ତ୍ରଣ ଭିତରୁ ମୁକ୍ତି ପାଇ ଜନଗଣଙ୍କର ସାର୍ବଭୌମତ୍ୱ ଶାସନ ବ୍ୟବସ୍ଥାରେ ଅଧିକ ସ୍ୱୀକୃତ ହେବାରେ ଲାଗିଲା ।"

ଜାତିବ୍ୟବସ୍ଥା ଏକ ରାଷ୍ଟ୍ର ବ୍ୟବସ୍ଥା ସହ ଯଥାର୍ଥରେ ତୁଳନୀୟ । ଗୋଟିଏ ରାଷ୍ଟ୍ରର ନିୟମ ଯେପରି ଅନ୍ୟ ରାଷ୍ଟ୍ର କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ, ସେହିପରି ଗୋଟିଏ ଜାତିର ବିଧିବିଧାନ ଅନ୍ୟ ଜାତି ପାଖରେ ମଧ୍ୟ ଗ୍ରହଣୀୟ ନୁହେଁ । ଯଦିବି ଏହି ପ୍ରଶ୍ନଟିର ପରିଣାମର ଗମ୍ଭୀରତାକୁ ଏଡ଼ାଇ ଯାଇ ଆମେ କେବଳ ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁ ଜାତି ପ୍ରସଙ୍ଗରେ ଆମର ଆଲୋଚନାକୁ ସୀମିତ ରଖିବା, ତେବେ ମଧ୍ୟ ଏହି ପ୍ରଶ୍ନଟି ଉଠିବ: ସଂଖ୍ୟାଗରିଷ୍ଠ ଜାତିର ଲୋକେ ସଂଖ୍ୟାଲଘୁ ଜାତିର ଲୋକଙ୍କୁ ଶାସନ କରିବାର କ'ଣ ଅଧିକାର ଅଛି ?

---

ତେବେ ଉତ୍ତରରେ କୁହାଯିବ ଯେ ଯାହା ସଂଖ୍ୟାଗରିଷ୍ଠ ଗୋଷ୍ଠୀ କରିଥାଏ ତାହା ଯଥାର୍ଥ । ଏ କ୍ଷେତ୍ରରେ ସଂଖ୍ୟାଲଘୁ ଶ୍ରେଣୀର କ'ଣ ଅଭିଯୋଗ ରହିବ ?

ଯେଉଁମାନେ ସଂଖ୍ୟାଗରିଷ୍ଠ ଗୋଷ୍ଠୀର ଶାସନକୁ ଯଥାର୍ଥ ମନେକରନ୍ତି ସେମାନେ ଦୁଇପ୍ରକାରର ସଂଖ୍ୟାଗରିଷ୍ଠତା ବିଷୟରେ ଭାବି ନଥାନ୍ତି । ତେବେ ଦୁଇ ପ୍ରକାରର ସଂଖ୍ୟାଗରିଷ୍ଠତା ରହିବା ଦେଖାଯାଏ, ଯଥା :

(୧) ସାମ୍ପ୍ରଦାୟିକ ବା ଧାର୍ମିକ ସଂଖ୍ୟାଗରିଷ୍ଠତା ଓ

(୨) ରାଜନୈତିକ ସଂଖ୍ୟାଗରିଷ୍ଠତା

ରାଜନୈତିକ ସଂଖ୍ୟାଗରିଷ୍ଠତା ଏହାର ସ୍ୱରୂପରେ ପରିବର୍ତ୍ତନଶୀଳ । ରାଜନୈତିକ ସଂଖ୍ୟାଗରିଷ୍ଠତାର ବିକାଶ ହୋଇଥାଏ,କିନ୍ତୁ ଏକ ସାମ୍ପ୍ରଦାୟିକ ସଂଖ୍ୟାଗରିଷ୍ଠତା ଜନ୍ମ ନେଇଥାଏ । ରାଜନୈତିକ ସଂଖ୍ୟାଗରିଷ୍ଠତାରେ ସାମିଲ୍ ହେବାପାଇଁ ଦ୍ୱାର ଉନ୍ମୁକ୍ତ ଥାଏ କିନ୍ତୁ ଧାର୍ମିକ ସଂଖ୍ୟାଗରିଷ୍ଠତାର ଦ୍ୱାର ସର୍ବଦା ବନ୍ଦଥାଏ । ରାଜନୈତିକ ସଂଖ୍ୟାଗରିଷ୍ଠତାର ରାଜନୀତି ଏପ୍ରକାର ଯେ ଏହାକୁ ଗଢ଼ିବା ବା ଭାଙ୍ଗିବା ନେଇ ସମସ୍ତଙ୍କ ପାଇଁ ସୁଯୋଗ ଥାଏ । ଧାର୍ମିକ ସଂଖ୍ୟାଗରିଷ୍ଠତାର ରାଜନୀତି କେବଳ ସେହି ଗୋଷ୍ଠୀ ଜନ୍ମିତ ଜାତିଦ୍ୱାରା ପରିଚାଳିତ ହୋଇଥାଏ ।

ତେବେ ଏକ ରାଜନୈତିକ ସଂଖ୍ୟାଗରିଷ୍ଠ ଗୋଷ୍ଠୀ ଶାସନ କରିବାପାଇଁ ଯେଉଁ ଅଧିକାର ଲାଭ କରିଛି, ସେହି ଅଧିକାର ଏକ ସାଂପ୍ରଦାୟିକ ସଂଖ୍ୟାଗରିଷ୍ଠ ଗୋଷ୍ଠୀ କିପରି ନେଇଥାଏ ? ଏକ ସାଂପ୍ରଦାୟିକ ସଂଖ୍ୟାଗରିଷ୍ଠ ଗୋଷ୍ଠୀକୁ ସେହି ଅଧିକାର ଦେବା ଅର୍ଥ ଏକ ବଂଶାନୁକ୍ରମିକ ସରକାର ପ୍ରତିଷ୍ଠା କରିବା ଓ ସେହି ସଂଖ୍ୟାଗରିଷ୍ଠ ଗୋଷ୍ଠୀର ଏକଛତ୍ରବାଦ ପାଇଁ ପଥ ପରିଷ୍କାର କରିବା । ଅଧିକାଂଶ ସଂଖ୍ୟାଲଘୁ ଗୋଷ୍ଠୀର ଏହାହିଁ ସାଧାରଣ ଅନୁଭୂତି ଅଟେ । ସାଂପ୍ରତିକ କାଳରେ ମହାରାଷ୍ଟ୍ରର ବ୍ରାହ୍ମଣମାନଙ୍କର ଉଦାହରଣ ଏତେ ଜଣାଶୁଣା ଯେ ଏହାର ବିସ୍ତୃତି ଅନାବଶ୍ୟକ ମନେହୁଏ ।

ଜାତିଗତ-ସାଂପ୍ରଦାୟିକ ଏକଛତ୍ରବାଦକୁ ପ୍ରତିରୋଧ କରିବା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ତେବେ କିପରି ? ଏହାର ପ୍ରତିକାରର ସୂତ୍ରଟି କ'ଣ ? ପ୍ରଥମ ପଦକ୍ଷେପ ହେଉଛି ଅତି ବଡ଼ ରାଜ୍ୟର ଭାବନାକୁ ପରିହାର କରିବା । ଏକ ବଡ଼ ରାଜ୍ୟର

ସଂଖ୍ୟାଲଘୁ ଜାତି-ଗୋଷ୍ଠୀ ଉପରେ ଏହାର କ'ଣ ପ୍ରଭାବ ରହିଛି ତାହା ଅନେକ ଅବଧାରଣା କରିପାରନ୍ତି ନାହିଁ । ରାଜ୍ୟ ଯେତେ ବଡ଼ ହେବ, ସେ କ୍ଷେତ୍ରରେ ସଂଖ୍ୟାଲଘୁ ଗୋଷ୍ଠୀର ସଂଖ୍ୟାଗରିଷ୍ଠ ଗୋଷ୍ଠୀ ସହ ଅନୁପାତ ସେତେ କମ୍ ହେବ । ଗୋଟିଏ ଉଦାହରଣ ନିଆଯାଉ । ଯଦି ମହାବିଧର୍ବ ଅଲଗା ହୋଇରହିବ ହିନ୍ଦୁମାନଙ୍କର ମୁସଲମାନଙ୍କ ସହ ଆନୁପାତିକ ହାର ଚଉଦରେ ଏକ ହେବ । ସଂଯୁକ୍ତ ମହାରାଷ୍ଟ୍ର ପାଖରେ ଆନୁପାତିକ ହାର ଏକରେ ଚଉଦ ହେବ । ଦଳିତ ବା ଅସ୍ପୃଶ୍ୟ ଲୋକମାନଙ୍କ ପାଖରେ ସେହି ପରିଣତି ମଧ୍ୟ ହେବ । ଏକ ସମଷ୍ଟିଗତ ଦୃଢ଼ ସଂଖ୍ୟାଗରିଷ୍ଠ ଗୋଷ୍ଠୀର କିଛି ବୋଝର ଭାର ସଂଖ୍ୟାଲଘୁ ଶ୍ରେଣୀର ଛାତି ବହନ କରିବାକୁ ପଡ଼ିବ । କିନ୍ତୁ ପାହାଡ଼ ସଦୃଶ ବୋଝର ଭାର ଏହା ନେଇପାରିବ ନାହିଁ । ଏହା ସଂଖ୍ୟାଲଘୁ ଶ୍ରେଣୀକୁ ରସାତଳ କରାଇବ । ସୁତରାଂ ସଂଖ୍ୟାଲଘୁ ଶ୍ରେଣୀ ପାଇଁ କ୍ଷୁଦ୍ର ରାଜ୍ୟ ଗଠନ ରକ୍ଷା ସାଧନ ହେବ ।

ଦ୍ୱିତୀୟ ପ୍ରତିକାର ହେଉଛି ବ୍ୟବସ୍ଥାପକ ସଭାରେ ପ୍ରତିନିଧିତ୍ୱ ପାଇଁ ବ୍ୟବସ୍ଥା । ସମ୍ବିଧାନରେ ଯେଉଁ ପୁରୁଣା ପ୍ରତିକାରର ବ୍ୟବସ୍ଥା ରହିଛି ତାହା ହେଲା, (୧) କିଛି ସଂଖ୍ୟକ ସଂରକ୍ଷିତ ଆସନ, ଓ (୨) ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ । ଏହି ଉଭୟ ପ୍ରତିକାରକୁ ନୂତନ ସମ୍ବିଧାନରେ ପରିହାର କରାଯାଉଛି । ମେଣ୍ଢା ଦେହରୁ ଉଲ୍ କାଟି ନିଆଯାଇଛି । ସେମାନେ ଏଣୁ ଥଣ୍ଡାର ପ୍ରକୋପକୁ ଅନୁଭବ କରୁଛନ୍ତି । ସୁତରାଂ ରହିଥିବା ଉଲ୍‌ରେ କିଛି ପ୍ରତିଷେଧକ ଦ୍ୱାରା ସେମାନଙ୍କୁ ଥଣ୍ଡାରୁ ରକ୍ଷା କରିଯିବା ଦରକାର ।

ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ କିମ୍ବା ସ୍ଥାନ ସଂରକ୍ଷଣକୁ ପୁନଃସ୍ଥାପନ କରିବା ଯଥାର୍ଥ ହେବ ନାହିଁ । ବର୍ତ୍ତମାନର ସାମ୍ବିଧାନିକ ବ୍ୟବସ୍ଥାରେ ଯେଉଁ ଏକକ ପ୍ରତିନିଧିମୂଳକ ବ୍ୟବସ୍ଥା ରହିଛି ସେଥିରେ ପରିବର୍ତ୍ତନ କରାଯାଇ ନିର୍ବାଚନ ମଣ୍ଡଳୀରୁ ଏକାଧିକ (ଦୁଇ ବା ତିନୋଟି) ମନୋନୟନ ବ୍ୟବସ୍ଥା ଏକାଠି ମତଦାନ ଦ୍ୱାରା କରାଯିବା ଆବଶ୍ୟକ । ଭାଷାଭିତ୍ତିକ ରାଜ୍ୟ ଗଠନ କ୍ଷେତ୍ରରେ ସଂଖ୍ୟାଲଘୁ ଗୋଷ୍ଠୀର ଯେଉଁ ଆଶଙ୍କା ରହିଛି ଏହି ପଦକ୍ଷେପ ଦ୍ୱାରା ତାହାର ଉପଶମ ହୋଇପାରିବ ବୋଲି ଆଶା କରାଯାଏ ।





ଲେଖକ ଅଧ୍ୟାପକ ଧନେଶ୍ୱର ସାହୁଙ୍କର ଜନ୍ମ ୧୯୪୯ରେ ଢେଙ୍କାନାଳ ଜିଲ୍ଲାର ଭୁବନରେ । ଦର୍ଶନଶାସ୍ତ୍ରରେ ରେଭେନ୍‌ସା ମହାବିଦ୍ୟାଳୟରୁ ସ୍ନାତକ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଓ ଉଭୟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ । ୧୯୭୪ରୁ ସରକାରୀ କଲେଜରେ ଅଧ୍ୟାପକ ଭାବେ ଯୋଗଦେଇ ବିଭିନ୍ନ କଲେଜରେ ଅଧ୍ୟାପନା କରି ୨୦୦୭ରେ ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟରୁ ଅବସର ଗ୍ରହଣ । ଜଣେ ଗାନ୍ଧୀବାଦୀ ଓ ହେତୁବାଦୀ ଚିନ୍ତକଭାବେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ ।

ସମକାଳୀନ ଓଡ଼ିଆ ପ୍ରବନ୍ଧ ସାହିତ୍ୟ କ୍ଷେତ୍ରରେ ଅଧ୍ୟାପକ ସାହୁଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ଭାଷା, ମୌଳିକ ବିଚାରଧାରା, ଅନୁସନ୍ଧିତ୍ସା, ନିରପେକ୍ଷ ଦୃଷ୍ଟିଭଙ୍ଗୀ ଓ ସର୍ବୋପରି ନିର୍ଭିକତା ଅନ୍ୟମାନଙ୍କଠାରୁ ତାଙ୍କୁ ସ୍ୱତନ୍ତ୍ରଭାବେ ପରିଚିତ କରିଥାଏ । ବ୍ୟାପକ ଅଧ୍ୟୟନ, ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ତାଙ୍କ ପ୍ରତ୍ୟେକଟି ଲେଖାକୁ କରିଛି ମନନଧର୍ମୀ । ଓଡ଼ିଆ ଓ ଇଂରାଜୀରେ ତାଙ୍କର ବହୁ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ୨୦୧୦ ବର୍ଷର ମର୍ଯ୍ୟାଦାବନ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରରେ ସେ ସମ୍ମାନିତ ।

ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ, ଧର୍ମର ଉର୍ଦ୍ଧ୍ୱରେ, ଆବ୍ରାହମ୍ କୋଭୁର, ଧର୍ମ, ଦର୍ଶନ ଓ ସମାଜ, ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ, ସଂସ୍କୃତି ଓ ସର୍ବୋଦୟ, ଭାରତରେ ଜାତିପ୍ରଥାର ଉତ୍ପତ୍ତି ଓ ସ୍ୱରୂପ, ପେରିୟାରଙ୍କ ରଚନାବଳୀ, ଜୀବନ ଜିଜ୍ଞାସା, ଗାନ୍ଧୀ, ବିଜ୍ଞାନ ଓ ମାନବବାଦ ଆଦି ପୁସ୍ତକ ତାଙ୍କର ସୃଜନସୃଷ୍ଟି ।




ଚର୍ଚ୍ଚା ପ୍ରକାଶନ


ISBN 81-908500-4-0